# କବିଚରିତ ରାଧାନାଥ





ଡକ୍ଟର କ୍ଷେତ୍ରବାସୀ ନାୟକ

# କବିଚରିତ : ରାଧାନାଥ

ଡକ୍ଟର କ୍ଷେତ୍ରବାସୀ ନାୟକ
ଅଧ୍ୟାପକ, ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗ
ରେଭେନ୍ସା କଲେଜ, କଟକ

ପୁସ୍ତକ ଭଣ୍ଡାର
ବ୍ରହ୍ମପୁର-୧
ବାଙ୍କାବଜାର, କଟକ-୨

# କବି ଚରିତ : ରାଧାନାଥ

ଅଧ୍ୟାପକ କ୍ଷେତ୍ରବାସୀ ନାୟକ

ପ୍ରକାଶକ :
'ପୁସ୍ତକ ଭଣ୍ଡାର,
ବ୍ରହ୍ମପୁର-୧
ବାଙ୍କା ବଜାର, କଟକ-୨

ଶୁଦ୍ଧ ପ୍ରକାଶ :
ବିଜୟା ଦଶମୀ ୧୯୭୫ ପ୍ରଥମ ସଂସ୍କରଣ
ବିଜୟା ଦଶମୀ ୧୯୮୦ ଦ୍ୱିତୀୟ ସଂସ୍କରଣ

ମୁଦ୍ରକ :
ବିକାଶ ପ୍ରିଣ୍ଟର୍ସ
ପ୍ରଫେସର ପଡା, କଟକ-୩
ମୂଲ୍ୟ—ପନ୍ଦର ଟଙ୍କା ମାତ୍ର

**KAVI CHARITA : RADHANATH**

A monograph on Life and Literature of *RADHANATH*: The pioneer of Modern Oriya poetry.

By :
*Dr. Kshetrabasi Nayak, M.A. Ph. D.*
Dept, of oriya
Ravenshaw College,
Cuttack-753003.

Publisher :
**PUSTAK BHANDAR**
Berhampur-1,
Cuttack-2
Date of publication
14-10-1975 : First Edition
19-10-1980 : Second Edition

**Price : Rs. Fifteen only**

Library of Congress
Cardno. L. C. no. 77-907495

# ସମର୍ପଣ

ମୋ ଜାତିର ଇଷ୍ଟଦେବ ପ୍ରଭୁ ଜଗନ୍ନାଥ !
ତୁମର କୃପାର ଶକ୍ତି ଚରଣେ ଆଶ୍ରିତ—
ଆମେ ଯେ ପତିତ ଦଳ, ତବ କରୁଣା ପିପାସୀ
ସ୍ତବକ ପରାଏ ଲୋଡୁ ତୁମ ଶକ୍ତିର ଝଲକ ।

ତୁମର ଶକ୍ତିର ଫୁଲ ଫଳ ଧରେ ଏଠି
ମଣିଷର ଶକ୍ତି କାହିଁ ପାଇତବ ଅକ୍ଷର ଜାଇତ ?
ଯେତକ ଦେଇଛ ପ୍ରଭୁ ! ମୂର୍ଖହାତେ ଲେଖିବା ଶକତି
ତାଆର ଅମୃତ ଫଳ ତୁମ ତୁଲେ ଆଜ ସମର୍ପୁଛି ।

ପ୍ରଣତ
**କ୍ଷେତ୍ରବାସୀ**

# ଭୂମିକା

ମୋର ବିଦଗ୍ଧ ପାଠକବୃନ୍ଦ ! ଆପଣମାନେ ମୋ ଜଙ୍ଗଲର ପ୍ରତିଧ୍ୱନି । ମୋର ସାଧନା ଓ ସର୍ଜନାର ପ୍ରେରଣା-ଉତ୍ସ ହେଉଛନ୍ତି ଆପଣମାନେ । ଆପଣ ନିତି ଖୋଜୁଛନ୍ତି, ଏ ଜାତିର ସାରସ୍ୱତ ସାରଥିଙ୍କର ପଦଚିହ୍ନ । ଏହି ମାଟିର ସାହିତ୍ୟ-ମହାକୁମ୍ଭ ଉପରେ କିଏ କେମିତି ଚାଲିଛି, ଆତୁର ହୋଇ ଆପଣମାନେ ତା'ର ହିସାବ ଚାହିଁଛନ୍ତି । ଏହି ଚାହିଁବା-ଖୋଜିବାର ପ୍ରତିଧ୍ୱନି ମୋ ଭଳି କେତେକଙ୍କ କାନରେ ବାଜିଛି । ଏହା ଶୁଣି ସେମାନେ ନିଶ୍ଚୟ ଚଞ୍ଚଳ ହୋଇ ଉଠିଥିବେ । ସେହି ଅଧୀରତାର ପ୍ରେରଣାକୁ ହୁଏତ ଆପଣଙ୍କର ପ୍ରିୟ କବି, ଆଧୁନିକ ଓଡ଼ିଆ କବିତାର ସାରଥି ରାଧାନାଥଙ୍କର କୃତିଅର୍ଚ୍ଚନା ପାଇଁ ଅତୀତରେ ଏ ଜାତିର କେତେଜଣ ସାହିତ୍ୟସାଧକ ଆପଣଙ୍କୁ କେତେଗୋଟି ସମୀକ୍ଷା ଗ୍ରନ୍ଥର ଉପହାର ଦେଇଥିଲେ ।

କିନ୍ତୁ ରାଧାନାଥଙ୍କ ଭଳି ଜଣେ କୃତବିଦ୍ୟ କାବ୍ୟ-କାରଙ୍କର ପ୍ରତିଭାର ମୂଲ୍ୟାୟନ ଲାଗି ଏଇ କେତୋଟି ମୁଷ୍ଟିମେୟ ଗ୍ରନ୍ଥ ଜାତିର ବିଭବରେ ଯଥେଷ୍ଟ ନୁହେଁ । ତଥାପି ସେମାନଙ୍କର ଶ୍ରମ ଓ ସାଧନାର ଫଳଶ୍ରୁତି ସ୍ୱରୂପ ମିଳିଥିବା, ରାଧାନାଥ-ଜୀବନୀ ରାଧାନାଥ ପରିଚିତି, ଯୁଗପ୍ରବର୍ତ୍ତକ ସ୍ରଷ୍ଟା ରାଧାନାଥ, 'ଡଗର'ର ରାଧାନାଥ ବିଶେଷାଙ୍କ, କବିଲିପି, ରାଧାନାଥଙ୍କ ଅନନ୍ୟପ୍ରତିଭା, ରାଧାନାଥ ସାହିତ୍ୟ ସମୀକ୍ଷା ଓ ଯୁଗଜ୍ୟୋତି ରାଧାନାଥ ଇତ୍ୟାଦି ସମୀକ୍ଷା ଗ୍ରନ୍ଥଗୁଡ଼ିକ ଆମ ପାଇଁ ସ୍ମରଣୀୟ । ମୋ ଦୃଷ୍ଟିରେ ପଡ଼ିଥିବା ଏଇ ଆଠଖଣ୍ଡି ଗ୍ରନ୍ଥ ରାଧାନାଥଙ୍କର ପ୍ରତିଭା କଳନା ଲାଗି ଯେ ଏକ ପୂର୍ବତନ ପଦକ୍ଷେପ ଏଥିରେ କୌଣସି ସନ୍ଦେହ ନାହିଁ ।

ମୋର ଏଇ ଗ୍ରନ୍ଥଟି ସେଥିରେ ଏକ ନୂତନ ସଂଯୋଗ; ଆପଣମାନଙ୍କର ମାନସିକ ପ୍ରୀତି ନିମନ୍ତେ ନିବେଦିତ । ଏହାକୁ ନୂତନ ବୋଲି କହିବା ମୂଳରେ ଏଇ ଧାରଣା ନିହିତ ଯେ, ମୋର ଅନୁଶୀଳନ ରାଧାନାଥଙ୍କର ବ୍ୟକ୍ତିତ୍ୱ ଓ ସାରସ୍ୱତ କୃତିକୁ ଟିକିନିଖି ଚର୍ଚ୍ଚା କରିଛି । କବିଙ୍କ ବ୍ୟକ୍ତିଗତ ଜୀବନର ବିରାଗ-ଅନୁରାଗ ଯେଉଁ ପରିମାଣରେ କବି-ପୁରୁଷକୁ ପ୍ରଭାବିତ କରିଛି କିମ୍ବା କବି-ଶକ୍ତିର ଉନ୍ମେଷ-ଉତ୍ତରଣରେ ଏହା ଯେପରି ସହାୟକ ହୋଇଛି, ତାହାର ବିସ୍ତୃତ ମୂଲ୍ୟାୟନ ଏଥିରେ କରାଯାଇଛି । ବିଭିନ୍ନ ପର୍ଯ୍ୟାୟ, କବିଙ୍କର ଜନ୍ମ, ଶୈଶବ ଜୀବନ, କବିପ୍ରତିଭାର ଉନ୍ମେଷ-ଉତ୍ତରଣ, ଜୀବନରେ କବି-କଳିର ଘଟଣା, ଏବଂ ତାଙ୍କର ଶିକ୍ଷକ-ପ୍ରଶାସକ ଜୀବନର ବିବିଧ ଜଣାଅଜଣା ବିଷୟ ଆଲୋଚିତ ହୋଇଛି ।

ଏତଦ୍‌ଭିନ୍ନ ଏଥିରେ କବିଙ୍କ ଦେହାବସାନ ପରେ ବିଦଗ୍‌ଧମାନଙ୍କର ଅଶ୍ରୁତର୍ପଣ ଓ ପ୍ରତିଭା ଅର୍ଚ୍ଚନାର ସ୍ୱଭାବ-ସ୍ୱରୂପଟିକୁ ବିଶ୍ଳେଷଣ କରାଯାଇଛି ଏବଂ କବିଙ୍କ କାବ୍ୟ-ଦର୍ଶନ ବାବଦରେ ନୂତନ ଦୃଷ୍ଟିକୋଣରୁ ଆଲୋଚନା କରାଯାଇଛି ।

ଏଥିଲାଗି ଅନେକ ବେଦନାର ରକ୍ତ ଦାଗ ମୋତେ ହୃଏତ ବହନ କରିବାକୁ ପଡ଼ିଛି । ତଥାପି ଏ ଆଘାତର ଯନ୍ତ୍ରଣା ଏବଂ ସମସ୍ତ ସମୟରେ ରୋଗର ଅବସାଦ ଶ୍ରୀଜଗନ୍ନାଥଙ୍କ କରୁଣାରୁ ମୋତେ ଏଇ କର୍ମ ପଥରୁ ବିଚଳିତ କରିପାରିନାହିଁ । ମୋର ଏଇ ସାରସ୍ୱତ କର୍ମର ଉଦ୍‌ବେଳନାକୁ ଆହୁରି ତୀବ୍ରତର କରିଛି ମୋର ଅଧ୍ୟାପକବନ୍ଧୁ ଓ ସାରସ୍ୱତସାଥୀମାନଙ୍କର ପ୍ରେରଣା । ରାଧାନାଥଙ୍କ କୃତିର କଳନା ପେନ ଯଦି ମୁଁ କେତେବେଳେ କେଉଁଠି ଗୁରୁତର ସମସ୍ୟାର ସମ୍ମୁଖୀନ ହୋଇଛି, ତାହାର ସୁବୋଧ ଆଲୋଚନା ପାଇଁ ସହକର୍ମୀ ଅଧ୍ୟାପକ ବନ୍ଧୁମାନଙ୍କର ସାହାଯ୍ୟ ଲୋଡ଼ିଛି । ସହକର୍ମୀ ବନ୍ଧୁ ଓ ସାରସ୍ୱତ ସାଥୀ ଅଧ୍ୟାପକ ହେମନ୍ତକୁମାର ଦାସ, ଅଧ୍ୟାପକ ପୀତାମ୍ବର ପ୍ରଧାନ ଓ ଅନୁଜପ୍ରତିମ ଅଧ୍ୟାପକ ମହେଶ୍ୱର ଦାସ ପ୍ରଭୃତି ଅଯାଚିତ ଭାବରେ ସେମାନଙ୍କର ସମସ୍ତ ଦେଇ ମୋ ମନଭିତରର ଅସ୍ପଷ୍ଟ କୌତୂହଳଗୁଡ଼ିକୁ ପରିଷ୍କାର କରି ଦେଇଛନ୍ତି । ତାଙ୍କର ଏଇ ଅକୁଣ୍ଠ ଅବଦାନ ନିକଟରେ ମୁଁ କୃତଜ୍ଞ । ପ୍ରୀତିର ଦଣ୍ଡବତଟିଏ ଜଣାଇ ତାଙ୍କ ଋଣ ସ୍ୱୀକାର କରୁଛି ସିନା, ଅନ୍ୟଥିକ ମୁଁ ନିଃସ୍ୱ ।

ମୋର ପ୍ରିୟ ପ୍ରକାଶକ ବନ୍ଧୁ ଶ୍ରୀ ନିତ୍ୟାନନ୍ଦ ଦାସ ଅତ୍ୟନ୍ତ ଉତ୍ସାହ ଓ ଆନ୍ତରିକ ପ୍ରଯତ୍ନ ସହକାରେ ପୁସ୍ତକଟିର ପ୍ରକାଶନକୁ ତ୍ୱରାନ୍ୱିତ କରିଛନ୍ତି । ତାଙ୍କର ଏଇ ବନ୍ଧୁବତ୍ସଳ ମନୋଭାବ ପାଇଁ ମୁଁ କୃତଜ୍ଞ ।

ନବସ୍କୋରପ ପ୍ରେସ ଓ ପୁସ୍ତକ ଭଣ୍ଡାରର କର୍ମଚାରୀମାନେ ଯେପରି ସହଯୋଗ କରିଛନ୍ତି ସେଥିପାଇଁ ସେମାନେ ଧନ୍ୟବାଦାର୍ହ ।

ପରିବାରର ଜଞ୍ଜାଳ ବହୁ ସମୟରେ ଏକାଗ୍ରତାକୁ ବିଡ଼ମ୍ବିତ କରିଛି, କିନ୍ତୁ ଶ୍ରୀମତୀ ଲାବଣ୍ୟ ନାୟକଙ୍କର ଯତ୍ନରୁ କେତୋଟି ନିଷ୍କଳ ମୁହୂର୍ତ୍ତର ସୁଯୋଗଲାଭ ସମ୍ଭବ ହୋଇଥିବାରୁ—ତାଙ୍କର ଏଇ ଅବଦାନ ମୋ ପାଇଁ ସ୍ମରଣୀୟ ।

ମୋର ଶ୍ରମ ଓ ସର୍ଜନା ଯଦି ଆପଣଙ୍କ ଉପକାରରେ ଲାଗେ, ତାହାହିଁ ହେବ ମୋର ପରମ ସୌଭାଗ୍ୟ । ଇତି ।

ସାରସ୍ୱତ ନିଳୟ
ବିଜୟା ଦଶମୀ, ୧୯୭୫
ବ୍ରହ୍ମପୁର-୧

ବିନୀତ
କ୍ଷେତ୍ରବାସୀ ନାୟକ

## ଦ୍ୱିତୀୟ ସଂସ୍କରଣର ଭୂମିକା

ପ୍ରକାଶ ପରେ ପୁନଃ ପ୍ରକାଶ, ଜୀବନ ପରେ ପୁନର୍ଜୀବନ—ଏଥିରେ ଖାଲି ପଟ ବଦଳୁଛି ସିନା, ଅବିନାଶୀ ସତ୍ତାର ପରିବର୍ତ୍ତନ କାହିଁ ? ବିଶ୍ୱାସ କରୁଛି; 'କବିଚରିତ ସୁଧାନିଧି' ଆପଣାର ସତ୍ତା ହରାଇ ନାହିଁ । ଗୁଣୀଜନେ ଯେତିକ ମୂଲ୍ୟ ଦେଇଛନ୍ତି, ତାହାକୁ ସବିନୟେ ଅଙ୍ଗୀକାର କରୁଛି । ପ୍ରବୀଣ ସାହିତ୍ୟିକ ଡକ୍ଟର ନଟବର ସାମନ୍ତରାୟ, ଶ୍ରୀଯୁକ୍ତ ଚିତ୍ତରଂଜନ ଦାସ, ଏହି ଗ୍ରନ୍ଥଟିର ମୂଲ୍ୟାମୂଲ୍ୟ ସଂପର୍କରେ ମନ୍ତବ୍ୟ ଦେଇ ମୋ ମନରେ ଉତ୍ସାହର ଦୀପ ଜାଳିଛନ୍ତି, ମୋ ସାଧନା-ପଥର ଖୁଣ୍ଟିଗୁଡ଼ାକୁ ମୋତେ ଚହ୍ନାଇ ଦେଇଛନ୍ତି, ସେମାନଙ୍କୁ ପ୍ରଣାମ କରୁଛି । ମୋର ଅନ୍ତରଂଗବଂଧୁ ନିତ୍ୟାନନ୍ଦ ଦାସ ଗ୍ରନ୍ଥଟିର ଆଶୁପ୍ରକାଶ ପାଇଁ ମୋତେ ତତ୍ପର କରାଇଛନ୍ତି, ତାଙ୍କର ଆଗ୍ରହ ଓ ପ୍ରଯତ୍ନ ପାଇଁ ମୁଁ କୃତଜ୍ଞ ।

ଗ୍ରନ୍ଥଟି ଦ୍ୱିତୀୟ ସଂସ୍କରଣରେ ପହଂଚିଲା । ଈଶ୍ୱରାର୍ପିତ ଆତ୍ମ-ଶକ୍ତି ବଳରେ ଏହା ସାରସ୍ୱତ ଜଗତରେ ନ୍ୟାଯ୍ୟ ମର୍ଯ୍ୟାଦା ପାଉ, ଯେଉଁମାନେ ମରମ ଦେଇ ପଢ଼ିବେ, ବିଷୟରେ ମଜ୍ଜିପାରିବେ ସେମାନଙ୍କ ହାତରେ ଏହା ଶୋଭାପାଉ, ଏତିକି କାମନା ! ଇତି ।

ସାରସ୍ୱତ ନିଳୟ
ବିଜୟା ଦଶମୀ, ୧୯୮୦
କଟକ-୩

ବିନୀତ
କ୍ଷେତ୍ରବାସୀ ନାୟକ

# ମତ ଓ ମନ୍ତବ୍ୟ

ବାଣୀଭବନ
ସାମନ୍ତରାପୁର
ଭୁବନେଶ୍ୱର-୨
୭ . ୫ . ୭୭

ସ୍ନେହର କ୍ଷେତ୍ରବାସୀ ବାବୁ,

ପଠାଇଥିବା ବହି ଓ ପତ୍ର କୃଷ୍ଣବାବୁଙ୍କ ଠାରୁ ପାଇ ଅତିଶୟ ଆନନ୍ଦିତ ହେଲି । ସେଥିପାଇଁ ଆପଣଙ୍କୁ ଧନ୍ୟବାଦ ଜଣାଉଛି । ମୁଁ ଦିନେ ଯେଉଁ ବାଟରେ ଯାଇଥିଲି ଆପଣମାନଙ୍କ ପରି ପରବର୍ତ୍ତୀ ବାଟୋଇମାନଙ୍କ ସାଧନା ଦେଖିଲେ ଓଡ଼ିଶାରେ ମୋ ଅପେକ୍ଷା ଆଉ କେହି ଅଧିକ ଖୁସୀ ହେବ ବୋଲି ମୁଁ ଭାବୁନାହିଁ । ପ୍ରାୟ ସମସ୍ତ ବହିଉପରେ ଆଖି ପକାଇ ସାରିଲିଣି । ଭଲ ପରିଶ୍ରମ କରିଛନ୍ତି, ଆପଣଙ୍କ ଠାରୁ ପ୍ରେରଣା ପାଇ ଭବିଷ୍ୟତରେ ଅନ୍ୟ କେହି ନିଶ୍ଚୟ ଏଥିରେ ହାତ ଦେବେ । ଆପଣଙ୍କ ସାଧନାର ସିଦ୍ଧିରେ ମୁଁ ଅତ୍ୟନ୍ତ ଆନନ୍ଦିତ । ଆଶା, ସକୁଟୁମ୍ବେ ଭଲଥିବେ । ଇତି ।

ଆପଣଙ୍କର
**ନଟବର ସାମନ୍ତରାୟ**

‘କବି ଚରିତ: ରାଧାନାଥ’ ଏକ ନୂତନ ପ୍ରୟାସ । ଓଡ଼ିଆ ସାହିତ୍ୟର ଆଲୋଚନା କ୍ଷେତ୍ରରେ ନିଶ୍ଚିତ ଭାବରେ ଏକ ନୂତନ ଓ ସାହସିକ ପ୍ରୟାସ । ଏହି ପ୍ରୟାସର ପରୀକ୍ଷା ଏଠି ଏହାପୂର୍ବରୁ ପ୍ରାପ୍ତ ନଥିଲା । ଜଣେ କବିର କାବ୍ୟ ଦେଇ ତା'ର ଜୀବନକୁ ଦେଖିବା ଓ ତା'ର ଜୀବନ ଦେଇ ତାର କାବ୍ୟକୁ ଦେଖିବା,— ସମାଲୋଚନାର ଏଇ ପଦ୍ଧତିରେ ଅନେକ ଅଧିକ ଅନ୍ତଃପ୍ରବେଶ ଦରକାର ହୁଏ, ସମ୍ଭବତଃ ଅନେକ ଅଧିକ ପ୍ରୀତି ମଧ୍ୟ ଲୋଡ଼ା ହୁଏ । କୌଣସି କବି ଆମ ଜାତିର ଗୌରବ ବଢ଼ାଇବାକୁ ଆସିଥିଲେ ବା ଆମ ଜାତୀୟ ଜୀବନରେ ଅମୁକ ଅଭାବଟାର ପୂରଣ କରିବାକୁ ଆସିଲେ ବୋଲି ଘୋଷଣା କରି, ତେଣୁ ସେ ଆମର ଗୋଟାପୁଞ୍ଜା ଏକ ସମ୍ପତ୍ତି ବୋଲି ତାଙ୍କଠାରୁ ଏକତରଫା ଏକସ୍ୱରନାମା ଲେଖାଇନେବା ସକାଶେ ଯେତିକି ପ୍ରୀତି ଲୋଡ଼ା ହୁଏ, କବିର ଜୀବନ ଦେଇ ତା'ର କାବ୍ୟକୁ ଦେଖିବାକୁ ଗଲେ ତା'ଠାରୁ ଅନେକ ଅଧିକ ପ୍ରୀତି ଲୋଡ଼ା ହୁଏ, ଅଧିକ ନିର୍ଭୁଲ ଭାବରେ କହିଲେ, ଆଉ ଏକ ଅନ୍ୟପ୍ରକାରର ପ୍ରୀତି ଲୋଡ଼ା ହୋଇଥାଏ ।

ଡକ୍ଟର କ୍ଷେତ୍ରବାସୀ ନାୟକ ସେହି ପ୍ରୀତିର ସ୍ୱଜନ ହୋଇଛନ୍ତି, ସେହି ସାହସଟିକୁ କରିଛନ୍ତି । ସାହିତ୍ୟ-ସମାଲୋଚନା ଗୁଡ଼ିକ ଅଧିକାଂଶ ସ୍ଥଳରେ ଗୁଚ୍ଛା ପାଠ୍ୟ ପୁସ୍ତକ ପରି ମନେ ହେଉଥିବା ବେଳେ ‘କବି ଚରିତ’ ଆମ ଭିତରେ ଏକ ଅନ୍ୟ ଆଲୋଡ଼ନ ଓ ଅନୁସନ୍ଧିତ୍ସା ଯେ ସୃଷ୍ଟି କରିବ, ଏଥିରେ କୌଣସି ସନ୍ଦେହ ନାହିଁ ।

ଭୁବନେଶ୍ୱର
୫ । ୫ । ୭୨

ଚିତ୍ତରଂଜନ ଦାସ

## ଏଇ ଲେଖକଙ୍କର ପ୍ରକାଶିତ ଅନ୍ୟାନ୍ୟ ଗ୍ରନ୍ଥ :

**ପ୍ରବନ୍ଧ/ସମାଲୋଚନା :**

୧ । ଅଲଂକାର ଓ ଅଲଂକାର ତତ୍ତ୍ୱ (୧୯୬୮, ଦ୍ୱିତୀୟ ସଂସ୍କରଣ ୧୯୮୦)
୨ । ସାହିତ୍ୟର ସାମାନ୍ୟ କଥନ (୧୯୭୦)
୩ । ସାହିତ୍ୟର ଭାଷା ଓ ନକ୍‌ସା (୧୯୭୦)
୪ । କବି ନୀଳକଣ୍ଠ (ମନୋଗ୍ରାଫ୍‌-୧୯୭୨)
୫ । ଆଧୁନିକ ଓଡ଼ିଆ କାବ୍ୟ-ସାହିତ୍ୟରେ ପାଶ୍ଚାତ୍ୟ ପ୍ରଭାବ (ଥେସିସ୍‌-୧୯୭୭)
୬ । ନାଟ୍ୟକବି ଅନ୍ନପୂର୍ଣ୍ଣା : କବି ଚରିତ ଓ କାବ୍ୟଚର୍ଚ୍ଚା (ମନୋଗ୍ରାଫ୍‌-୧୯୭୯)
୭ । ଆଲୋଚନା ପଥ (୧୯୭୯)

**ଗଳ୍ପ :**

୮ । ଫୁଲର କବର (୧୯୬୭)

**କବିତା :**

୯ । ଉଚ୍ଚାରଣ (୧୯୬୯)

**ସଂପାଦିତ ଗ୍ରନ୍ଥ :**

୧୦ । ରାଧାନାଥ ଗ୍ରନ୍ଥାବଳୀ (ପରିବର୍ଦ୍ଧିତ ନୂତନ ସଂସ୍କରଣ—୧୯୭୫)
୧୧ । ଫକୀର ମୋହନ କଥା-ସାହିତ୍ୟ (୧୯୭୭)
୧୨ । ସାଂପ୍ରତିକ ଓଡ଼ିଆ ସାହିତ୍ୟ ସଂପର୍କରେ (୧୯୭୩)
୧୩ । ଶ୍ରୀ ଜଗନ୍ନାଥ ପଦ୍ୟାବଳୀ—୧ମଭାଗ (୧୯୭୬)
୧୪ । ଶ୍ରୀ ଜଗନ୍ନାଥ ପଦ୍ୟାବଳୀ—୨ୟଭାଗ (୧୯୭୮)
୧୫ । ଶ୍ରୀ ଜଗନ୍ନାଥ ପଦ୍ୟାବଳୀ—୩ୟଭାଗ (୧୯୭୮)
୧୬ । ଶ୍ରୀ ଜଗନ୍ନାଥ ପଦ୍ୟାବଳୀ—୪ର୍ଥଭାଗ (୧୯୮୦)
୧୭ । ନାଟ୍ୟକବି ଅନ୍ନପୂର୍ଣ୍ଣା ରଚନାଶ୍ରୀ (୧୯୭୮)

## କବିଚରିତ : ରାଧାନାଥର ବିଷୟ ସୂଚୀ


| | |
|---|---|
| ୧. ଜନ୍ମ : ଶୈଶବ ଜୀବନ | ୧—୧୩ |
| ୨. କବି ପ୍ରତିଭାର ଉନ୍ମେଷ ଓ ଉତ୍ତରଣ | ୧୩—୮୦ |
| ୩. କବି କଳା | ୮୧—୯୬ |
| ୪. ଶିକ୍ଷକ ଓ ପ୍ରଶାସକ ରାଧାନାଥ | ୯୭—୧୦୨ |
| ୫. ଅଶ୍ରୁତର୍ପଣ ଓ ପ୍ରତିଭା ଅର୍ଚ୍ଚନା | ୧୦୩—୧୦୭ |
| ୬. ରାଧାନାଥଙ୍କ କାବ୍ୟ-ଦର୍ଶନ | ୧୦୮—୧୨୧ |
| ୭. ସାଧାରଣ ନାମ ସୂଚୀ | ୧୨୩— |

## କବି ଚରିତ : ରାଧାନାଥ

( ୧୮୪୮ - ୧୯୦୮ )

କବିର ସାରସ୍ୱତ ଜୀବନ ବ୍ୟକ୍ତି-ବିଶ୍ୱ ଓ ବହିଃବିଶ୍ୱର ମିଳିତ ଯୋଗରେ ପରିବର୍ଦ୍ଧିତ ହୋଇଥାଏ । ଏଇ ଦୁଇ ଜଗତ ହେଉଛି ତାଙ୍କ ଅନୁଭୂତିର ସ୍ପର୍ଶ-ଭୂମି । କବି-କୃତି ଯେହେତୁ ଅନୁଭୂତିର ଅକ୍ଷର, ତେଣୁ ଉଭୟ ଜଗତର ପ୍ରତିଛବି କବିର କାବ୍ୟ-କବିତାରେ ପ୍ରତିଫଳିତ ହେବା ସ୍ୱାଭାବିକ । କବିଙ୍କର ସାରସ୍ୱତ ସମ୍ପଦରୁ କବି-ପୁରୁଷର ଆତ୍ମାକୁ ଚିହ୍ନି ହୁଏ କିମ୍ବା କବିଙ୍କର ଜୀବନ-ଚରିତ ଅନୁଧ୍ୟାନରୁ ତାହାଙ୍କର କାବ୍ୟ-କୀର୍ତ୍ତିର ମୂଲ୍ୟବୋଧ କଳନା କରିହୁଏ । ରାଧାନାଥ କବି; ଜୀବନ ଓ ଜନମ ମାଟିର କବି । ଜୀବନ ଓ ଜନମ ମାଟି ପ୍ରତି କବି-ପୁରୁଷର ମୁହାଁମୁହିଁ କେତେ, କିଏ କହିବ ସେ କଥା ! କହିଲେ କହିବ ଜୀବନ-ଗାଥା କିମ୍ବା ଅକ୍ଷର-କାବ୍ୟ, କିଏ କାହିଁ କବିତା । ଏଇ ଭୂମିକାରେ ମୁଁ ଆଲୋଚନା କରୁଛି କବିଙ୍କର ଜୀବନ-ଚରିତ । ଏହାକୁ ବୋଲି ପାରନ୍ତି କ୍ଷେତ୍ର ପରିକ୍ରମା—କବି ଜୀବନ କ୍ଷେତ୍ରର ପରିକ୍ରମା । ଏଥିରେ ଖୁବ୍ ପ୍ରଭାବଶାଳୀ ହେଉଛି ଦୁଇଟି ଚୁମ୍ବକ-ଖଣ୍ଡ; ଦୁଇ ପାର୍ଶ୍ୱରେ ଏହାଙ୍କ ସ୍ଥିତି; ଗୋଟିଏ ପଟେ ଜୀବନ, ଅପର ପକ୍ଷରେ ଜନମ ମାଟି; ଏହାକୁ ଯେମିତି କବି ଜୀବନର ଲୀଳା ।

### ଜନ୍ମ / ବଂଶ ପରିଚୟ

ଆମକୁ ଆମ ଜୀବନ ଯେମିତି ପ୍ରିୟତମ, ସେମିତି ଆମର ଜନ୍ମ ମାଟି । ଏଇ ଜନମ ମାଟିର କୋଳରେ ଆତଯାତ ହେଉଥିବା ସନ୍ତାନମାନଙ୍କର ଶକ୍ତି ଯେମିତି ମାଟି ହୁଏ ଶକ୍ତିଶାଳୀ । ଅଖ୍ୟାତ ପଲ୍ଲୀ, ବିଖ୍ୟାତ ଭୂମିକା ପାଏ । ଉଦୟ ଅସ୍ତର ସୀମା ଭିତରେ ଘଟୁଥିବା ସାଧାରଣ ଘଟଣା ମଧ୍ୟ ଏଠି କ୍ରମେ ଅସାଧାରଣ ହୋଇଯାଆନ୍ତି । ବଣ ପାହାଡ଼ କିମ୍ବା ସାଗର ସୈକତ କେହି ଜନ୍ମ ମାଟିର ଗୌରବ ବ୍ୟାପ୍ତିକୁ ବାଧା ଦେଇ ପାରନ୍ତି ନାହିଁ । ନଦୀ କୂଳର ଧୋଇ କିମ୍ବା ବାଲିବନ୍ତର ଝଡ଼ କେହି ଏହାର ପ୍ରସିଦ୍ଧିକୁ ଲୁଚେଇ ଦେଇ ପାରନ୍ତି ନାହିଁ ।

ଯେମିତି କାଂଶବାଂଶ ନଦୀର ଜୁଆର ଭିତା କୌଣସି ଏକ ଅଖ୍ୟାତ ପଲ୍ଲୀର ବିଖ୍ୟାତ ନାମକୁ ମଧ୍ୟ ଧୋଇ ପାରି ନ ଥିଲା । ଏଇ ନଦୀର ଉତ୍ତର କୂଳରେ ଗୋଟିଏ ଛୋଟିଆ ଦଣ୍ଡପାଟ—ସୋର । ତାର ପୂର୍ବ ଦିଗକୁ କେଦାରପୁର ଗାଁ । ବଣିକପୁରୀ ବାଲେଶ୍ୱର ରହିଲା ଦକ୍ଷିଣକୁ ଦଶକୋଶ । ଇତିହାସରେ ଚନ୍ଦ୍ରା-ଅଞ୍ଚଳ ସୋର, ଅତୀତରେ ଥିଲା ଶୌର୍ଯ୍ୟଭୂମି : ରଣ ବିଶାରଦ ଶୂରଙ୍କର ଭୂମି ସୋର ପ୍ରଥିତ; ହେଲା କବି-ଭୂମି । ଶୌର୍ଯ୍ୟ ଓ ଶ୍ରୀର ମିଳନ ମଣ୍ଡପ କାଳଚକ୍ରର ଅନୁଦାନରୁ ଏଇଠି ତିଆରି ହୋଇଗଲା ।

ସେଇ ସୋର—ସେଇ କେଦାରପୁର । ରାଧାନାଥଙ୍କର ଜନମ ଭୂଇଁ । ଛନୁ କବିଙ୍କର ପୂର୍ବପୁରୁଷ, ଏଠାରୁ ଏକକୋଶ ଦୂରବର୍ତ୍ତୀ ଦଶମଙ୍ଗଳ ଗ୍ରାମରୁ ଆସି କେଦାରପୁରରେ ବସତି ବାନ୍ଧି ଥିଲେ । ରାଧାନାଥଙ୍କର ପିତାମହ ନାରାୟଣ ପ୍ରସାଦ ରାଏ ( କୌଳିକ ଉପାଧି 'ଦେ' ) ଦଶମଙ୍ଗଳ ଗ୍ରାମରୁ ଆସି ସୋର ଦଣ୍ଡପାଟର ଜମିଦାର ରାୟ ମହାଶୟ ଜୟ ନାରାୟଣଙ୍କ କଚେରୀରେ ରାଜକାର୍ଯ୍ୟ ପ୍ରତିଷ୍ଠା ଲାଭ କରିଥିଲେ । ରାଜାନୁଗ୍ରହରୁ ତାଙ୍କର କୌଳିକ ଉପାଧି 'ଦେ' ପରିବର୍ତ୍ତେ 'ରାୟ' ହେଲା । ଏଇ ନାରାୟଣ ପ୍ରସାଦ ରାୟଙ୍କର ଜ୍ୟେଷ୍ଠ ପୁତ୍ର ସୁନ୍ଦର ନାରାୟଣ ରାୟ ହେଉଛନ୍ତି ରାଧାନାଥଙ୍କର ଜନ୍ମଦାତା ।

ସୁନ୍ଦରନାରାୟଣ ଥିଲେ ବାଲେଶ୍ୱର ଜିଲ୍ଲା କଲେକ୍ଟରଙ୍କର ଇଜଲାସରେ କାନୁନଗୋ । ପିତା ନାରାୟଣପ୍ରସାଦଙ୍କର ପ୍ରେରଣା ଓ ଉତ୍ସାହରୁ ସେ ପାର୍ସି ଓ ସଂସ୍କୃତ ଭାଷାରେ ଉପଯୁକ୍ତ ଶିକ୍ଷାଲାଭ କରିଥିଲେ, ବଙ୍ଗଳା ଏବଂ ଓଡ଼ିଆ ଭାଷାରେ ମଧ୍ୟ ଖୁବ୍ ବ୍ୟୁତ୍ପତ୍ତି ଥିଲା । ସଂସ୍କୃତ ପଣ୍ଡିତ ଆର୍ତ୍ତତ୍ରାଣ ନନ୍ଦ ଓ ମୌଲବୀ ଟିକୁ ମିଆଁଙ୍କର କଠୋର ଅଧ୍ୟାପନାରୁ ସୁନ୍ଦରନାରାୟଣଙ୍କର କିଛି ବିଦ୍ୟାଧନ ଲାଭ ହୋଇଥିଲା; ସେ ସେକାଳରେ ବେଶ୍ ଉପାର୍ଜନକ୍ଷମ, ମର୍ଯ୍ୟାଦାବନ୍ତ ବ୍ୟକ୍ତି ରୂପେ ପରିଗଣିତ ହେଉଥିଲେ । ତାଙ୍କପରି ଅନ୍ୟ ଭାଇମାନେ—ବଳରାମ ପ୍ରସାଦ, ରମାନାଥ ମଧ୍ୟ ଉପଯୁକ୍ତ କର୍ମନିଯୁକ୍ତି ପାଇ ପାରିଥିଲେ ।

ସୁନ୍ଦର ନାରାୟଣଙ୍କ ସହିତ ଭଗବତ ନାରାୟଣ ରାୟଙ୍କର କନ୍ୟା ତାରିଣୀ ଦାସଙ୍କର ଶୁଭପରିଣୟ ସମ୍ପାଦିତ ହୋଇଥିଲା । ତାରିଣୀ ଦେବୀ ଏକମାତ୍ର ପୁତ୍ର ରାଧାନାଥଙ୍କୁ ଜନ୍ମ ଦେଇ ସୁନ୍ଦରନାରାୟଣଙ୍କ ପରିବାରରୁ ବିଦାୟ ନେଇ ସଂସାର-କର୍ମ ସମ୍ବରଣ କଲେ । ସୁନ୍ଦରନାରାୟଣଙ୍କର ଜ୍ୟେଷ୍ଠ ପୁତ୍ର ରାଧାନାଥ, ୧୮୪୮ ମସିହା ସେପ୍ଟେମ୍ବର ୨୮ ତାରିଖ ଦିନ ପ୍ରଥମେ ଦର୍ଶନ କଲେ ଏଇ ପୃଥିବୀର ମୃତ୍ତିକା ଶଯ୍ୟା; ସେଦିନ ନିଶ୍ଚୟ ଥିଲା ସୁନ୍ଦର ନାରାୟଣଙ୍କ ପରିବାରରେ ଏକ କୋଳାହଳମୟ ଦିନ ।

## ମାତୃ ବିୟୋଗ

ଆରମ୍ଭ ଅଛି ତ କୋଳାହଳ ଅଛି, କୋଳାହଳ ମହ୍ଲଣ ପଡ଼ିଗଲେ ସବୁ ଶେଷ । ଆରମ୍ଭରୁ ଶେଷ ନା ଶେଷରୁ ଆରମ୍ଭ ? ରାଧାନାଥ ତ ଆପେ ଆପେ ଆପଣା ଜୀବନାରମ୍ଭର ସ୍ରଷ୍ଟା ଏବଂ ମାତା ତାରିଣୀ ଦେବୀଙ୍କ ଜୀବନାବସାନର ଦ୍ରଷ୍ଟା । ତାରିଣୀ ଦେବୀଙ୍କ ବିଦାୟ ବେଳା ଗୋଟିଏ ଜୀବନର କୋଳାହଳକୁ ଲିଭେଇ ଦେଲା, ଦେଇଗଲା ଆଉ ଗୋଟିଏ ନୂଆ ଜୀବନ ଲାଗି କଳରବମୟ ସମ୍ଭାବନା । ଏଇ ଦେବା-ନେବାର ସଫ-ଲୀଳା ଭିତରେ ମା-ପୁଅ, ରାଧାନାଥ ଓ ତାରିଣୀ ଦେବୀ; ଖାଲି ଗଲେ ଓ ଆଇଲେ ମାତ୍ର । ପଛଆଡ଼ୁଆ ଯେତେ ବୁଝେଇ କହିଲେ ବି ରାଧାନାଥଙ୍କ ମନ ଶୂନ୍ୟସ୍ଥାନ ପୂରଣ କରି ପାରିଲା ନାହିଁ ।

ଇମୋସନ ବ୍ୟାପାରରେ ଶୂନ୍ୟସ୍ଥାନ ପୂରଣ ବିଦ୍ୟାଟି ରାଧାନାଥଙ୍କୁ ମାଲୁମ ନଥିଲା । ଇମୋସନକୁ ଅନ୍ତରଙ୍ଗ କରିବାର ଅକ୍ଳାନ୍ତ ଚେଷ୍ଟା ହିଁ ସେ କରିଛନ୍ତି ସବୁବେଳେ ।

ତାଙ୍କ ଇମୋସନ ସୁବୋଧ ଶିଶୁଟିଏ ପ୍ରବୋଧନାର ପ୍ରଲେପ ପାଇଲା-କ୍ଷଣି ତୁନି ହୋଇ ଯାଏନା; ସୁଖ ହେଉ ବା ଦୁଃଖ ହେଉ, ଜୀବନରେ ଥରେ ଯାହା ଭେଟିଛି, ତାହା ତାଙ୍କର ଆମରଣ ସାଥୀ ହୋଇ ରହିଛି । ଶିଶୁ ପୁତ୍ର ରାଧାନାଥଙ୍କ ଛାତିରେ ବାଜିଛି ପ୍ରଥମ ଧକ୍କା—ତାରିଣୀ ଦେବୀଙ୍କ ବିୟୋଗ; ବାଲ୍ୟକାଳରୁ ମାତୃ ବିୟୋଗ, ଯେମିତି ଟାଣୁଆ ଛାତି ସହିଲେ ସହିବ । ମମତା—ଭିକାରି ଯା'ର ମନ, ଟୁଳଟୁଳ ରକତ 'ଦିଣ୍ଡ ପରି ଯା'ର କାତର ହୃଦୟ, ସେ କି ସହେ ଏଇ ଦାରୁଣ ଦୁର୍ଘଟଣା ! —ଶବାଧାର ବନ୍ଧା ସରିଛି, ଶୁଭ୍ର ଆସ୍ତରଣର ଅନ୍ତରାଳରେ କାହାର ସେ ପ୍ରତିମୂର୍ତ୍ତି ? ପିତାମହଙ୍କର ପ୍ରବୋଧନା ଯେତେ ମିଛ କହିଲେ ବି ରାଧାନାଥଙ୍କର ମନ ବୁଝୁନାହିଁ କିଛି, ଖାଲି ଅଶ୍ରୁ—ଅଶ୍ରୁର ଅବାରିତ ତର୍ପଣ——ମାତା ପ୍ରତି ପୁତ୍ରର ଶେଷ ଦର୍ଶନ—ଅଶ୍ରୁ ଦର୍ଶନ । "ମା ତୋର ସଂସାର ଭୁଲି ଯାଇଛି, ଫେରି ଆସିବ ବାବା, ତୁନି ହଅ !" କେତେ ମିଛ ମାୟା ପତେ ! ଶିଶୁ ମନ ବୁଝିଲେ ବି ବୁଝୁନାହିଁ । ଧାଇଁଛି, ସେଇ ଶବାଧାର ପଛେ ପଛେ । ମା' ତାଙ୍କର ଶ୍ମଶାନ ଯାତ୍ରୀ !

ଏ ଯାତ୍ରା ତ ଅଣଲେଉଟା, ରୁକୁଣା ରଥ । କିଏ ଫେରେ, ମା କି ଫେରିବେ ? ତଥାପି ଖୋଜିବାରେ ହେଲା କରି ନାହାନ୍ତି କି ଅପେକ୍ଷାରେ ବିରତ ହୋଇ ନାହାନ୍ତି ସେ । ସେ ଗ୍ରାମ ଶ୍ମଶାନର ବରଗଛ ମୂଳେ କେତେ ଯେ ଉଦାସ

ମୁହୂର୍ତ୍ତି କଟାଇଛନ୍ତି, ମା'ଙ୍କର ଫେରନ୍ତା ବାଟକୁ ଗୁହଁ ଗୁହଁ କଏ କହିବ ! କନ୍ତୁ କାହିଁ ! ସବୁ ବଫଳ; ଶୂନ୍ୟ—ମହାଶୂନ୍ୟ । ଏଇ ଶୂନ୍ୟତାବୋଧ ରାଧାନାଥଙ୍କର ଚେତନ-ମନକୁ କମ୍ ପ୍ରଭାବତ କର ନାହିଁ; ଏହା ତାଙ୍କ ମନରେ ସଂସାର ପ୍ରତ ଉଦାସୀନତାର ବୀଜ ବପନ କରିଛି. ଜୀବନ ନବାହ କର ବ ସେ ଜୀବନ ପ୍ରତ ବତୃଷ୍ଣ ହୋଇ ପଡ଼ିଛନ୍ତ—'ସଂସାରେ ଥାଇ ମୁଁ ସଦା ଉଦାସୀନ, ଉଦାସୀନ ପ୍ରାୟ କଟାଇଲି ଦନ ।'...ଏପର ଅଭଜ୍ଞତା ତାଙ୍କ ମନରେ ଅଲଭ୍ୟ ରହିଛ । ଅଶାନ୍ତ ଓ ବ୍ୟାକୁଳତାର ଘନ ଘନ ଅତ୍ୟାଗ୍ଚର ତାଙ୍କୁ ବ୍ୟାଧିଗ୍ରସ୍ତ କରିଛି...ଅମାଶୟର ଯନ୍ତ୍ରଣା ସେ ଚରକାଳ ଭୋଗ କରଛନ୍ତ । ଏଥ ମାତୃ ବଚ୍ଛେଦର ପରଣାମ ରାଧାନାଥଙ୍କର ଜୀବନ ଓ ମନକୁ ପ୍ରଭାବତ କରବାରେ କେତେ ଦୂର ଦାୟୀ ତାହାର ନର୍ଭୁଲ ଦୃଷ୍ଟାନ୍ତ କବ-ଲିଖିତ ଏକ କବତାରେ ସୁସ୍ପଷ୍ଟ ! 'ଧରେଛେ ବକଟ ରୋଗ, ଅଲ୍ପ ଦନ ପରେ/ତବ ବସ୍ତ୍ର ତବ କୋଲେ ପାଇବେ ଶମନ/ନ୍ଦର କୁଟୁମ୍ବେର ହିଂସା, ରୋଗ ଚନ୍ତା ଆର/ଭବ ଧାମେ ଜୀବ ସ୍ରୋତେ ନରେ ଯା ପଢ଼ିଲ/ଏଡାଇୟେଛେ ଏ ସବାରେ ତବ ସ୍ନେହ କୋଡ଼େ / ଲଭବ ଆଶ୍ରୟ ଆଶୁ ରୋଗେର ପ୍ରସାଦେ । (ଗ୍ରାମ୍ୟ ଶ୍ମଶାନ ଦର୍ଶନେ ବଦେଶ ପ୍ରତ୍ୟାଗତ ମାତୃହୀନର ଉକ୍ତ : ରାଧାନାଥ ଜୀବନୀ ପୃ. ୧୫ ) †

ଏଇତ ଆମ ଲୋକ-ଧାରଣା—ମାତା ପାଳେ, ବମାତା ଜାଳେ । ମାତାର ଲାଳନ-ପାଳନ ଓ ବମାତାର ଜଳନ୍ତନ—ହୁଏତ ଅନେକ ସନ୍ତାନ ସନ୍ତତଙ୍କର ଅଙ୍ଗେନଭା ଘଟଣା । ରାଧାନାଥଙ୍କ ଜୀବନ ସେଥିର ଗୋଟିଏ ବ୍ୟତକ୍ରମ । ତାଙ୍କ ଜୀବନ ବଭିନ୍ନ ଉପାଦାନରେ ଗଢ଼ା । ମାତୃ-ବଚ୍ଛେଦର ମର୍ମଦାହନ ରାଧାନାଥଙ୍କର ଅନୁଭୂତ ହୋଇ ରହିଥିଲେ ବ ବମାତା ରୂପ ଦାସୀଙ୍କର ଲାଳନ-ପାଳନରେ କୌଣସି ବ୍ୟତକ୍ରମ ଲକ୍ଷ୍ୟ କର ନ ଥିଲେ ସେ । ରୂପ ଦାସୀ ଥିଲେ ଦୟା ଓ ସରଳତାର ପ୍ରତମୂର୍ତ୍ତି; ଏଇ ସାରଲ୍ୟ ଓ ଦୟାଭାବ ରାଧାନାଥଙ୍କ ଚରତ୍ରରେ କ୍ରମଶଃ ପ୍ରତଫଳତ ହେଲା । ପିତା ସୁନ୍ଦରନାରାୟଣ ଥିଲେ କର୍ତ୍ତବ୍ୟ ନଷ୍ଠ, ସାମ୍ସନ୍ ସାହେବଙ୍କର ପ୍ରିୟପାତ୍ର କର୍ମଚାରୀ । ବଦ୍ୟାନୁରାଗ ଓ କାବ୍ୟ-ବନୋଦ, ତାଙ୍କରରୁଚ ବ୍ୟାପାରକୁ ମୁଗ୍ଧ ମଧୁର କରୁଥିଲା । ବଭିନ୍ନ ଭାଷା ଶିକ୍ଷା

---

† ଏହା ରାଧାନାଥଙ୍କ ଦ୍ୱାରା ଲିଖିତ ବଂଗଳା କବତାବଳୀ (୨ୟ ଭାଗ )ର ଅନ୍ୟତମ କବତା । ଏହ ପୁସ୍ତକ ଟି ରାଜା ବୈକୁଣ୍ଠନାଥ ଦେ ଙ୍କର ବ୍ୟୟରେ କଲିକତାର Stan hope ପ୍ରେସରୁ ୧୮୭୦ ସାଲରେ ପ୍ରକାଶ ପାଇଥିଲା ।

କରିବା, ଯେ ସବୁର ଗ୍ରନ୍ଥ କିଛୁ ଅଧ୍ୟୟନ କରିବାରେ ସେ କିଛୁ କିଛୁ ସମୟ ବିନିଯୋଗ କରୁଥିଲେ । ବେଳେବେଳେ ଫାର୍ସି ଭାଷାରେ ପଦେଅଧେ କବିତା ଲେଖି ପକାଉଥିଲେ ।

ରାଧାନାଥ ପିତାଙ୍କ ଠାରୁ ଆହରଣ କଲେ କର୍ତ୍ତବ୍ୟବୋଧ, ନ୍ୟାୟପ୍ରିୟତା ଓ ବିଦ୍ୟାନୁରାଗର କଲ୍ୟାଣକାରୀ ଗୁଣ । ମାତାଙ୍କ ଠାରୁ ପାଇଲେ ଦୟା—ସରଳତାର ସୂକ୍ଷ୍ମ ମାନବଗୁଣ । ପିତାମହୀଙ୍କ ଠାରୁ ପୁରାଣ ଓ ମହାଭାରତ ଇତ୍ୟାଦି ଶ୍ରବଣ କରି ରାଧାନାଥଙ୍କର ବାଳ୍ୟତ ମାନସ କିଛୁ କିଛୁ ପୂର୍ଣ୍ଣ ଚେତନାର ନିଷ୍କଳଙ୍କୀ ଅଭିଜ୍ଞାନ ଲାଭ କରିଥିଲା । ଏହା ପୁଣି ସୁପ୍ରସାରିତ ହେଲା କକାଙ୍କ ଠାରୁ ବୈଷ୍ଣବ ଧର୍ମ ଗ୍ରନ୍ଥର ତତ୍ତ୍ୱ ଚର୍ଚ୍ଚା ଶ୍ରବଣ କରି । ସୁତରାଂ ରାଧାନାଥଙ୍କର ଜୀବନର ପ୍ରଥମ ଲଗ୍ନରୁ ଉଚ୍ଚ ମାନବିକ ଲକ୍ଷଣ ଓ ଆଧ୍ୟାତ୍ମିକ ଧାରଣାର ଜାଗ୍ରତ ପ୍ରତିଫଳନ ଦେଖା ଦେଇଥିଲା, ଯାହାର ବିକାଶ ଯଥା ସମୟରେ ସାଧିତ ହୋଇଥିଲା ।

### ଶିକ୍ଷା/ଅଧ୍ୟୟନଜଗତ

ଘରେଇ ପାଠଶାଳାରୁ ରାଧାନାଥଙ୍କର ବିଦ୍ୟାରମ୍ଭ ହେଲା । ଛଅ ବର୍ଷ ବୟସର ଶିଶୁ ରାଧାନାଥ, ଅବଧାନ ନାରାୟଣ ଚନ୍ଦ୍ର ନାୟକଙ୍କ ତତ୍ତ୍ୱାବଧାନରେ ବିଦ୍ୟାରମ୍ଭ କଲେ ( ୧୮୫୪ ) । ଏଇ ପାଠଶାଳାରେ ଶିକ୍ଷା ତିନି ବର୍ଷ; ଏଥି ଭିତରେ ସେ ପ୍ରାଚୀନ ଓଡ଼ିଆ ସାହିତ୍ୟରୁ ଉପେନ୍ଦ୍ର ଭଞ୍ଜ, ଦୀନକୃଷ୍ଣଙ୍କର ରସକଲ୍ଲୋଳ ଏବଂ ଅଭିମନ୍ୟୁଙ୍କୁ ବେଶ୍ ଭଲଭାବେ ପଢ଼ି ପାରିଥିଲେ । କାରଣ ପ୍ରାଚୀନ ସାହିତ୍ୟ ଅଧ୍ୟୟନ ଓ ଚର୍ଚ୍ଚା ଉପରେ ସେକାଳରେ ଖୁବ୍ ଗୁରୁତ୍ୱ ଦିଆଯାଉଥିଲା । ଭାଷାଶିକ୍ଷା ପରେ ପରେ ସାହିତ୍ୟ ଶିକ୍ଷା ପାଇଁ ଶିକ୍ଷକ ଯତ୍ନ କରୁଥିଲେ । ରାଧାନାଥ ପ୍ରଥମେ ପ୍ରବେଶ କଲେ ପ୍ରାଚୀନ ଓଡ଼ିଆ ସାହିତ୍ୟ ଜଗତକୁ ।

ଗାଁ ଚାଟଶାଳୀ ଶିକ୍ଷା ଶେଷ କରି ରାଧାନାଥ ସୋରରେ ଥିବା ଭଣ୍ଡାରୁଲାର ସ୍କୁଲରେ ପ୍ରବେଶ କଲେ ( ୧୮୫୭ )—ଏଠାରେ ତାଙ୍କୁ ସଂସ୍କୃତ ଅଧ୍ୟୟନର ସୁଯୋଗ ମିଳିଲା—ସଂସ୍କୃତ ପଣ୍ଡିତ ସଦାଶିବ ନନ୍ଦଙ୍କ ଠାରୁ ସେ ସଂସ୍କୃତ କାବ୍ୟ ଓ ବ୍ୟାକରଣ ବେଶ୍ ଆଗ୍ରହ ସହକାରେ ଅଧ୍ୟୟନ କଲେ । ପଣ୍ଡିତ ମହାଶୟ ଥିଲେ ପ୍ରବୀଣ ବେଦାନ୍ତବିଦ୍ । ବେଦାନ୍ତତତ୍ତ୍ୱ କିଛୁ କିଛୁ ପଣ୍ଡିତଙ୍କଠାରୁ ଜାଣିବାକୁ ସୁଯୋଗ ମଧ୍ୟ ପାଇଥିଲେ ରାଧାନାଥ । ତେଣୁ ଏଇ ଦୁଇଟି ଶିକ୍ଷା ସୋପାନର ପରିସର ଭିତରେ ରାଧାନାଥ, ଆଗ୍ରହ ଅଧିକରୁ ଅଧିକ ବିନିଯୁକ୍ତ ହୋଇଛୁ—ସାହିତ୍ୟ ଅଧ୍ୟୟନରେ ଯିନା, ଅନ୍ୟକ୍ଷେତ୍ରକୁ ଏହା ସେତେ ଅନୁରାଗୀ

ହୋଇନାହିଁ । ଅଙ୍କ କିମ୍ବା ସୂତ୍ର ଇତ୍ୟାଦି ଯାହା ସେକାଳର ଷ୍ଟ୍ରଶାଲୀ ସ୍କୁଲ, ତାହାକୁ ମାମୁଲି ଧ୍ୟାନ ଦେଇ ସେ ଅଧ୍ୟୟନ କରିଛନ୍ତି ମାତ୍ର ।

ରାଧାନାଥଙ୍କୁ ଯେତେବେଳେ ଏଗାର ବର୍ଷ, ଗାଁରେ ପାଠପଢ଼ା ସରିଗଲା; ଅଧିକ ବିଦ୍ୟାର୍ଜନ ପାଇଁ ସହର ଯାତ୍ରା ଏଇଠୁ ଆରମ୍ଭ ହେଲା । ସହର ବୋଇଲେ ବାଲେଶ୍ୱର ସହର; ସେ କାଳରେ ଗୋଟିଏ ଲୁଣ କାରବାର ବନ୍ଦର ରୂପେ ବେଶ୍ ପ୍ରସିଦ୍ଧ । କମ୍ପାନୀଙ୍କର କର୍ମଚାରୀ ଏଇ ବନ୍ଦରରେ ବି ଅନେକ । ସେମାନଙ୍କୁ ଇଂରେଜୀ ଶିକ୍ଷିତ କରାଇବା ପାଇଁ ସ୍କୁଲ ଦରକାର—କମ୍ପାନୀ ଏପରି ଆବଶ୍ୟକତା ଅନୁଭବ କରି, ସରକାରଙ୍କୁ ପୂର୍ବରୁ ବହୁବାର ନିବେଦନ କରିଥିଲେ । ତାଙ୍କରି ପ୍ରସ୍ତାବକୁ ବ୍ରିଟିଶ୍ ସରକାର ବାଲେଶ୍ୱରରେ ସର୍ବପ୍ରଥମେ ଗୋଟିଏ ହାଇସ୍କୁଲ ଖୋଲିଲେ ( ୧୮୫୩ ମସିହା, ନଭେମ୍ବର ) । ଏଥିପାଇଁ ତାହାର କଲେକ୍ଟର କାପ୍ଟେନ ଆଲ୍‌ଫ୍ରେଡ୍ ବଣ୍ଡଙ୍କର ଅବଦାନ କିଛି କମ୍ ନୁହେଁ । ସ୍କୁଲ ସ୍ଥାପନା ପାଇଁ ନଗରବାସୀ ସ୍ଥାନୀୟ ଜନସାଧାରଣ ମଧ୍ୟ ଯଥେଷ୍ଟ ଉଦ୍ୟମ କରିଥିଲେ । ସ୍କୁଲଟି ପ୍ରଥମେ ଗଡ଼ଗଡ଼ିଆ ପୋଖରି ନିକଟ ଗୋଟିଏ ସ୍କୁଲଘରେ କାର୍ଯ୍ୟ ଆରମ୍ଭ କଲା, ତତ୍‌ପରେ ଏହା ଦାମୋଦର ପୁରର କୌଣସି ପକ୍‌କାଘରକୁ ସ୍ଥାନାନ୍ତରିତ ହେଲା ( ୧୮୫୫ ) । ଏଠାରେ କିଛି ଅସୁବିଧା ଘଟିଲା—ତେଣୁ ତାହା ପୁଣି ଅନ୍ୟ ଏକ ଭଡ଼ାଘରକୁ ଗଲା ( ୧୮୬୫ ) । କିନ୍ତୁ ୧୮୬୩ ସାଲରୁ ଏଇ ସ୍କୁଲ ସ୍ୱତନ୍ତ୍ର ଘରେ କାର୍ଯ୍ୟ କଲା ।

ସେଇ ସ୍କୁଲର ଛାତ୍ର ରାଧାନାଥ—ମଫସଲ ଛାତ୍ର; ସହରୀ ସ୍କୁଲରେ ପ୍ରବେଶ କରି ଫାଷ୍ଟକ୍ଲାସ୍ ପଢ଼ିଲେ । ଅଧମ ନୁହନ୍ତି ସେ, ଅଧିବଯାସରୁ ତାଙ୍କର ଛାତ୍ରଜୀବନ କ୍ରମେ କ୍ରମେ ଯଶୋମଣ୍ଡିତ ହୋଇଉଠିଲା । ଜିଲ୍ଲା ସ୍କୁଲରେ ପ୍ରବେଶ କଲା ଦିନରୁ ( ୧୮୫୮ ) ବିଦାୟ ନେବା ପର୍ଯ୍ୟନ୍ତ ( ୧୮୬୩ ) କୌଣସି ବର୍ଷ ତାଙ୍କର ଅଧ୍ୟୟନ ଯୋଗ୍ୟତା ଅବଗୁଣିତ ହୋଇ ନାହିଁ, ବରଂ ପୁରସ୍କୃତ ହୋଇଛି । ସର୍ବୋତ୍ତମ ଛାତ୍ର ରୂପେ ରାଧାନାଥ ପୁରସ୍କୃତ ହୋଇଛନ୍ତି—ଏଥିର ଏକମାତ୍ର କାରଣ ଅଧ୍ୟୟନ ସ୍ପୃହା—ସହରରେ ସେ ଏପରି ଏକ ପରିବେଶ ପାଇଲେ ଯେ ଯାହାର ପୂର୍ଣ୍ଣ ବିନିଯୋଗ କରିବାକୁ ସେ ଆନନ୍ଦ ମଣିଥିଲେ । ଆଖ ପାଖରେ ପିତାଙ୍କର ସହକର୍ମୀ ଓ ଶିକ୍ଷିତ ବନ୍ଧୁବାନ୍ଧବଙ୍କର ପରାମର୍ଶ, ସ୍କୁଲର ଶିକ୍ଷକମାନଙ୍କର ପ୍ରେରଣା, ଅଧ୍ୟାୟୀ ବନ୍ଧୁମାନଙ୍କର ଗୁଣ-ସ୍ପର୍ଶ ତାଙ୍କୁ ବିଦ୍ୟାଧ୍ୟୟନରତ କରିଥିଲା । ସେ ଅବକାଶ ମୁହୂର୍ତ୍ତକୁ ମଧ୍ୟ ପୁସ୍ତକ ପାଠରେ ବିତାଉଥିଲେ ।

ପ୍ରତିଦିନ ସ୍କୁଲକୁ ଗଲାବେଳେ ରାଧାନାଥ ସେଦିନର ପାଠ୍ୟଗ୍ରନ୍ଥ ସହିତ ଅନ୍ୟାନ୍ୟ ପଠନ ଉପଯୋଗୀ ପୁସ୍ତକ ନେଇ ଯାଉଥିଲେ, ଫଳରେ ଅବକାଶ ମିଳିଲେ ସେଗୁଡ଼ିକୁ ଅଧ୍ୟୟନ କରୁଥିଲେ । ରାଧାନାଥଙ୍କର ଛାତ୍ର-ମେଧା ସାହିତ୍ୟ ଓ ଗଣିତ—ଉଭୟକୁ ଆୟତ୍ତ କରି ପାରିଥିଲା । ସେ ଜ୍ୟାମିତି ଓ ପାଟୀ ଗଣିତରେ ଯେପରି ଉଚ୍ଚ ସ୍ଥାନ ଲାଭ କରୁଥିଲେ ସେହିପରି ସାହିତ୍ୟରେ । ସୁତରାଂ ସାହିତ୍ୟ ଅଧ୍ୟୟନରୁ ତାଙ୍କର ମନ, ରସଦୃଷ୍ଟି ଏବଂ ଗଣିତରୁ ବୁଦ୍ଧି ବୃତ୍ତି ଲାଭ କରିଥିଲା । ଏହାର ପ୍ରତିଫଳନ ତାଙ୍କର ପରବର୍ତ୍ତୀ କାଳର ସାରସ୍ୱତ ଜୀବନରେ ଦେଖା ଦେଇଥିଲା । ସ୍କୁଲ ଛାଡ଼ିଲା ବେଳର ସାର୍ଟିଫିକେଟରୁ ଜଣାଯାଏ ଯେ, ରାଧାନାଥ ଏକାଧାରରେ ଇଂରେଜୀ, ଗଣିତ, ବଂଗଳା ଏବଂ ଓଡ଼ିଆ ସାହିତ୍ୟରେ ଧୁରନ୍ଧର ଥିଲେ । †

ରାଧାନାଥ ଜିଲ୍ଲା ସ୍କୁଲରେ ପ୍ରବେଶ କଲା ଦିନରୁ ପିତା ବୃନ୍ଦାବନନାରାୟଣ, ପୁତ୍ରଙ୍କର ଭାଷା ଶିକ୍ଷା ପାଇଁ ପ୍ରଶସ୍ତ ସୁଯୋଗ ସୃଷ୍ଟି କରିଥିଲେ । ଦୈନିକ ଘଣ୍ଟାଏ ଲେଖାଁ ଫାର୍ସୀ ଓ ଉର୍ଦ୍ଦୁ ଭାଷା ଶିକ୍ଷା ଦେବା ପାଇଁ ଜଣେ ଆଖୁଣଜୀ ନିଯୁକ୍ତ ହୋଇଥିଲେ । ଦୁଇ ବର୍ଷ ପର୍ଯ୍ୟନ୍ତ ତାଙ୍କ ଠାରୁ ରାଧାନାଥ ଏଇ ଦୁଇଟି ଭାଷା ସୁଚାରୁ ରୂପେ ଶିକ୍ଷା କଲେ—ଏତଦ୍‌ଭିନ୍ନ ପିତାଙ୍କ ପ୍ରେରଣା ଓ ବ୍ୟବସ୍ଥାରୁ ରାଧାନାଥ ଛାତ୍ର ଜୀବନରେ ପ୍ରାଚୀନ ପୁରାଣଗ୍ରନ୍ଥ ଓ ନୀତିଶାସ୍ତ୍ର ପ୍ରଭୃତି ଅଧ୍ୟୟନ କରିଥିଲେ । ରାଧାନାଥଙ୍କୁ ମୂଳରୁ ପ୍ରାଚ୍ୟ ବିଦ୍ୟା ପ୍ରତି ମନ ବଳାଇବାରେ ସେକାଳରେ ଦେଖା ଦେଇଥିବା ନୈତିକ ଅବକ୍ଷୟର ସାମାଜିକ ପରିବେଶ ହିଁ ସୁନ୍ଦର ବାବୁଙ୍କୁ ବାଧ୍ୟ କରିଥିଲା ।

---

† Government School Certificate :

These are to certify that Radhanath Ray has regularly attended Balasore English School for a period of six years, that is to say, from February 1858 to 27th January 1864, that at the time of quitting the school he was in the highest class, that he has made fair progress in the various subjects taught in the school and acquired a fair proficiency in the English literature, Arithmetic, Eculid, Algebra, and in Oriya and Bengali language and that his conduct has been unexceptionable.

| | | |
|---|---|---|
| Balasore School | Countersignedby | Sd. Sreenath Some |
| The 24th | Secretary L. C.P.I. | Headmaster. |
| October 1868 | Balasore. | |

ସେ କାଳର ବାଲେଶ୍ୱରକୁ ଚାହିଁ, ସୁନ୍ଦର ବାବୁ ଦେଖିଲେ ରାଧାନାଥଙ୍କୁ ଯଦି କଡ଼ା ନଜରର ଭିତରେ ଚଳାଇ ନିଆ ନ ଯାଏ ତାହାହେଲେ ସେ ହୁଏତ ସଙ୍ଗ ଦୋଷରୁ ଭିନ୍ନ ପଥରେ ଚାଲିଯିବେ । ଇଂରେଜୀ ଶିକ୍ଷା ଓ ପ୍ରତୀଚ୍ୟ ଜୀବନ ଧାରାର ଚାଲି ସେତେବେଳେ ବାଲେଶ୍ୱର ସହର-ଭୂମିକୁ ଖୁବ ପ୍ରଭାବିତ କରିଥିଲା । ମଦ୍ୟପାନ ଓ ବେଶ୍ୟାଳୟ ଗମନ ଶିକ୍ଷିତ ବର୍ଗଙ୍କର ଜୀବନରେ ନିତି ଦିନିଆ ଅଭ୍ୟାସ ପରି ହୋଇ ଯାଉଥିଲା । ତେଣୁ ଏମାନଙ୍କର ଆତଙ୍କରୁ ସନ୍ତାନସନ୍ତତିଙ୍କୁ ରକ୍ଷା କରିବା ଏକ ପ୍ରଧାନ କର୍ତ୍ତବ୍ୟ ବୋଲି ସୁନ୍ଦର ନାରାୟଣଙ୍କର ହୃଦବୋଧ ହେଉଥିଲା । କାଳେ ରାଧାନାଥ, ସାଙ୍ଗ ସାଥୀଙ୍କର ପ୍ରେମରେ ପଡ଼ି ବାଟ ଭୁଲି ଯିବେ, ସେଇ ଭୟରେ, ସେ ରାଧାନାଥଙ୍କର ସମୟକୁ ଯଥାର୍ଥରେ ବିନିଯୋଗ କଲା ଭଳି ସୁଯୋଗ ତିଆରି କରିଥିଲେ । ଚରିତ୍ର ଓ ମନରେ ସ୍ଥିରତା ଆଣିବା ପାଇଁ ସଂସ୍କୃତରୁ ବହୁ ନୀତି ଶ୍ଲୋକ, ପାରସ୍ୟ ସାହିତ୍ୟର ନୀତିକଥା ଏବଂ ବଙ୍ଗଳା କାଶୀରାମ ମହାଭାରତ ଓ କୃତ୍ତିବାସ ରାମାୟଣ ଅଧ୍ୟୟନ ଲାଗି ପୁଅକୁ ପ୍ରବୃତ୍ତ କରିଥିଲେ । ରାଧାନାଥ ମଧ୍ୟ ଖୁବ୍ ଅନୁରାଗୀ ହୋଇ ଏ ଗୁଡ଼ିକରୁ ବହୁ ଶ୍ଲୋକ ଓ କାହାଣୀ ମୁଖସ୍ଥ କରି ପକାଇ ଥିଲେ । କଦାଚିତ୍ କାଳେ ରାଧାନାଥ ବାହାରକୁ ଭ୍ରମଣ ଉଦ୍ଦେଶ୍ୟରେ ଯାଇଥିଲେ ତାଙ୍କର ଫେରିବା ପର୍ଯ୍ୟନ୍ତ ସୁନ୍ଦର ବାବୁ ଖବର-ତତ୍ତ୍ୱ ନେଉଥିଲେ ଓ ଚାଲିଅଡ଼କୁ ଦୃଷ୍ଟି ଦେଉଥିଲେ । ଏପରି ନଜର ଭିତରେ ଥାଇ ରାଧାନାଥଙ୍କର କୈଶୋର ଜୀବନ ଗଠିତ ହେଲା । ପ୍ରାଚ୍ୟ ପ୍ରଜ୍ଞାର ପ୍ରଭାବ ତାଙ୍କର ଯୁବ ମାନସକୁ ବେଶ୍ ଉଦ୍‌ବୁଦ୍ଧ କଲା, ପୁଣି ଉତ୍ତର କାଳରେ ପାଶ୍ଚାତ୍ୟ ସାହିତ୍ୟର ଗଭୀରାନୁଶୀଳନ ତାଙ୍କର ସୃଷ୍ଟିକାମୀ ମନକୁ ଅନୁପ୍ରାଣିତ କଲା । ଫଳରେ ପ୍ରାଚ୍ୟ ଓ ପାଶ୍ଚାତ୍ୟ ଚିନ୍ତନର ଅପୂର୍ବ ସମନ୍ୱୟ ତାଙ୍କର ମନନ ଭୂମିରେ ପ୍ରମୂର୍ତ୍ତ ହୋଇ ଉଠିଲା ।

ଏଇ ରାଧାନାଥ, କିଶୋର ବୟସରେ ଜୀବନ ବାବଦରେ ଯେତେ କିଛି ପ୍ରଶସ୍ତ ଚେତନା ଲାଭ କଲେ, ଅଧ୍ୟୟନ ଜଗତରୁ । ଜିଲ୍ଲା ସ୍କୁଲର ପାଠ୍ୟ-ଗ୍ରନ୍ଥ-ଗୁଡ଼ିକ (ପ୍ରେସିଡେନ୍ସି ରିଡ଼ର, ବିଭିନ୍ନ ପଦ୍ୟ ଓ ଗଦ୍ୟର ବାଛିତ ସଂକଳନ, ଭୂଗୋଳ ଇତିହାସ ପ୍ରଭୃତି ଇଉରୋପୀୟ ଲେଖକମାନଙ୍କ ଦ୍ୱାରା ଲିଖିତ ଗ୍ରନ୍ଥ, ବଙ୍ଗଳାରେ ଲାହିଡ଼ୀଙ୍କର ନୀତିକଥା, ଅକ୍ଷୟ କୁମାର ଦତ୍ତଙ୍କ ଚାରୁପାଠ, ବିଦ୍ୟାସାଗରଙ୍କର ବତିଶ ସିଂହାସନ, ଏବଂ ମାଇକେଲ ମଧୁସୂଦନ ଦତ୍ତଙ୍କର ବୀରାଙ୍ଗନା ଓ ମେଘନାଦ ବଧ ପ୍ରଭୃତି) ଭବିଷ୍ୟତରେ ରାଧାନାଥଙ୍କର ରୁଚି ଜାଗରଣ ପାଇଁ ସମ୍ଭାବ୍ୟ ପ୍ରେରଣା ଯୋଗାଇଥିଲା । ସେ କାଳର ଶିକ୍ଷାଦାନ ପଦ୍ଧତି ତାଙ୍କ କିଶୋର ମନକୁ ତତ୍ତ୍ୱାନ୍ୱେଷୀ କରିଥିଲା । ସେତେବେଳେ ଶିକ୍ଷକମାନେ ଛାତ୍ରଙ୍କର ପଠନ-ଶୁଦ୍ଧତା ପ୍ରତି ପ୍ରଥମେ ଦୃଷ୍ଟି ଦେଉଥିଲେ । ପଢ଼ିବାରେ ଦୁରସ୍ତ ହେଲା

ଉତ୍ତର ଛାତ୍ରକୁ ଇଂରାଜୀ ଶବ୍ଦର ଅର୍ଥ ବୁଝାଇ ଦିଆ ଯାଉଥିଲା; ବଂଗଳା ଓ ଇଂରାଜୀ ପ୍ରତିଶବ୍ଦ ଦ୍ୱାରା ଅର୍ଥ ପ୍ରକାଶ କରିବାକୁ ପଡୁଥିଲା । ତତ୍ପରେ ପଦର ଅନ୍ୱୟ ଶିକ୍ଷା ଦିଆ ଯାଉଥିଲା ଏବଂ ପଠିତାଂଶର ତାତ୍ପର୍ଯ୍ୟ ଶିକ୍ଷକମାନେ ଛାତ୍ରଙ୍କ ଠାରୁ ଆଦାୟ କରୁଥିଲେ । ଯେଉଁଠି ଛାତ୍ରମାନେ ଅର୍ଥ ବୁଝି ପାରୁ ନ ଥିଲେ ସେଠି ଅଭିଧାନର ଆଶ୍ରୟ ନେଉଥିଲେ—ନୂଆ ନୂଆ ଶବ୍ଦ ଶିକ୍ଷା କରି ଆପଣାର ଶବ୍ଦ ଭଣ୍ଡାର ବୃଦ୍ଧି କରିବା ପ୍ରତି ପିଲାମାନଙ୍କ ମନରେ ଆଗ୍ରହ ସୃଷ୍ଟି କରି ଦିଅଯାଉ-ଥିଲା । ଏହି ପ୍ରଣାଳୀର ସୁଫଳ ହୁଏତ ରାଧାନାଥ ଉପଲବ୍‌ଧି କରିଥିଲେ, ଫଳରୁ ପରବର୍ତ୍ତୀ କାଳରେ ସେ 'ଉତ୍କଳ ରଚନା' ଗ୍ରନ୍ଥ ରଚନା କରି ଆଦର୍ଶ ଅନୁଶୀଳନ ଓ ଉତ୍ତର-ସାଧନାର ବିବିଧ ନମୁନା ଛାତ୍ର ଓ ଶିକ୍ଷକ ମାନଙ୍କର ପ୍ରୟୋଜନ ଲାଗି ପ୍ରକାଶ କରିଥିଲେ । ଏପରି ପ୍ରସ୍ତାବିତ ମତ ଜଣେ କୃତୀଛାତ୍ର ପକ୍ଷରେ ହିଁ ସମ୍ଭବ ।

ରାଧାନାଥ, ବାଲେଶ୍ୱର ଜିଲ୍ଲାସ୍କୁଲରୁ ପ୍ରବେଶିକା/ଏନ୍‌ଟ୍ରାନସ ପରୀକ୍ଷାରେ ପ୍ରଥମ ଶ୍ରେଣୀ ପାଇ ଉତ୍ତୀର୍ଣ୍ଣ ହେଲେ (୧୮୭୩ ଡ଼ିସେମ୍ବର) । କଲେଜ ପଢ଼ା ପାଇଁ ସରକାରୀ ବୃତ୍ତି ମିଳିଲା ମାସିକ ଚଉଦ ଟଙ୍କା । ରାଧାନାଥଙ୍କର ପାଶ୍ ଖବର ବାଲେଶ୍ୱରରେ ପହଞ୍ଚିବା ଦିନ ସବୁଆଡ଼େ ଚହଳ ପଡ଼ିଗଲା । କଚେରୀର "ଅମଲା ମାନେ ଗୋଟିଏ ସ୍ଥାନରେ ବସି ବୋଲା ବୋଲି ହେଲେ—ଜଣା ଯାଉଅଛୁ, ଏନଟ୍ରାନସ ପାଶଟା ଖୁବ୍ ଗୋଟିଏ ବଡ଼ କଥା ନୁହେଁ, ଆମ୍ଭମାନଙ୍କର ସୁନ୍ଦର ବାବୁଙ୍କ ସାନ ସନ୍ତୁଆ ପିଲାଟା ପାଶ୍ କରି ପକେଇଲା । ଏଇଟା ଆଉ କଣ ବଡ଼ କଥା ହୋଇପାରେ ?" †

ଏପରି ବହୁସ୍ୟ ରଚନା ମୂଳରେ ଥିଲା ସେ କାଳର ଶିକ୍ଷା ଓ ଶିକ୍ଷିତ ସଂପ୍ରଦାୟର ସ୍ୱଳ୍ପତା । ସହରରେ ଜଣେ ଏନଟ୍ରାନ୍‌ସ ପାଶ ବ୍ୟକ୍ତି ଆସି ପହଞ୍ଚି ଯାଉଥିଲେ ଲୋକଙ୍କର ଆଖି ଝଲସି ଯାଉଥିଲା—ଏନଟ୍ରାନସ ପାଶ ତ ଦୂରର କଥା ଯଦି କେହି ପ୍ରାଚ୍ୟବିଦ୍ୟା ବିଦ୍ୱାନଙ୍କର ଆଗମନ ସମ୍ବାଦ ଲୋକେ ପାଉଥିଲେ ତାହାହେଲେ ବହୁ ସଂଖ୍ୟାରେ ଆସି ରୁଣ୍ଡ ହୋଇ ଯାଉଥିଲେ । ବାଲେଶ୍ୱରର ତତ୍‌କାଳୀନ ଶିକ୍ଷା ଅବସ୍ଥା ଥିଲା ଏମିତି । ସ୍କୁଲରେ ମଧ୍ୟ ସେତେବେଳେ କେହି ଏନଟ୍ରାନସ ପାଶ ଶିକ୍ଷକ ନଥିଲେ । ଏପରି ସ୍ଥଳେ ଅମଲାମାନେ ରାଧାନାଥଙ୍କର ଏନଟ୍ରାନସ ପାଶକୁ ବହୁସ୍ୟ ଦୃଷ୍ଟିରେ ଦେଖିବା ବିଶ୍ୱାସଯୋଗ୍ୟ । କିନ୍ତୁ ବିଦ୍ୟା

---

† ଶ୍ରୀ ଦୁର୍ଗାଚରଣ ରାୟ—ରାଧାନାଥ ଜୀବନୀ (୧୯୪୧) ପୃଷ୍ଠା ୩୩, କଟକ ।

ଉପାର୍ଜନ ଏକ କଳା, ତାହା ତ ରୂପ ଅରୂପର ଅପେକ୍ଷା ରଖେ ନାହିଁ । ରାଧାନାଥ ସନ୍ତୁଆ ପିଲ ହୁଅନ୍ତୁ ପଛେ ସେ ବିଦ୍ୟା ଧୁରୀଣ ।

ଏନଟ୍ରାନସ ପାଶ ଉତ୍ତାରୁ ରାଧାନାଥ ସରକାରୀ ବୃତ୍ତି ପାଇଁ ଏଫ. ଏ. ପଢିବାଲାଗି କଲିକତା ଗଲେ । ସାଥିରେ ଗଲେ କଟକେଇ ଜାହ୍ନବୀ ବାବୁ । କଲିକତା ନଗରୀ, ତାର ରାଜପଥରେ ବୁଲିଚାଲି କରିବ ସୋରନେଦାରପୁର ଗାଁର ସନ୍ତୁଆ ପିଲାଟି । ସବୁବେଳକୁ କେମିତି ଲାଗୁଚ ; ରୂପକୁ ଘଣ୍ଟା କେତେ ଉଡାନ୍ତୁ । ଆଖିରେ ଲାଗିଚ ନିଶା, କଲିକତାରେ କଲେଜ ପଢା ନିଶା । ପ୍ରେସିଡେନସି କଲେଜ, ନାଁକୁ ବୃହି କାମ । ରାଧାନାଥଙ୍କ ପରି ଯୋଗ୍ୟ ସନ୍ତାନମାନଙ୍କର ଅନୁଷ୍ଠାନ ଏଇ । କାହିଁ କେତେଆଡୁ କେତେ ଛାତ୍ରଙ୍କର ସମାବେଶ ସେଠି ; ରାଧାନାଥ ସେଇ କଲେଜରେ ଭର୍ତ୍ତି ହେଲେ ( ୧୮୬୪ ) ।

ସ୍ୱାସ୍ଥ୍ୟ ସବୁ ଅଭିଳାଷର ରୂପକାର । ଅଭିଳାଷ ଥିଲା କଲେଜ ମାଟି ମାଡ଼ିବେ, ମାଡ଼ିଲେ । କିନ୍ତୁ ସ୍ୱାସ୍ଥ୍ୟର ବନ୍ଧୁର ଏଇଠି ଅତ୍ୟନ୍ତ କ୍ରୂର ହୋଇ ଉଠିଲା । ଦେହ ସହିଲା ନାହିଁ—ମନ ବୁଝୁଁଥାଏ ଯାହା, ସ୍ୱାସ୍ଥ୍ୟ ତାର ଓଲଟା ଫଳ ଦେଖାଇଲା । ରାଧାନାଥ ହେଲେ ଆମାଶୟ ରୋଗାକ୍ରାନ୍ତ । କଲେଜ ଯିବା ଅନସ୍ୱମିତ ହେଲା, ଶରୀର ପୀଡା ଓ ବେଳେ ବେଳେ ଅର୍ଥପୀଡ଼ା ତାଙ୍କୁ କାବୁ କରିଦେଲା । କଲେଜ ପଢାରେ ଡୋରବାନ୍ଧ ବାଳେଶ୍ୱର ଫେରିବାକୁ ବାଧ ହେଲେ ସେ ।

ତଥାପି ଆଖି ପାଶୋରି ପାରିଲା ନାହିଁ ବନ୍ଧୁ ଉର ଚିହ୍ନ—କଲିକତାର ପ୍ରଶସ୍ତ କଲେଜ ପରିସରରେ ରାଧାନାଥ ଯେଉଁ ସଂସର୍ଗ ଲାଭ କରିଥିଲେ ତାହା ସ୍ୱଳ୍ପ ଦିନର ହେଲେ ବି ଖୁବ ପ୍ରଭାବଶାଳୀ ବୋଧ ହୋଇଥିଲା । ସହପାଠୀରୂପେ ରାଧାନାଥ ପାଇଥିଲେ ସେ କାଳର କେତେଜଣ ଯୋଗ୍ୟତମ ବ୍ୟକ୍ତିଙ୍କୁ । ବଙ୍ଗଳାର ଅନ୍ୟତମ ପ୍ରସିଦ୍ଧ କବି ନବୀନ ଚନ୍ଦ୍ର ସେନ ଥିଲେ ତାଙ୍କର ଅନ୍ତରଙ୍ଗ ବନ୍ଧୁ; କଲିକତା ଛାଡ଼ି ରାଧାନାଥ ଚାଲିଆସିଲେ ସୁଦ୍ଧା ଦୁଇଜଣଙ୍କ ମଧ୍ୟରେ ଅନ୍ତରଙ୍ଗତାର ଦୀର୍ଘ ଦିନ ସ୍ଥାୟୀ ହୋଇ ରହିଥିଲା ।

### ସାରସ୍ୱତସଙ୍ଗ/ପରିବେଶ

କଥାରେ ଅଛୁ, ପରିବେଶ ମଣିଷକୁ ଗଢ଼େ । ସେହିପରି ସେ କାଳର ପରିବେଶ ରାଧାନାଥଙ୍କ ସାରସ୍ୱତ ମନଟିକୁ ଗଢ଼ି ଦେଇଥିଲା । ଏଇଠି ରାଧାନାଥଙ୍କୁ ମିଳିଲା, ଜୀବନ ଗଠନଲାଗି ନୂତନ ଦିଗନ୍ତର ସନ୍ଧାନ । ଯେତେବେଳେ ହେମଚନ୍ଦ୍ର

ଓ ମାଇକେଲ୍ ମଧୁସୂଦନଙ୍କର ନବୀନ ସାରସ୍ୱତ ସୃଷ୍ଟି-ଫଳରେ କଲିକତାର ଯୁବମାନସ ପ୍ରୀତିମନା ହୋଇ ଉଠୁଥିଲେ; ପୁଣି କେଶବଚନ୍ଦ୍ର ସେନଙ୍କର ବ୍ରାହ୍ମ-ସମାଜ ଆନ୍ଦୋଳନରେ ସଂସ୍କାରର ଅନୁପ୍ରବେଶ ପାରମ୍ପରିକ ଜୀବନ ଧାରାର ମୋଡ଼ ବଦଳେଇ ଦେଉଥିଲା; ପ୍ରାଚୀନ ଇତିହାସର ଉଦ୍ଧାର ଓ ତାର ଯଥାର୍ଥ ସଂରକ୍ଷଣ ଲାଗି ହଣ୍ଟର ସାହେବଙ୍କର ପ୍ରାଣମୂର୍ଚ୍ଛା ଉଦ୍ୟମ ଗ୍ରବେଷୀମାନଙ୍କର ଆଖି ଖୋଲି ଦେଉଥିଲା—ଏପରି ଏକ ବିବର୍ତ୍ତନର ଉଦୟ-ଲଗ୍ନରେ ରାଧାନାଥଙ୍କ ମନ କଲିକତାର ଆକାଶ ତଳେ ଯେଉଁ ସ୍ପନ୍ଦନ ଲଭି କଲି ତାହା ବା କ୍ଷଣସ୍ଥାୟୀ ହେବ କିପରି ?

ରାଧାନାଥ ଫେରିଲେ । ଘରବାହୁଡ଼ା ରାଧାନାଥ ସଚେତ ବ୍ୟର୍ଥମନା; ଏଇ ବ୍ୟର୍ଥତା ପରିସ୍ଥିତିର ଦାରୁଣତା ଅପେକ୍ଷା ଅଧିକ ପୀଡ଼ା ଦାୟକ ନୁହେଁ । ରାଧାନାଥ ଅନୁଭବ କଲେ ଘରର ପରିସ୍ଥିତି । ତାଙ୍କର ପିଉସୀ ପୁଅ ଭାଇ ନନ୍ଦ-ଜଗମୋହନ ରାୟ, ସୁନ୍ଦରବାବୁଙ୍କୁ ପ୍ରସ୍ତାବ ଦେଲେ, କଟକରେ ଏଫ୍. ଏ. ପଢ଼ିବା ଲାଗି ରାଧାନାଥଙ୍କୁ ପଠାଇ ଦେବା ପାଇଁ । ସେତେବେଳକୁ କଟକସ୍କୁଲରେ ଏଫ୍. ଏ. କ୍ଲାସ ଯାଏଁ ପଢ଼ା ହେଉଥିଲା । ତଦୂର୍ଦ୍ଧ୍ୱରୁ ବି. ଏ. ପଠ କଲିକତାରେ । ଜଗମୋହନ ମଧ୍ୟ ରାଜିଥିଲେ ବି. ଏ. ପାଠ ଶେଷ ଯାଏ ରାଧାନାଥଙ୍କର ସମସ୍ତ ଖର୍ଚ୍ଚ ବହନ କରିବା ପାଇଁ । ସୁନ୍ଦରବାବୁ ଏପରି ସ୍ଥଳେ କୌଣସି ପଦକ୍ଷେପ ନେଇ ପାରିଲେ ନାହିଁ; ରାଧାନାଥଙ୍କୁ ସ୍ଥିର କରିବା ଲାଗି ଦାୟିତ୍ୱ ଦେଇଦେଲେ । ତାଙ୍କ ଉପରେ ପଡ଼ିଲା ଗୁରୁ ଦାୟିତ୍ୱ । ବିବେକବାନ ରାଧାନାଥ, ଆପଣା ପକ୍ଷରୁ କେବଳ ଚିନ୍ତା ନ କରି ପରିବାରର ବର୍ତ୍ତମାନ ଓ ଭବିଷ୍ୟତ ବିଷୟ ନେଇ ମନସ୍ଥ କଲେ···କୌଣସି ଚାକିରିରେ ପ୍ରବେଶ କରିବେ । ଫଳରେ ପିତାଙ୍କ ଉପରେ ପଡ଼ୁଥିବା ଅର୍ଥ-ପୀଡ଼ା କିଂଚିତ୍ ଊଣା ହେବ ପୁଣି ଆସନ୍ନ ଦୁର୍ଭିକ୍ଷ ଦାଉରୁ ପରିବାରକୁ ରକ୍ଷା କରି ହେବ ।

ଏଇ ସମୟକୁ ବାଲେଶ୍ୱର ଜିଲ୍ଲା ସ୍କୁଲରେ ତୃତୀୟ ଶିକ୍ଷକ ପଦ ଖାଲି ଥାଏ । ରାଧାନାଥ ୧୮୬୪ ମସିହା ମେ ପହିଲା ତାରିଖରେ ସ୍କୁଲ ଶିକ୍ଷକ ପଦରେ ଯୋଗ ଦେଲେ । ବେତନ ମାସକୁ ତିରିଶ ଟଙ୍କା । ସ୍କୁଲର ପ୍ରଧାନ ଶିକ୍ଷକ ଥାଆନ୍ତି ଗଙ୍ଗାଧର ଆଚାର୍ଯ୍ୟ । ବେତନ ତାଙ୍କର ମାସିକ ଶହେ ପାଞ୍ଚ ଟଙ୍କା ଆଚାର୍ଯ୍ୟ ମହାଶୟ ଜଣେ ଗୁଣଗ୍ରାହୀ ପୁରୁଷ । ଖୁବ୍ ଜ୍ଞାନ-ପିପାସୁ । ଅଧ୍ୟୟନରେ ତାଙ୍କର ଅବକାଶ କଟେ । ରାଧାନାଥଙ୍କର ରୁଚିକୁ ପ୍ରୋତ୍ସାହିତ କରିବାରେ ଗଙ୍ଗାଧର ବାବୁଙ୍କର ଦାନ ନ୍ୟୂନ ନୁହେଁ । ରଚନା ଓ ଅଧ୍ୟୟନ ଲାଗି

ରାଧାନାଥଙ୍କୁ ଅଖଣ୍ଡ ସୁଯୋଗ ଯୋଗାଇ ଦେଉଥିଲେ ଅସୁର୍ଥ ମହାଶୟ । ପ୍ରବନ୍ଧ ରଚନା ଲାଗି ତାଙ୍କୁ ଅନୁପ୍ରାଣିତ କରଉଥିଲେ । ଗ୍ରନ୍ଥାନୁଶୀଳନର ଅଭ୍ୟାସ ଖୁବ୍ ବଢ଼ାଇ ଦେଇଥିଲେ । ଅନୁକୂଳ ପରିବେଶ ଓ ପ୍ରେରଣା ପାଇ ରାଧାନାଥ ଏଫ୍. ଏ. ପରୀକ୍ଷାର ପାଠ୍ୟ-ପୁସ୍ତକମାନ ଅବସର ସମୟରେ 'ଅଧ୍ୟୟନ କରି ଶେଷ କରି ଦେଇଥିଲେ । ତତ ସଙ୍ଗେ ସଙ୍ଗେ ଶିକ୍ଷକତାର ଦାୟିତ୍ୱ ମଧ୍ୟ ଉତ୍ସାହ ସହକାରେ ତୁଲାଉଥିଲେ ।

ବାଲେଶ୍ୱରରେ କର୍ମ ଜୀବନର ଆରମ୍ଭ ଏବଂ ସେଠାରୁ ମିଳିଥିବା ଉପଯୋଗୀ ପରିବେଶ ରାଧାନାଥଙ୍କ ମନନ-ଭୂମିକୁ କ୍ରମଶଃ ଉର୍ବର କରି ତୋଳୁଥିଲା । ଜୀବନରଙ୍କ ରାଧାନାଥଙ୍କମନ ମୁତାବକ ସୁଯୋଗ ମଧ୍ୟ ମିଳି ଯାଉଥିଲା । ସେ କାଳର ନ'ଅଙ୍କ ଜାତିର ମେରୁଦଣ୍ଡକୁ ଭାଙ୍ଗି ଦେଇଥିଲେ ବି ନବୀନ ଉତ୍ସାହରେ ଆପଣାକୁ ରକ୍ଷାକରିବା ଲାଗି ବିଭିନ୍ନ ମହଲରେ ପ୍ରୟତ୍ନ ଆରମ୍ଭ ହୋଇଥିଲା । ସବୁ କ୍ଷେତ୍ରକୁ ଏଇ ଉଦ୍ୟମ ଭେଦି ଯାଇଥିଲା । ସାମାଜିକ ଓ ଅର୍ଥନୈତିକ ସଙ୍ଗଠନ ଠାରୁ ଆରମ୍ଭ କରି ସାଂସ୍କୃତିକ କାର୍ଯ୍ୟକ୍ରମ ପର୍ଯ୍ୟନ୍ତ ବିଭିନ୍ନ ଦିଗରେ ଲୋକେ ମନପ୍ରାଣ ଢାଳିଦେଇ ପତିତ ଭୂମିକାର ଉଦ୍ଧାର ପାଇଁ ଯତ୍ନବାନ ହୋଇ-ଉଠିଥିଲେ । ଜମିଦାର ଓ ସାମନ୍ତବର୍ଗର ଯୁବକଗଣ ନୂଆ ସଙ୍ଗଠନ କରିଆରେ ମାନବ ମନର ନୈରାଶ୍ୟବୋଧକୁ ଘୁଞ୍ଚେଇ ଦେବା ପାଇଁ ଲାଗିପଡ଼ିଥିଲେ ।

ସେ ସମୟରେ ଦାମୋଦର ଦାସ ନାମକ ଜଣେ ଉତ୍ସାହୀ ଯୁବକ ଆପଣା ଗୃହରେ ଏକ ଉନ୍ନତ ପାଠାଗାର ସ୍ଥାପନ କରିଥିଲେ । ରାଧାନାଥ ଥିଲେ ତାଙ୍କର ଜଣେ ପରମବନ୍ଧୁ । ରାଧାନାଥ ଦୈନିକ ସେଠାରୁ ଯାଇ ଗ୍ରନ୍ଥ ଅଧ୍ୟୟନ କରୁଥିଲେ । ଦାମୋଦର ଦାସଙ୍କ ଉଦ୍ୟମରୁ ମଧ୍ୟ ସେତେବେଳେ ବାଲେଶ୍ୱରରେ 'ଉତ୍କଳ ପ୍ରେସ୍' ସ୍ଥାପନ ଏବଂ 'ସଂବାଦ ବାହିକା' ନାମକ ଏକ ପତ୍ରିକା-ପ୍ରକାଶନର ବ୍ୟବସ୍ଥା ହୋଇଥିଲା । ଦାମୋଦର ବାବୁଙ୍କ ଅନ୍ତେ ଏହି ପ୍ରେସ୍ ଓ ଗ୍ରନ୍ଥାଳୟକୁ ରାଜକୁମାର ବୈକୁଣ୍ଠନାଥ ଦେ କିଣି ନେଇଥିଲେ । କିଣାହେଲା ଉତ୍ତାରୁ ପ୍ରେସଟିର ନାମ ହେଲା 'ଦେ'ଜ ଉତ୍କଳ ପ୍ରେସ' । ଦାମୋଦରବାବୁ କମ୍ବା ବୈକୁଣ୍ଠନାଥ ଦେଙ୍କର ଗ୍ରନ୍ଥାଳୟ ସେ କାଳରେ ବହୁ ସଚେତନ ଯୁବକଙ୍କର ମାନସିକ ଉନ୍ମୀଳନର ସହାୟକ ହୋଇଥିଲା । ରାଧାନାଥ ଏହାର ପୂର୍ଣ୍ଣ ଉପଯୋଗ କରିଥିଲେ । ସ୍କୁଲ ଓ ସରେଇ ଗ୍ରନ୍ଥାବଳୀ ସାହାଯ୍ୟରୁ ରାଧାନାଥ ଦେଶୀ ବିଦେଶୀ ବହୁ ଗ୍ରନ୍ଥ ଅଧ୍ୟୟନ କରି ପାରିଥିଲେ ।

ଛନ୍ଦହିଁ ଥିଲେ ତାଙ୍କ ଜୀବନର ସାଥୀ । ସେ ଥିଲେ ବସ୍ତୁତଃ ବିଶ୍ୱଚିନ୍ତାର ଗ୍ରାହକ । ପାଶ୍ଚାତ୍ୟ ଓ ପ୍ରାଚ୍ୟ—ଉଭୟ ପ୍ରାନ୍ତର ବହୁତ ଲେଖକ ଓ ଲେଖାବଳୀକୁ ସେ ଅଧ୍ୟୟନକରି ସୁଖ ପାଉଥିଲେ—ତହିଁରୁ ସାର-ମୂଲ ସବୁ ଆହରଣ କରି ନେଇ ଆସୁଥିଲେ । ପାଶ୍ଚାତ୍ୟ କବି ଚସର, ସ୍ପେନସର, ମିଲ୍‌ଟନ, ସେକ୍‌ସପିୟର, ଗ୍ରେ, କାଉପର, ଗୋଲ୍‌ଡସ୍ମିଥ, ବାଇରନ, ସେଲି, ଓ୍ୱାର୍ଡ଼ସଓ୍ୱାର୍ଥ; ସ୍କଟ, ଟେନିସନ, ପେଟ୍ରାର୍କ, ଗେଟେ ପ୍ରଭୃତିଙ୍କୁ ସେ ଅଧ୍ୟୟନ କରିଥିଲେ । ପୁଣି ଈଶ୍ୱରଚନ୍ଦ୍ରଙ୍କ ଠାରୁ ହେମଚନ୍ଦ୍ରଙ୍କ ପର୍ଯ୍ୟନ୍ତ ବଂଗଳା କବିମାନଙ୍କର ସେ ପାଠକ ଥିଲେ । ସଂସ୍କୃତରେ କାଳିଦାସ, ଭବଭୂତି, ଶ୍ରୀହର୍ଷ, ଭାରବି, ମାଘ, ବାଣ, ଦଣ୍ଡୀ, ଜୟଦେବ ପ୍ରଭୃତିଙ୍କୁ ସୁଯୋଗ୍ୟ ପଣ୍ଡିତଙ୍କର ସହାୟତାରେ ଅଧ୍ୟୟନ କରିଥିଲେ । ପ୍ରାଚୀନ ଓଡ଼ିଆ କବିମାନଙ୍କ (ଉପେନ୍ଦ୍ରଭଞ୍ଜ, ଅଭିମନ୍ୟୁ, ଦୀନକୃଷ୍ଣ) ସେ ବିଧିବଦ୍ଧଭାବେ ପୋଥି-ମାନଙ୍କରୁ ଅଧ୍ୟୟନ କରୁଥିଲେ । ସେମାନଙ୍କର ସଙ୍ଗୀତ ଶୈଳୀ ଦ୍ୱାରା ସେ ଖୁବ୍ ପ୍ରଭାବିତ ହୋଇଯାଇଥିଲେ । ବନ୍ଧୁ ରସିକନନ୍ଦ ଦେବଙ୍କ ସଙ୍ଗୀତ ଆସରରେ ବେଳେ ବେଳେ କଣ୍ଠସ୍ଥ କରିଥିବା ଓଡ଼ିଆ ଛାନ୍ଦକୁ ସ୍ୱର ଦେଇ ଗାଉଥିଲେ । କେତେବେଳେ କେତେକ ସଂସ୍କୃତ ଶ୍ଳୋକମାନଙ୍କର ବଙ୍ଗଳା ଅନୁବାଦ କରି ଗୀତ ବୋଲୁଥିଲେ । ଏଇ ସଙ୍ଗୀତ ଆସର ଓ ଛାନ୍ଦ-ସାହିତ୍ୟର ମାଧୁର୍ଯ୍ୟ ତାଙ୍କ ମନକୁ ରସସିକ୍ତ କରି ତୋଳିଥିଲା; କବି-କଣ୍ଠର ଗୁଞ୍ଜରଣ ଚେତନ ଅଚେତନରେ ଗୁମୁରି ଉଠୁଥିଲା ।

ପରିବେଶ ଓ ସାରସ୍ୱତ ସଙ୍ଗ ତାଙ୍କମନକୁ ସୃଷ୍ଟି ପ୍ରାଣ କରି ଗଢ଼ିବାରେ ଏକାନ୍ତ ଦାୟୀ । ବନ୍ଧୁ ବୈକୁଣ୍ଠନାଥ ଦେ, ରାଜ ନାରାୟଣ ଦାସ, ଦାମୋଦର ଦାସ, ଜୟକୃଷ୍ଣ ଚୌଧୁରୀ, ଗୋବିନ୍ଦ ଚନ୍ଦ୍ର ପଟ୍ଟନାୟକ ଏବଂ ସାରସ୍ୱତ ସେନାପତି ଫକୀର ମୋହନ—ପ୍ରଭୃତିଙ୍କ ମେଳରେ ରାଧାନାଥଙ୍କର ପ୍ରତିଭାର ସହଜ ଆତ୍ମ ପରିସ୍ଫୁରଣର ଉତ୍ତେଜନା ଲାଭ କରିଥିଲେ ।

### କବିପ୍ରତିଭାର ଉନ୍ମେଷ ଓ ଉତ୍ତରଣ :

ରାଧାନାଥ ଅନୁଭବ କରୁଥିଲେ ଯେ, 'ସାହିତ୍ୟ ଚର୍ଚ୍ଚା ଗୋଟିଏ ଜୀବନବ୍ୟାପୀ ବ୍ରତ । ପୁଣି ସାହିତ୍ୟାନୁରାଗ ଗୋଟିଏ ଈଶ୍ୱରଦତ୍ତ ପଦାର୍ଥ । ଲକ୍ଷେ ବ୍ୟକ୍ତିଙ୍କ ମଧ୍ୟରେ ଜଣେ ଦୁଇଜଣ ସାହିତ୍ୟାନୁରାଗୀ ହୁଅନ୍ତି ।' ଯଦିଓ ଏଇ ବିଶ୍ୱାସ ପରିଣତ ବୟସରେ କବି-ମନକୁ ଛୁଇଁଥିଲା, ତଥାପି ଏହାର ଉନ୍ମୀଳନ କବି ସାଧନାର ସୋପାନରୁ ହିଁ ଲାଭ କରିଥିଲେ । ତପସ୍ୟାର ସାଧନବେଦୀରେ ଥାଇ କବି ଅନୁଭବ କଲେ ଯେ, ସର୍ଜନଶକ୍ତି ହେଉଛି ଈଶ୍ୱରଦତ୍ତ । ଏହାର ଉନ୍ମେଷ ଓ

ଉଦ୍ଭବନେ—ପ୍ରତି ଛନ୍ଦରେ ସେଇ ଐଶ୍ୱରିକ ଶକ୍ତିର ସ୍ପର୍ଶ । ତେବେ କୃପାଥିଲେ ପ୍ରତିଭାର ସ୍ଫୁରଣ ଲାଗି ଉଦ୍ୟମ ବା ଆୟୋଜନର ଆବଶ୍ୟକତା ପଡ଼େ ନାହିଁ । ସ୍ୱତଃ ଭାବର ଉଦଗମନ ଘଟେ, ତାହାର ଗତି ନିର୍ବାଧ ଓ ନିରଙ୍କୁଶ ହୋଇଯାଏ ।

ରାଧାନାଥଙ୍କର କବି-ଜୀବନ ଏଇ ସ୍ୱଭାବ-ସତ୍ୟର ଅନୁକାଶୀ ହୋଇ-ଥିଲା । କବିଙ୍କୁ ଯେତେବେଳେ ବୟସ ଅଠର, ସେତେବେଳେ ସେ କବି-କୃତିର ପରିଚୟ ଦିଅନ୍ତି ବଂଗଳା ଭାଷାରେ ପ୍ରଥମ କବିତା ଗ୍ରନ୍ଥ, 'କବିତାବଲୀ—୧ମ ପ୍ରକାଶ କରି ( ୧୮୭୮ ) । ଅବଶ୍ୟ ଏଥିପୂର୍ବରୁ ତାଙ୍କ ଲିଖିତ କବିତାରୁ କିଛି ବଂଗଳା ପତ୍ରିକା 'ନବ୍ୟଭାରତ'ରେ ସ୍ଥାନ ପାଇଥିଲା । ପରେ ପରେ ଆଉ କେତେକ ବଂଗଳା କବିତା ଭୂଦେବ ବାବୁଙ୍କ ସମ୍ପାଦନାରେ ପ୍ରକାଶିତ ଏଡୁକେଶନ ଗେଜେଟ ( ପ୍ରଥମ ପ୍ରକାଶ ୧୮୭୮ )ରେ ସ୍ଥାନ ପାଇଥିଲା । ବଙ୍ଗଳା କବିତାବଲୀର ପ୍ରଥମ ଭାଗ, କବିଙ୍କର ବନ୍ଧୁ ଦାମୋଦର ପ୍ରସାଦ ଦାସଙ୍କର ପୃଷ୍ଠପୋଷକତାରେ ପ୍ରକାଶ ପାଇଥିଲା ଏବଂ ଦ୍ୱିତୀୟ ଭାଗଟି ରାଜା ବୈକୁଣ୍ଠନାଥ ଦେଙ୍କ ଅର୍ଥ ବ୍ୟୟରୁ ୧୮୭୦ ମସିହାରେ ପ୍ରକାଶିତ ହୋଇଥିଲା ।

ସୁତରାଂ ପ୍ରତିଭାର ଉଦୟ ଲଗ୍ନରୁ ରାଧାନାଥ କବି-କଳାର ପରିଚୟ ଦେଇଥିଲେ । ମାତ୍ର ତାହା ବଙ୍ଗଳା ଭାଷା ଓ ସାହିତ୍ୟ କ୍ଷେତ୍ରକୁ ସ୍ପର୍ଶ କରିଥିଲା । ଏ ମାଟିର ସନ୍ତାନ, ମାଟିର ଭାଷାରେ ସାରସ୍ୱତ ସେବା କରିବାର ପ୍ରଯତ୍ନ ତତ୍ପରତା ଦେଖାଇନଥିଲା । ହୋଇପାରେ, ସେପରି ଅନୁରାଗ ପାଇଁ ଅନୁକୂଳ ପ୍ରରୋଚନା କିମ୍ବା ରଚନା ସ୍ପୃହାର ଜାଗରଣ ସେ ଲାଭ କରି ନ ଥିଲେ । ଜଣେ ତରୁଣ ବଙ୍ଗଳା କବିରୂପେ ରାଧାନାଥ, ଆପଣା କବି-ଶକ୍ତିର ପ୍ରତିଶ୍ରୁତି ଚହଳେଇ ଦେଲା ବେଳକୁ ଓଡ଼ିଶା ଏଣେ ଏକ ସାରସ୍ୱତ ସଙ୍କଟରେ ସମ୍ମୁଖୀନ ହୋଇଥାଏ । ସେତେବେଳେ ବଙ୍ଗାଳୀ କର୍ମଚାରୀମାନଙ୍କ ପ୍ରଭୃତିଦ୍ୱାରା ଓଡ଼ିଆ ଭାଷାର ସ୍ୱାତନ୍ତ୍ର୍ୟ ଲୋପ କରିଦେବାର ପ୍ରଯତ୍ନ ଚାଲିଥାଏ । ପୂର୍ବରୁ ନଅଙ୍କ ଦୁର୍ଭିକ୍ଷ ( ୧୮୬୬ ) ମଧ୍ୟ ଏ ଦେଶର ଅର୍ଥନୀତିକ ମେରୁଦଣ୍ଡକୁ ଭାଙ୍ଗି ଦେଇଥାଏ । ଦୁଇଟି ସଙ୍କଟରୁ ଆତ୍ମରକ୍ଷା କରି ଜାତିର ପୁନର୍ଗଠନ ପାଇଁ ଓଡ଼ିଆ-ପ୍ରାଣ ବ୍ୟକ୍ତିଗଣ ସେତେବେଳେ ଉଦ୍ୟମ କରୁଥାନ୍ତି । ୧୮୬୯ ମସିହାରୁ ଆରମ୍ଭ ହୋଇଥିବା ଓଡ଼ିଆ ଭାଷା ବିରୋଧୀ ମନୋବୃତ୍ତି ଗୁରୁତର ଆକାର ଧାରଣ କଲା ବାଲେଶ୍ୱର ଜିଲ୍ଲା ସ୍କୁଲର ପଣ୍ଡିତ କାନ୍ତିଚନ୍ଦ୍ର ଭଟ୍ଟାଚାର୍ଯ୍ୟଙ୍କର 'ଓଡ଼ିଆ ସ୍ୱତନ୍ତ୍ର ଭାଷା ନୟ ( ନହେଁ )' ପୁସ୍ତିକା ପ୍ରକାଶ ( ୧୮୭୦ ) ଉତ୍ତାରୁ । ଅବଶ୍ୟ ପୂର୍ବରୁ ଫକୀର ମୋହନ 'ବୋଧ

ଦାୟିନୀ ଓ ବାଲେଶ୍ୱର ସମ୍ବାଦ ବାହିକା ( ୧୮୬୮ ) ପତ୍ରିକା ଜରିଆରେ ଏବଂ ଗୌରୀଶଙ୍କର ରାୟ ଉତ୍କଳ ଦୀପିକା [ ୧୮୬୬ ) ମାଧ୍ୟମରେ ଏହି ଭାଷା-ବିଦ୍ୱେଷୀ ଆନ୍ଦୋଳନର ମୁକାବିଲା କରୁଥିଲେ । ମାଜିଷ୍ଟ୍ରେଟ ଜନ ବୀମସ୍ ୧୮୭୦ ମସିହା ମେ ୪ ତାରିଖ ଦିନ ଏସିଆଟିକ ସୋସାଇଟିରେ ଏକ ପ୍ରବନ୍ଧ ପାଠ କରି ଓଡ଼ିଆ ଭାଷାର ସ୍ୱାତନ୍ତ୍ର୍ୟ ସଂକ୍ରାନ୍ତ ଅକାଟ୍ୟ ଯୁକ୍ତି ସମୂହ ଉପସ୍ଥାପିତ କରିଥିଲେ ଏବଂ କାନ୍ତି-ଚନ୍ଦ୍ରଙ୍କର ମତ ଯେ ପକ୍ଷପାତିତା ଦୋଷଦୁଷ୍ଟ, ତାହା ପ୍ରମାଣିତ ହୋଇ ଯାଇଥିଲା, ଏବଂ ଓଡ଼ିଆ ଭାଷା, ପରେ ପରେ ସରକାରୀ ସ୍ତରରେ ଆପଣାର ସ୍ୱତନ୍ତ୍ର ଭୂମିକା ଲାଭ କରିଥିଲା ।

ଅତଏବ, ଏହି ପରିପ୍ରେକ୍ଷୀରୁ ଉପଲବ୍ଧି କଲେ ଯେ, ୧୮୬୬—୧୮୭୦ ଓଡ଼ିଶା ଯେତେବେଳେ ଖାଦ୍ୟ ସଂକଟ ବା ଜୀବନ ସଂକଟ, ଭାଷା-ସଂକଟ ଏବଂ ଲେଖା ଓ ଲେଖକ ସଙ୍କଟ ମଧ୍ୟରେ ମୁମୂର୍ଷୁ-ପ୍ରାଣ, ଯେତେବେଳେ ଓଡ଼ିଶା ଭୂଇଁର ସନ୍ତାନ ରାଧାନାଥଙ୍କର ଆଦର୍ଶ ହୁଏ ବଙ୍ଗଳା କବି ରୂପେ । ଅବଶ୍ୟ ବଙ୍ଗଳା ତାଙ୍କର ମା-ଋଣର ଭାଷା, କିନ୍ତୁ ଓଡ଼ିଶା ଯେ ତାଙ୍କର ମାତୃଭୂମି । କିଏ ହେବ ପ୍ରାଣପ୍ରିୟା ? ଏପରି ଏକ ସମସ୍ୟା-ସଙ୍କୁଳ ଜିଜ୍ଞାସା ହୁଏତ କବିଙ୍କର ମନକୁ ଘା'ଘ କରି ନଥିଲା । ମାତ୍ର ପରିସ୍ଥିତିର ପ୍ରେରଣାରେ ସ୍ୱାଭାବିକ ଭାବେ ସେ ପ୍ରଥମରୁ ବଙ୍ଗଳା ପ୍ରତି ଅନୁରାଗ ପ୍ରକାଶ କରିଥିଲେ । ସେହି ପରିସ୍ଥିତିର ଦାବିରୁ ପୁଣି ସେ ଓଡ଼ିଆ ସାହିତ୍ୟ ପ୍ରତି ମନ ବଳାଇଲେ । ପୂର୍ବରୁ କହିଛି, କଥିତ ସମୟରେ ବାଲେଶ୍ୱରରେ ସାହିତ୍ୟ ସର୍ଜନା ଓ ସଙ୍ଗଠନ କ୍ଷେତ୍ରରେ କେବଳ ମାତ୍ର ଫକୀରମୋହନ ହିଁ ସକ୍ରିୟ । 'ବୋଧଦାୟିନୀ ଓ ସମ୍ବାଦ ବାହିକା' ହେଉଛି ତତ୍କାଳୀନ ପତ୍ରିକା । ଲେଖକଙ୍କର ସଂଖ୍ୟା ଖୁବ୍ ଊଣା । ଓଡ଼ିଆ ହିତୈଷୀ ମାଜିଷ୍ଟ୍ରେଟ ବୀମସ ସାହେବଙ୍କ ନଜରକୁ ଏ ସବୁ ଆସୁଥାଏ । ରାଧାନାଥଙ୍କ ସଙ୍ଗେ ପ୍ରସଙ୍ଗକ୍ରମେ ସେ ଦିନେ ସାହିତ୍ୟ ଲେଖାଲେଖି ନେଇ କଥାଭାଷା ହେଉଥାନ୍ତି । ରାଧାନାଥଙ୍କୁ ଚେତେଇ ଦେଇ କହିଲେ, 'ଦେଖ ! ଫକୀର ମୋହନ ଏକାକୀ ଲେଖୁଛି । ଆଉ ଜଣେ କେହି ଲେଖକ ବାହାରିଲେ ନାହିଁ । ତୁମ୍ଭେମାନେ ସବୁ କେହି ଲେଖୁ ନାହଁ, ବଡ ଲଜ୍ଜାର କଥା ।'

ବୀମସ୍ ସାହେବଙ୍କର ଏହି କେଇ ପଦ କଥା ରାଧାନାଥଙ୍କ ମନକୁ ବେଶ୍ ଛୁଇଁଲା । ସେ ସାନ୍ଧ୍ୟ ଭ୍ରମଣ ବେଳେ ଫକୀର ମୋହନଙ୍କୁ ପ୍ରସଙ୍ଗଟି କହିଲେ ଏବଂ ଓଡ଼ିଆରେ ଲେଖାଲେଖି କରିବା ପାଇଁ ଯତ୍ନ କରିବେ ବୋଲି ଧ୍ରତଙ୍କ ପୋଷିଲେ । ତାଙ୍କ ମନରେ ଲାଗି ରହିଲା ଗୋଟିଏ କଥା—ଫକୀର ମୋହନଙ୍କର ପରିଚାଳନାରେ ନୂଆ ଲେଖକ ଉଭୁରୁ ନାହାଁନ୍ତି, ଦେଖାଯାଉ କିପରି ଲେଖକଙ୍କର ସଂଖ୍ୟା ବଢ଼ିବ

ନାହିଁ । ଶାମସ ସାହେବଙ୍କର ଧାରଣା ବଦଳାଇ ଦେବା ପାଇଁ ସେ ମନେ ମନେ ସ୍ଥିର କଲେ । ଏପରି ଇଚ୍ଛାକୁ ଅଗ୍ରାଧିକାର ଦେଇ ସେ ଆପଣାର ବନ୍ଧୁ ରାଜା ବୈକୁଣ୍ଠନାଥ ଦେଙ୍କ ସହଯୋଗରେ 'ଉତ୍କଳ ଦର୍ପଣ' ନାମକ ଏକ ପତ୍ରିକା 'ଦେଜ୍ ଉତ୍କଳ ପ୍ରେସ'ରୁ ପ୍ରକାଶ କଲେ (୧୮୭୩ ଜାନୁଆରୀ) । ସେ ଏଥିରେ ଲେଖା-ଲେଖି କଲେ ଏବଂ ନୂଆ ଲେଖକ ଶ୍ରେଣୀ ମଧ୍ୟ ଏହି ପତ୍ରିକା ଜରିଆରେ ପ୍ରଚାର କଲେ । ପତ୍ରିକାଟି ୧୮୭୩ ରୁ ୧୮୮୪ ପର୍ଯ୍ୟନ୍ତ ପ୍ରକାଶ ପାଉଥିଲା । ଇନ୍ଦ୍ରବଲ୍ଲଭ ଭଟ୍ଟାଚାର୍ଯ୍ୟ କିଛି କାଳ ଏହାର ସମ୍ପାଦକ ଥିଲେ । ୧୮୮୪ ମସିହାରେ ଜଗବନ୍ଧୁ ବାନାର୍ଜି ନାମକ ଜଣେ ଲେଖକ ସରକାରଙ୍କୁ ଲକ୍ଷ୍ୟ କରି ଏକ ସମାଲୋଚନା-ମୂଳକ ଲେଖା ଏଥିରେ ପ୍ରକାଶ କରିବାରୁ, ପତ୍ରିକାଟି ସରକାରୀ କଟକଣା ହେତୁ ବନ୍ଦ ହୋଇଗଲା ।

ଏହି ପତ୍ରିକାରେ ରାଧାନାଥ ଓ ମଧୁସୂଦନଙ୍କର ପ୍ରବନ୍ଧ-କବିତା ସମେତ ଅନ୍ୟାନ୍ୟ ଲେଖକମାନଙ୍କର ଲେଖା ପ୍ରକାଶ ପାଉଥିଲା । ଏଥିରେ ( ଉତ୍କଳ ଦର୍ପଣ—୧୮୭୩-୭୪ ସଂଖ୍ୟା ) ରାଧାନାଥଙ୍କର ବାଂଲା, ମେଘଦୂତ, ଦେଶାଟନ ଓ ଇଟାଲୀୟ ଯୁବା, ପବନ ପ୍ରଭୃତି ରଚନା ପ୍ରକାଶ ପାଇଥିଲା । ଏଗୁଡ଼ିକ ମଧ୍ୟରୁ ବିବେକୀ ପ୍ରବନ୍ଧ ଏବଂ ଇଟାଲୀୟ ଯୁବା ଗଳ୍ପଧର୍ମୀ ଗଦ୍ୟ ରଚନା । ଦୁଇଟିକୁ ବାଦ ଦେଲେ ଅବଶିଷ୍ଟ ଦୁଇଟି ରଚନା ହେଉଛି କବିତା । ମେଘଦୂତ— ଏକ ଅନୁବାଦ କାବ୍ୟ, କିନ୍ତୁ ପବନ ହେଉଛି ଏକ ମୌଳିକ କବିତା ।

କବି-ପୁରୁଷର ଆତ୍ମପ୍ରକାଶ ଧାରାଟିକୁ ଯଦି ବିଶ୍ଳେଷଣ କରାଯାଏ, ଜଣାଯିବ ଯେ, ପ୍ରବନ୍ଧ ରଚନାରୁ ରାଧାନାଥଙ୍କର ସାରସ୍ୱତ ଜୀବନର ଆରମ୍ଭ, କବିତା ସର୍ଜନାରେ ତାହାର ପ୍ରସାରଣ ଓ ପରିଣତି । ଓଡ଼ିଆ କବି ରାଧାନାଥଙ୍କ ଚରିତର ଏହାହିଁ ହେଉଛି ଉଦ୍‌ବର୍ତ୍ତନ କ୍ରମ, ମାତ୍ର ବଙ୍ଗଳା କବି ରାଧାନାଥଙ୍କର ଉଦ୍‌ଯାପନ ଓ ସ୍ୱେଚ୍ଛାକୃତ ଅପସାରଣ ଉଭୟତଃ ଏକ କବିତା ଦେଇ । ଏହି ଦୁଇ ଭାଷାରେ ଲିଖିତ କବିଙ୍କର କୃତଚସ୍ୱକୁ ଦେଖିଲେ ଜାଣି ଯେ କାବ୍ୟ-କବିତା ହେଉଛି ତନ୍ମଧ୍ୟରୁ ସଂଖ୍ୟାରେ ଅଧିକ ଏବଂ ତାହାହିଁ ରାଧାନାଥଙ୍କ ସାରସ୍ୱତ ବ୍ୟକ୍ତିତ୍ୱର ମୂଳ ନିର୍ଦ୍ଧାରକ ସୃଷ୍ଟି । ତଥାପି ରାଧାନାଥ ମନର କଳନା ପାଇଁ କବିତା ମୂଳ ଉପାଦାନ ହେଲେବି ପ୍ରବନ୍ଧଗୁଡ଼ିକ ଅଲୋଡ଼ା ବୋଧ ହୁଅନ୍ତି ନାହିଁ । ରାଧାନାଥଙ୍କର ସ୍ରଷ୍ଟା-ମନର ପ୍ରଥମ ସ୍ୱାକ୍ଷର ଯେଉଁ ପ୍ରବନ୍ଧ, ତାହାର ଅନ୍ତରାଳରେ ଜୀବ କେନ୍ଦ୍ରୀ ମତବାଦର ସ୍ଥିତି ଅତ୍ୟନ୍ତ ଦୃଢ଼ । ଲେଖକଙ୍କର ଦର୍ଶନ ହେଲା, ମନୁଷ୍ୟ ଜୀବନ ହେଉଛି ଦୁଃଖର ଆଳୟ । ଆପଦ ବିପଦ ହେଉଛି ଜୀବନର ଶିକ୍ଷକ ଓ ଉପକାରକ । ଅନୁଭୂତି ହେଉଛି ସଂସାର ଅତିକ୍ରମଣର ପ୍ରଧାନ ଅବଲମ୍ବନ ।

ସୂର୍ଯ୍ୟୋଦୟରୁ ଉପର ଭାବ-ସ୍ୱର ଜଣାଗଲା ପରି, ରାଧାନାଥଙ୍କର ପ୍ରଥମ ରଚନାରୁ ଯେଉଁ ଭାବପ୍ରଧାନ ଆତ୍ମମୁଖୀର ପରିଚୟ ମିଳଇ ତାହା ସମଗ୍ର କବି-ସତ୍ତାକୁ ଆବୋରି ରହିଥିଲା । କବି ଆପଣା ଭାଷାରେ ଏହରେ ପ୍ରକାଶ କରିଥିଲେ, "ଭାବପ୍ରଧାନ ପ୍ରକୃତିରେ ସୁଖ ଏବଂ ଦୁଃଖର ଅନୁଭବ ଅତି ତୀବ୍ର । ସଂସାରରେ ସୁଖ ଅପେକ୍ଷା ଦୁଃଖର ପରିମାଣ ଅନେକ ଅଧିକ ସୁତରାଂ ଯେଉଁମାନଙ୍କର ପ୍ରକୃତି ଭାବ-ପ୍ରଧାନ, ସେମାନେ ପ୍ରାୟଶଃ ଦୁଃଖୀ । ଆପଣଙ୍କର ଅବସ୍ଥା ମୁଁ ନିଜେ ହୃଦୟର ଅବସ୍ଥା ଦୃଷ୍ଟିରେ କଅମ୍ଭିତ ବୁଝି ପାରୁଅଛି ଦାର୍ଶନିକତାର ଆଶ୍ରୟ ଗ୍ରହଣ ବ୍ୟତୀତ ଶାନ୍ତି ଲାଭର କୌଣସି ଆଶା ନାହିଁ ।" †

ଏହି ଚେତନା କବିଙ୍କର ସମଗ୍ର କାବ୍ୟ-ସତ୍ତାକୁ ପ୍ରାୟ ଉଦ୍ବୁଦ୍ଧିତ କରୁଥିଲା । କିନ୍ତୁ ଏପରି ଧାରଣାର ଆଦ୍ୟ ପ୍ରତିଫଳନ ଦେଖା ଦେଇଥିଲା ପ୍ରଥମ ଓଡ଼ିଆ ରଚନା 'ବିବେକୀ' ପ୍ରବନ୍ଧରେ । ଅବଶ୍ୟ ବଙ୍ଗଳା କବିତାବଳୀ ପୃଷ୍ଠାରେ ପ୍ରଥମରେ ଯେ ସେ ଭାବ-ସର୍ବସ୍ୱ କବି ରୂପେ ଦେଖା ଦେଇ ନଥିଲେ ତା ନୁହେଁ; ବଂଗଳାରେ ଯେମିତି ଓଡ଼ିଆରେ ସେମିତି, କବି-ରୂପର ଆଦ୍ୟ ଆଭାସ ଫୁଟି ଉଠିଥିଲା ।

କବି ବଙ୍ଗଳା ଏବଂ ଓଡ଼ିଆ ଭାଷା ମଧ୍ୟରେ କୌଣସି ପକ୍ଷପାତିତା ପ୍ରାୟ ଆଚରଣ କରୁ ନଥିଲେ । ଗଙ୍ଗାଧରଙ୍କୁ ଲିଖିତ ଗୋଟିଏ ପତ୍ରରେ ସେ ସ୍ୱୀକାର କରିଛନ୍ତି, "ମୋହୋ ପକ୍ଷରେ ଓଡ଼ିଆ ଏବଂ ବଙ୍ଗଳା ଉଭୟ ଭାଷା ସମାନ । ବଙ୍ଗଳାରେ ମୋହର ରଚନା ବଙ୍କିମ, ଭୂଦେବ, ନବୀନ ଚନ୍ଦ୍ର, ରାଜକୃଷ୍ଣ ପ୍ରଭୃତି ମହାତ୍ମାଙ୍କର ପ୍ରଶଂସା ଏବଂ ଆଶୀର୍ବାଦ ଆକର୍ଷଣ କରିଥିଲା । ବଙ୍ଗରେ ମୁଁ ପାଠ୍ୟ ପୁସ୍ତକ ଲେଖିଥିଲେ ମୋହର ଆର୍ଥିକ ଅବସ୍ଥା ଭିନ୍ନ ପ୍ରକାର ହୋଇଥାନ୍ତା । ଓଡ଼ିଶାରେ ସାହିତ୍ୟର ଗ୍ରାହକ ଜଣେ ସୁଦ୍ଧା ସୁଲଭ ନୁହେଁ । ଏହା ଉପରେ ପୁଣି ଯେଉଁମାନେ ଉଚ୍ଚ ସାହିତ୍ୟର ଚର୍ଚ୍ଚା ଆଦୌ କରିନାହାନ୍ତି ଏବଂ ଆଦୌ ଲେଖି ଜାଣନ୍ତି ନାହିଁ, ଏପରି ଲୋକେ କବି ଏବଂ ସମାଲୋଚକ ବେଶରେ ସାହିତ୍ୟର ରଙ୍ଗ-ଭୂମିରେ ଅଭିନୟ ଆରମ୍ଭ କରି ଅଛନ୍ତି । ଅଧିକାଂଶ ଲୋକେ ମୂର୍ଖ, ସୁତରାଂ ଏଭଳି ସାହିତ୍ୟ-ଧ୍ୱଜଙ୍କର ପ୍ରସାର ବଢ଼ୁଅଛି । ଏପରି ଦେଶ ଏବଂ ଏପରି ସମୟରେ ମୌନାବଲମ୍ବନ ଶ୍ରେୟଃ ।"*

---

† ଡକ୍ଟର ଦେବୀପ୍ରସନ୍ନ ପଟ୍ଟନାୟକ — କବିଲିପି ପୃ ୯୬, ବିଶ୍ୱଭାରତୀ-୧୯୫୭
(ଗଙ୍ଗାଧର ମେହେରଙ୍କୁ ଲିଖିତ ରାଧାନାଥଙ୍କର ପତ୍ର ତା ୧-୮-୧୯୦୬)

* ତତ୍ରୈବ ପୃଷ୍ଠା ୮୬

ଏହି ଉକ୍ତିଟିକୁ ତନଖି ଦେଖିଲେ ସ୍ପଷ୍ଟ ବୁଝି ହୁଏ ଯେ କୌଣସି ଆର୍ଥିକ ସମ୍ପର୍କିର ଅଭିଳାଷ ନେଇ କିମ୍ବା କାବ୍ୟ-ଗ୍ରାହକତାର ଉର୍ବର ସମ୍ଭାବନାକୁ ଦୃଷ୍ଟି ଦେଇ ରାଧାନାଥ ଓଡ଼ିଆ ଭାଷାରେ ସାହିତ୍ୟ-ସାଧନା କରି ନଥିଲେ । ତାଙ୍କ ସାହିତ୍ୟ-ସାଧନାର ଅନୁପ୍ରେରକ ଥିଲା ଦେଶମାଟିର ଆକର୍ଷଣ ଏବଂ ଏକ ଜାତୀୟମନା ଭୂତବୋଧ ।

ଏଇ ଜାତୀୟ-ଭାବ ଶିଳାପର ଭାବ-ମୂର୍ତ୍ତି ତାଙ୍କର ଚେତନା-ଭୂମିରେ ଉଦିତ ହୋଇଥିଲା ବୋଲି ସେ ବଙ୍ଗଳାରେ ଉପେନ୍ଦ୍ର ଭଞ୍ଜ, ଦୀନକୃଷ୍ଣ, ଅଭିମନ୍ୟୁ ଇତ୍ୟାଦିଙ୍କ ସମ୍ପର୍କରେ ପ୍ରଶସ୍ତିମୂଳକ କବିତା ରଚନା କରି ଦେଶ ବାହାରର ଲୋକଙ୍କୁ ଓଡ଼ିଆ କବି-କୃତିର ପରିଚୟ ଦେଇଥିଲେ; ଯେଉଁ କବିତାଗୁଡ଼ିକ କି ବଙ୍ଗଳା କବିତାବଳୀ-୨ୟ ଭାଗରେ ମୁଦ୍ରିତ ହୋଇଥିଲା ।

ସୁତରାଂ ବଙ୍ଗଳା ଏବଂ ଓଡ଼ିଆ ଭାଷାର ରଚନାବଳୀକୁ ବିଚାରକୁ ନେଇ କୁହାଯାଇପାରେ ଯେ ରାଧାନାଥଙ୍କର ସାରସ୍ୱତ ଜୀବନ ୧୮୬୮ ମସିହା ଠାରୁ ୧୯୦୮ ମସିହା ପର୍ଯ୍ୟନ୍ତ ପ୍ରସାରିତ । ଆମ ସାହିତ୍ୟରେ ତାଙ୍କର ଆବିର୍ଭାବ ୧୮୭୩ ମସିହାରୁ ଏବଂ ଗତିଶୀଳ ୧୯୦୮ ପର୍ଯ୍ୟନ୍ତ । ଏଇ ପଇଁତିରିଶ ବର୍ଷର ସାଧନାକାଳ ଭିତରେ ରାଧାନାଥଙ୍କର କବି-ଜୀବନ ଆରୋହ-ଅବରୋହର ସୁଖ-ଦୁଃଖଦାୟୀ ପରିଣାମ ଭୋଗ କରିଛି, ସିଦ୍ଧି ଓ ବିତ୍ୟାତର ଅଭିଜ୍ଞାନ ବରଣ କରିଛି । ପ୍ରତିଭାର ଯାତ୍ରା ପଥ କେଉଁଠି ହୋଇଛି ଜୟମାଲ୍ୟ ଭୂଷିତ କେଉଁଠି ବା ନନ୍ଦିତ ।

ସୋପାନ ପରେ ସୋପାନ ପ୍ରତିଭାର ରଥଚକ ଗଡ଼ିଗଲାବେଳେ ବହୁ ଅନୁଗାମୀଙ୍କର ପ୍ରଶସ୍ତି ତାଙ୍କୁ ଉନ୍ମାଦିତ କରିଛି, ପୁଣି ବହୁ ବିରୋଧୀ-ଶକ୍ତିର ଆକ୍ରମଣ ତାଙ୍କୁ ବିଚଳିତ କରିଛି । ଯାତନା ଓ ଜୟମାଲ୍ୟ—ସବୁକିଛି ଏକାକାର ହୋଇ ଯାଇଛନ୍ତି । ପ୍ରତିଭା କଷଣ ପରୀ ନୁହେଁ ଅକାରଣ ! କବିଙ୍କର ଅକ୍ଷର କୀର୍ତ୍ତି ଯେଉଁଗୁଡ଼ିକ ଜାତ ହୋଇଛି କାନ୍ତିବାନ । ପ୍ରତିଭାର ସେଇ କୀର୍ତ୍ତିମୟ ଯାତ୍ରାପଥଟିକୁ ନିମ୍ନମତେ ଚିହ୍ନିତ କରାଯାଇପାରେ ।

ଏଥିରୁ ହୁଏତ ସୂଚିତ ହେବ, କବି-ମନ କେଉଁ ପରିସ୍ଥିତି ଭିତରେ ଏବଂ ସମୟର କେଉଁ ସ୍ତରରେ ଆପଣାର ସୃଷ୍ଟିକର୍ମକୁ ସମ୍ପାଦିତ କରିଥିଲେ । ଏହା ସମକାଳୀନ ସାରସ୍ୱତ ଉଦ୍ୟମର ଅନୁଗାମୀ ହୋଇଥିଲା କି କିଛି ନୂତନତା ସଂଯୋଗର ସଂକେତ ବହନ କରିଥିଲା—ତାହା ମଧ୍ୟ ଏହି କବି ପ୍ରତିଭା-ଉନ୍ମେଷ-ଉତ୍ତରଣ ଧାରାରୁ ଅବଧାରଣା କରିଦେବ ।

୧୯୦୮
↑
୧୮୯୫
ପ୍ରତିଭାର ପ୍ରଶାନ୍ତି
ଓ
ଅବରୋହ

---

୧୮୯୪
↑
୧୮୮୫
ପ୍ରତିଭାର ପ୍ରକର୍ଷ
ଓ
ପ୍ରତିଷ୍ଠା

---

୧୮୮୪
↑
୧୮୭୬
ପ୍ରତିଭାର ପ୍ରସାରଣ

---

୧୮୭୫
↑
୧୮୭୩
ପ୍ରତିଭାର ପ୍ରତିଶ୍ରୁତି

---

୧୮୭୨
↑
୧୮୬୮
ପ୍ରତିଭାର ପ୍ରସ୍ତୁତି

---

**କବି ପ୍ରତିଭା : ଉନ୍ମେଷ ଓ ଉତ୍ତରଣ**

ରାଧାନାଥଙ୍କ ଜୀବନକାଳ ସମୁଦାୟ ଷାଠିଏ ବର୍ଷ । କବି-ପ୍ରତିଭାର ପ୍ରସ୍ତୁତି ଆରମ୍ଭ ହୁଏ କୋଡ଼ିଏ ବର୍ଷ ବୟସରେ ଏବଂ ଏହା ଚାଳିଶ ବର୍ଷକାଳ ଉତ୍‌ଥାନ ପତନ ଭିତରେ ଗତିଶୀଳ ହୋଇଥିବା ଏଥିରୁ ସୂଚିତ ।

ଓଡ଼ିଶା କାବ୍ୟ-ଭୂମି । ଏଇ ମାଟିର ମହୀରେ କବିତାରେ କଥା କୁହେ । ଚେତନାରେ ହେଉ ବା ଅଚେତନରେ ହେଉ, ତୁଣ୍ଡ ଫିଟିଲେ ସ୍ୱତଃସ୍ଫୂର୍ତ୍ତ କବିତାର ଉଚ୍ଚାରଣ । ହଳିଆ ତୁଣ୍ଡରେ ଗୀତ ଓ ପଣ୍ଡିତ ମୁହଁରେ ଶ୍ଳୋକ; ଗାଁ ଭୂଆଷୁଣୀ ପେଡ଼ିରେ ସାଇତା କେତେ ପ୍ରବଚନ । ସବୁଠି ଏଇ କବିତା, ଖାଲି କବିତା । ଓଡ଼ିଆ କବି କବିତା ଲେଖିଲେଖି ଦର୍ଶନର ଉଇଁକା ଛୁଏଁ କିମ୍ବା ପ୍ରେମର ସରହଦରେ ବିଚରଣ କରେ । ଦର୍ଶନର ଗାମ୍ଭୀର୍ଯ୍ୟ ପାଖେପାଖେ ପ୍ରେମର ଫୁଲବନକୁ ଠାବ ଦେଇଥାଏ ଓଡ଼ିଆ କବି । ମନବୋଧ ଚଉତିଶା କିମ୍ବା ଭାଗବତ ଲେଖିଲେଖି ଏଇ କବି ତ ପୁଣି ଲାବଣ୍ୟବତୀ ଯୁବତୀ ଲାଗି କେଳିପୁର ରଚନା କରେ !

ପଦ୍ୟ କଥାରେ କହିଲେ, ଆମ କବିଙ୍କର ସ୍ନାୟୁରେ ସ୍ପନ୍ଦନ ଯେତେ, କବିତାର ଗୁଞ୍ଜରଣ ସେତେ । ଦର୍ଶନ ଓ ପ୍ରେମ—ଏଇ ଦୁଇ ଉଇଁକା ଭିତରେ ଚଲାବୁଲା କରୁଁ କରୁଁ କବିମାନେ ଆହୁ କେତେ ଅପହଞ୍ଚା ଭାବ-ପୀଠରେ ପହଞ୍ଚି ଯାଆନ୍ତି ତାର ହିସାବ ନାହିଁ । ତେଣୁ କୁହାଯାଇପାରେ, ଓଡ଼ିଆ କବିର କାବ୍ୟଦୃଷ୍ଟି ବହୁମୁଖୀ; ମାତ୍ର ତତ୍ତ୍ୱ-ଗମ୍ଭୀର ଓ ଆବେଗ-ତରଳ ।

ଆମ ସଂସ୍କୃତି ଗଢ଼ିଛି ଆମର ଏଇ ମନ । ଆମର ମନ ହେଉଛି ଭାବଭୁକ୍ ଓ ରସପିପାସୁ । ଏଇ ସ୍ୱରୂପର ପ୍ରତିମୂର୍ତ୍ତି ତ ଆମ ଜାତିର ଇଷ୍ଟଦେବ ଶ୍ରୀଜଗନ୍ନାଥ । କଳାର ଅପ୍ରାକୃତମୂର୍ତ୍ତି ରୂପେ ଏ ଜାତି ଦେଖିଛି ତା'ର ଇଷ୍ଟଦେବ ଶ୍ରୀଜଗନ୍ନାଥଙ୍କୁ । ତାଙ୍କୁ ଭାବ-ବିହାରୀ ଏବଂ ରସ-ବିଳାସୀ ପରମ ସତ୍ତ୍ୱ ରୂପେ ଏ ଜାତି ମାନ୍ୟତା ଦେଇଛି । ସେଇ ପରମ ସତ୍ତ୍ୱଙ୍କୁ ଜୀବନର ନାୟକ ବୋଲି ମଧ୍ୟ ମାନି ନେଇଛି । ସୁତରାଂ ଓଡ଼ିଆର ମନନ-କ୍ଷେତ୍ରକୁ ଏଇ ଦୁଇଟି ଚେତନା—ରସ ବା ପ୍ରେମ ଚେତନା ଏବଂ ଗୂଢ଼ଭାବ ବା ତତ୍ତ୍ୱପିଣ୍ଡିତ ଦାର୍ଶନିକ-ଜିଜ୍ଞାସା ପୂର୍ଣ୍ଣ ମାତ୍ରାରେ ଆବୋରି ରହିଛି । ଏହାକୁ ଆପଣାର ମୌଳିକ ଅବଲମ୍ବନ ରୂପେ ବରଣ କରି କବିତାର ସଜନ-ବେଦୀରେ ତପସ୍ୱୀ ହୋଇଛି ଓଡ଼ିଆ କବି । କବି ଜୀବନର ଉଦୟାହ୍ନରୁ ହେଉ ବା ମଧ୍ୟାହ୍ନ କିମ୍ବା ଅପରାହ୍ଣରେ ହେଉ, ଏଇ ଭାବନାର ପ୍ରତିଫଳନ ଦେଖା ଦେଇଛି ଓଡ଼ିଆ କବିଙ୍କର କାବ୍ୟ-ସଂଚୟରେ ।

## କବି ପ୍ରତିଭାର ପ୍ରସ୍ତୁତି କାଳ

ରାଧାନାଥ, ସେଇ ମାଟିର ଫୁଲ । ସ୍ୱାଭାବିକ କବି-ପ୍ରବୃତ୍ତିକୁ ଏଡ଼େଇ ପାରି ନାହାନ୍ତି ସେ । କବି ଜୀବନର ଉଦୟ ଲଗ୍ନ, ଯାହାକି ତାଙ୍କ ପ୍ରତିଭାର ପ୍ରସ୍ତୁତି କାଳ ( ୧୮୬୮—୧୮୭୨ ), ସେଇ ସମୟରେ ସେ ବଂଗଳା-କବି ରୂପେ ଆତ୍ମ-ପ୍ରକାଶ କରିଥିଲେ ମଧ୍ୟ ତାଙ୍କର କବିମନ ଉଲ୍ଲିଖିତ ଦୁଇଟି ଭାବ-ପ୍ରବାହ ବିଚ୍ଛିନ୍ନ

ହୋଇ ଯାଇନାହିଁ । ବଂଗଳା କବିତାବଳୀ ଯଦିଓ ଏକ ଉନ୍ନତ କବିତାଗ୍ରନ୍ଥ ନୁହେଁ, ତଥାପି ଏହାର ଭିତରୁ ରାଧାନାଥଙ୍କର ପ୍ରାଥମିକ କବି-ଦୃଷ୍ଟିର ପରିଚୟ ମିଳିଥାଏ । କୁହାଯାଏ ଯେ, ସେଥିରେ ଥିବା ରାଧାନାଥଙ୍କର କେତେକ କବିତା ବଂଗଳାର ପତ୍ର ପତ୍ରିକା ମାନଙ୍କରେ ପ୍ରକାଶିତ ହେବାର ସୌଭାଗ୍ୟ ଲାଭ କରିଥିଲା । ଏପରିକି ମାଇକେଲ ମଧୁସୂଦନଙ୍କର ରଚନା ଠାରୁ ଏହା ଉନ୍ନତ ବୋଲି ପାଠକେ ମନେ କରିଥିଲେ । ଯଥାର୍ଥ ପ୍ରମାଣ ବିନା ଏହାକୁ ହୁଏତ କେବଳ କବି ପ୍ରତିଭାର ଏକ ପ୍ରଶସ୍ତି ବୋଲି କୁହାଯାଇପାରେ; କିନ୍ତୁ ଏହା ସତ୍ୟ ଯେ ରାଧାନାଥୀ ପ୍ରତିଭାର ସୂଚନା ବଂଗଳା କବିତାବଳୀ ହିଁ ପ୍ରଥମରୁ ପ୍ରଦାନ କରିଥିଲା ।

ରାଧାନାଥ ଆପଣା ମନର ସ୍ୱବ-କେନ୍ଦ୍ରୀ ଚେତନାକୁ ଅକ୍ଷର ଲିପିରେ ଅଂକିତ କରିଥିଲେ; ରସ-ଗର୍ଭୀ ଆବେଗ-ଭାରଲ୍ୟ ହୁଏତ ସେତେବେଳେ ବେଶୀ ପରିମାଣରେ ତାଙ୍କ କବି-ମନକୁ ଆଚ୍ଛନ୍ନ କରି ନଥିଲା । ଜୀବନର ନିଃସଙ୍ଗତା-ବୋଧ ଓ ଚିନ୍ତା-ମଗ୍ନ ଅନୁଭୂତି କିଂବା ଜନ୍ମଭୂମି ଓ ବନ୍ଧୁ ପ୍ରିୟଜନଙ୍କ ପ୍ରତି ପ୍ରଶସ୍ତି-ମୂଳକ ନାନାକଥାର ପ୍ରତିଧ୍ୱନି କବିତାବଳୀର ପ୍ରଥମ ଓ ଦ୍ୱିତୀୟ ସଙ୍କଳନରେ ଉଚ୍ଚାରିତ ହୋଇଥିଲା । ଏହା ସେପରି କିଛି ଉନ୍ନତ କବି-କଳ୍ପନାର ପରିପୂରକ ହୋଇନଥିଲେ ମଧ୍ୟ, ରାଧାନାଥ ଏମିତି କେତେ କବିତା ଲେଖି ପ୍ରଥମେ ଲେଖନୀ ସଳଖ କଲେ; କବିତା-ଗଠନର ପରିପାଟୀ ଓ ଅନ୍ତଃ-ଶକ୍ତି ସମ୍ପର୍କରେ ନିଜସ୍ୱ ଧାରଣା ସଂଚୟ କଲେ । ତାହା ତାଙ୍କର ଭବିଷ୍ୟତ୍ କବି-ଜୀବନ ପାଇଁ ପାଥେୟ ପରି ଉପଯୋଗୀ ହୋଇଥିଲା ।

ସୁତରାଂ ଏଇ କାଳ ହେଉଛି, ରାଧାନାଥଙ୍କର କାବ୍ୟ-ସାଧନା ଲାଗି ମାନସିକ ପ୍ରସ୍ତୁତିର କାଳ । ରାଧାନାଥ ଓଡ଼ିଆ କାବ୍ୟ-କ୍ଷେତ୍ରକୁ ଅବତରଣ କରିବା ପୂର୍ବରୁ ଆବଶ୍ୟକ ହେଉଥିବା ପ୍ରେରଣା ଓ ସାରସ୍ୱତ-ପ୍ରୀତି ଏଠାରୁ ସଂଗ୍ରହ କରିଥିଲେ ଏବଂ ତାହାର ପ୍ରଶସ୍ତ ବିନିଯୋଗ କଲେ ପରବର୍ତ୍ତୀ ସମୟର କାବ୍ୟ-କବିତା ରଚନାରେ । ଏତେବେଳେ ମଧ୍ୟ ଆଉ କେତେକ ପାରିପାର୍ଶ୍ୱିକ ଘଟଣା ଓ ସାହିତ୍ୟିକ ଯୋଗାଯୋଗ ତାଙ୍କର କବି-ମନକୁ ପ୍ରୋତ୍ସାହିତ କରିଥିଲା । ଆଲୋଚ୍ୟ ସମୟରେ ରାଧାନାଥ, ଶିକ୍ଷକ ରୂପେ ହିଁ କାର୍ଯ୍ୟ କରୁଥାନ୍ତି । ବାଲେଶ୍ୱର ଜିଲ୍ଲା ସ୍କୁଲରେ ଶିକ୍ଷକ ଥିବାବେଳେ ( ୧୮୬୪-୧୮୬୯ ), ସେ ଯେଉଁ ସାରସ୍ୱତ ସଙ୍ଗର ସାନ୍ନିଧ୍ୟ ଲାଭ କରନ୍ତି, ତହିଁରୁ ତାଙ୍କର ବିଶେଷ ଲାଭ ହେଉଛି;— ଓଡ଼ିଆରେ ସାହିତ୍ୟ-ରଚନା କରିବା ଲାଗି ଏକ ଦୃଢ଼ପ୍ରତିଜ୍ଞ ମନର ପ୍ରାପ୍ତି । ଏତଦ୍‌ଭିନ୍ନ ବୈକୁଣ୍ଠନାଥ ଦେଙ୍କର ନିର୍ବିରୋଧ ସହଯୋଗିତା ଏବଂ ଫକୀର

ମୋହନଙ୍କର ଏକନିଷ୍ଠ ସାଧନା-କର୍ମର ଦୃଷ୍ଟାନ୍ତ ମଧ୍ୟ ରାଧାନାଥଙ୍କର ଆତ୍ମବିଶ୍ୱାସ ବୃଦ୍ଧି ଲାଗି ସହାୟକ ହୋଇଥିଲା ।

ତଦୁତ୍ତରୁ ସେ ଗଲେ ପୁରୀ ଜିଲ୍ଲା ସ୍କୁଲକୁ । ସେଠାରେ କବିଙ୍କର ରହଣୀ-କାଳ (୧୮୬୯-୧୮୭୨) ଭିତରେ ତାଙ୍କୁ ମିଳନ୍ତି ଗୁରୁ ମଧୁସୂଦନ ଓରଫ୍ କବି । ଉଭୟଙ୍କ ଭିତରେ ସାରସ୍ୱତ ମେଳ ଘନିଷ୍ଠ ହୁଏ । ଏଇ ଆତ୍ମୀୟତା ଯେଉଁ ଗୁରୁ-ସମ୍ପର୍କର ସେତୁ ବାନ୍ଧିଥିଲା, ତାହାର ପରିଣାମ ଫଳିଲା 'କବିତାବଳୀ' ପ୍ରକାଶନ (୧୮୭୬) ଲଗ୍ନରେ । ପୁଣି ଉତ୍କଳ ଦର୍ପଣ (୧୮୭୩)ରେ ଲେଖାଲେଖିର ସୁସ୍ଥ ପରିବେଶ ସେମାନଙ୍କର ଯୋଗାଯୋଗକୁ ବହୁଗୁଣିତ କରିଥିଲା । ଗୁରୁ ମଧୁସୂଦନଙ୍କଠାରେ ରାଧାନାଥ ଯେଉଁ ସାରସ୍ୱତ ପ୍ରତିଭାର କ୍ଷୀଣ ସନ୍ଧାନ ପାଇଥିଲେ, ତହିଁରେ ପ୍ରେରଣାର ଜଳସେଚନ କରିବାରୁ ତାହା ନବପଲ୍ଲବରେ କାଳକ୍ରମେ ସବୁଜକାନ୍ତ ହୋଇ ଉଠିଲା ।

ପୁରୀ ଜିଲ୍ଲା ସ୍କୁଲରେ ଶିକ୍ଷକତା ଅବସରରେ ରାଧାନାଥ ସ୍କୁଲ ଗ୍ରନ୍ଥାଗାରକୁ ବିଶେଷ ଭାବେ ବ୍ୟବହାର କରୁଥିଲେ । ସେତେବେଳେ ଏହି ପୁସ୍ତକାଗାରଟି ଓଡ଼ିଶାରେ ବେଶ୍ ଜଣାଶୁଣା ହେଇପାରିଥିଲା । ତହିଁରୁ ପ୍ରାଚୀନ ଓ ମଧ୍ୟଯୁଗୀୟ ବହୁ ଗ୍ରନ୍ଥ ପଢ଼ିବାର ସୁଯୋଗ ତାଙ୍କୁ ମିଳିଥିଲା ଏବଂ ଘରୋଇ ଭାବେ ଏଫ୍. ଏ. ପରୀକ୍ଷା ପାଇଁ ପ୍ରସ୍ତୁତ ହେଉଥିବାରୁ ରାଧାନାଥ ମଧ୍ୟ ଅଧିକ କିଛି ପଢ଼ି ପାରିଥିଲେ । ଏଫ୍. ଏ. ପରୀକ୍ଷାରେ ରାଧାନାଥ ଉତ୍ତୀର୍ଣ୍ଣ ହେଲେ (୧୮୬୯) । ଏହାର ପରବର୍ଷ (୧୮୭୦) ପରିଣମଣି ଦେବୀଙ୍କ ସହିତ ରାଧାନାଥଙ୍କର ଶୁଭ-ବିବାହ ସଂପନ୍ନ ହେଲା । ପୁରୀରୁ କିଛି କାଳ ପାଇଁ ରାଧାନାଥ ବାଙ୍କୁଡ଼ା ସ୍କୁଲକୁ ବଦଳି ହୋଇଗଲେ (୧୮୭୨-ଜାନୁଆରୀ) । ସେଠାରେ ମାତ୍ର ଛଅ ମାସ କାର୍ଯ୍ୟ କରିଛନ୍ତି, ତାଙ୍କୁ ପଦୋନ୍ନତି ମିଳିଲା; ସେ ଡେପୁଟୀ ଇନ୍ସପେକ୍ଟର ପଦରେ ବାଲେଶ୍ୱରରେ ଅବସ୍ଥାପିତ ହେଲେ (ତା ୨୭-୭-୧୮୭୨) । ଏଠାରେ ପୁନରାୟ ତାଙ୍କୁ ମିଳିଲା ପୁରାତନ ସଙ୍ଗ ଏବଂ ସୁସ୍ଥ ସାରସ୍ୱତ ପରିବେଶ ।

ଡେପୁଟୀ ଇନ୍ସପେକ୍ଟର ରାଧାନାଥ ଓଡ଼ିଆ ସାହିତ୍ୟ ରଚନାରେ ଆତ୍ମନିବେଶ କରିଥିଲେ । ରାଜା ବୈକୁଣ୍ଠନାଥ ଦେ ଙ୍କର ଉଦ୍ୟମ ଓ ରାଧାନାଥଙ୍କର ପ୍ରରୋଚନାରେ ପ୍ରତିଷ୍ଠିତ 'ଉତ୍କଳ ଦର୍ପଣ' (୧୮୭୩) କବିଙ୍କୁ ଆତ୍ମପ୍ରକାଶର ପ୍ରଶସ୍ତ ସୁଯୋଗ ଦେଇଥିଲା । ଉତ୍କଳ ଦର୍ପଣ ପତ୍ରିକା ପ୍ରକାଶନର ଉଦ୍ଦେଶ୍ୟ ସମ୍ପର୍କରେ ରାଜା ବୈକୁଣ୍ଠନାଥ ଦେ ଘୋଷଣା କରିଥିଲେ ଯେ—

'ଉତ୍କଳ ସାହିତ୍ୟର ଉନ୍ନତି ସାଧନା, ଉତ୍କଳୀୟ ସାମାଜିକ ରୀତି ସଂଶୋଧନ —ଏହି ପତ୍ରିକାର ମୁଖ୍ୟ ଉଦ୍ଦେଶ୍ୟ ଅଟେ, ଏଣୁ କରି ସେଥିରେ ଶିକ୍ଷା, ବିଜ୍ଞାନ, ସାହିତ୍ୟ, ସଙ୍ଗୀତ, ରାଜକୀୟ, ସାମାଜିକ ଓ ନୀତି ସମ୍ବନ୍ଧୀୟ ପ୍ରସ୍ତାବମାନ ପ୍ରକାଶିତ ହେବ ।'

ସୁତରାଂ ଏହାର ଉଦ୍ଦେଶ୍ୟ ଓ ପରିଚାଳନାକର୍ତ୍ତୃପକ୍ଷଙ୍କ ମତାମତ ସ୍ମରଣ କଲେ ମନେ ହୁଏ, ୧୮୭୦ ମସିହା ପରେ ଓଡ଼ିଆ ବିରୋଧୀ ବଙ୍ଗାଳୀମାନଙ୍କ ଚେତନାରେ ଓଡ଼ିଆ ଭାଷା-ସାହିତ୍ୟର ଉନ୍ନତି ପାଇଁ ଆଗ୍ରହ ସୃଷ୍ଟି ହୋଇଥିଲା । କାରଣ ଭାଷା ଆନ୍ଦୋଳନରେ ପରାଜିତ ହେବା ପରେ ବଙ୍ଗାଳୀମାନେ ଆପଣା ଭାଷାର ଆଧିପତ୍ୟ ବିସ୍ତାର ଓ ସଂରକ୍ଷଣ ଲାଗି ପୁନରୁଦ୍ୟମ ନ କରି ଓଡ଼ିଆ ମାଟି ଏବଂ ମାଟିର ନିଜସ୍ୱ ଉଚ୍ଚାରଣ ସହିତ ଆପଣାକୁ ଖାପ ଖୁଆଇ ନେଇ ଓଡ଼ିଶାର ଉନ୍ନତି ଲାଗି ଯତ୍ନ କରିବାକୁ ମନସ୍ଥ କରିଥିଲେ । ହୋଇପାରେ, ରାଜକୁମାର ବୈକୁଣ୍ଠନାଥ କେଉଁଠି ଓଡ଼ିଆ ବିଦ୍ୱେଷୀ ମନୋଭାବ ପ୍ରକାଶ କରିଥିବାର ସ୍ୱୀକାରୋକ୍ତି ମିଳେ ନାହିଁ । କିନ୍ତୁ ୧୮୭୦ / ୭୨ ପୂର୍ବରୁ ତାଙ୍କର ସାରସ୍ୱତ କାର୍ଯ୍ୟକ୍ରମ ଓଡ଼ିଆ ଭାଷା ବିକାଶର ସହାୟକ ହୋଇଥିବା ମଧ୍ୟ ଜଣାଯାଏ ନାହିଁ । ବରଂ ସେ ଏତେବେଳେ ବଙ୍ଗଳାଗ୍ରନ୍ଥ ପ୍ରକାଶନ ( କବିତାବଳୀ ୨ୟ ଭାଗ—୧୮୭୦ ) ଲାଗି ପ୍ରଯତ୍ନ କରିଥିବାର ପ୍ରମାଣ ମିଳେ ।

ରାଧାନାଥ ମଧ୍ୟ ଏଇ ସମୟ ପର୍ଯ୍ୟନ୍ତ ଓଡ଼ିଆ ସାହିତ୍ୟରେ ଆଦୌ ପ୍ରବେଶ କରି ନାହାନ୍ତି । ବଙ୍ଗଳାରେ ଲେଖା-ଲେଖି କରି ବଙ୍ଗୀୟମନନର ପରିଚୟ ଦେଇଛନ୍ତି । କିନ୍ତୁ ଅପର ପକ୍ଷରେ ଦେଖିଲେ, ଫକୀରମୋହନ ଏତେବେଳକୁ ଓଡ଼ିଆରେ ପାଠ୍ୟପୁସ୍ତକ ଲେଖି ଏବଂ ପ୍ରାଚୀନ ଗ୍ରନ୍ଥର ଉଦ୍ଧାର କରି ଜାତୀୟ ଭାଷା-ସାହିତ୍ୟର ସଂରକ୍ଷଣରେ ଲାଗି ପଡ଼ିଲେଣି । ଗୃହଶତ୍ରୁ ବଙ୍ଗାଳୀମାନଙ୍କର ଆକ୍ରମଣ ସତ୍ତ୍ୱେ ମାତୃଭାଷାର ସୁରକ୍ଷା ପାଇଁ ତାଙ୍କର ଯେଉଁ ପ୍ରାଣମୂର୍ଚ୍ଛା ଉଦ୍ୟମ, ତାହା ଏବେ ବି ଚିନ୍ତା କଲେ ଲୋମ ଶିହରି ଉଠେ । ଭାଷାଲୋପ ଆନ୍ଦୋଳନ ବେଳକୁ ଫକୀରମୋହନଙ୍କର ବୟସ ୧୯ / ୨୦ ମଧ୍ୟରେ । ବିଦ୍ୟାଶୂନ୍ୟ, ଶକ୍ତିହୀନ ଓ ଦରିଦ୍ର ( ଅବଶ୍ୟ ତାଙ୍କର ତୁଣ୍ଡରେ ) ଯୁବକ ଫକୀରମୋହନ ଉପାୟ ଚିନ୍ତା କରନ୍ତି—ମାତୃଭାଷା କେମିତି ବଂଚିବ ଓ ବିକଶିବ !

ଉପାୟ ମିଳିଲା; ଆମର ଯେତେ ପୁରୁଣାଗ୍ରନ୍ଥ ଅଛି ତାକୁ ଖୋଜି ଆଣି ଛାପିଦେଲେ ବହୁତ ପୁସ୍ତକ ବାହାରିବ ଏବଂ ଛାତ୍ର ଓ ପାଠକଙ୍କର ବ୍ୟବହାରରେ

ଲାଗିବ । ମାତ୍ର ଛାପିବା ପାଇଁ ସମ୍ବଳ କାହିଁ ? ଏଥିପାଇଁ ଏକ ସଭା ସ୍ଥାପନ କରାଗଲା, ଏହାର ସଭ୍ୟ ରହିଲେ—ଜୟକୃଷ୍ଣ ଚୌଧୁରୀ, ଭୋଳାନାଥ ରାୟ, ଦାମୋଦରପ୍ରସାଦ ଦାସ, ରାଧାନାଥ ରାୟ ଏବଂ ଫକୀରମୋହନ ସେନାପତି । ଦାମୋଦର ପ୍ରସାଦ ଦାସ ଥିଲେ ଏହାର ସମ୍ପାଦକ ଓ କୋଷାଧ୍ୟକ୍ଷ । ଏଇ ଉଦ୍ୟମର ପରିଣାମରୁ ପ୍ରେସ୍ ସ୍ଥାପିତ ହେଲା ଏବଂ 'ବୋଧଦାୟିନୀ' ଓ 'ବାଲେଶ୍ୱର ସମ୍ବାଦ ବାହିକା' ( ୧୮୬୮ ) ପ୍ରକାଶ ପାଇଲା ।

## ପ୍ରତିଭାର ପ୍ରତିଶ୍ରୁତି

ରାଧାନାଥ ଯଦିଓ ଏହି ଓଡ଼ିଆ ଭାଷା-ସାହିତ୍ୟ-ଉନ୍ନତି ସଂକ୍ରାନ୍ତ ସଭାରେ ସଭ୍ୟ ଥିଲେ, ତଥାପି ୧୮୬୮-୧୮୭୨ ମଧ୍ୟରେ ସେ ଓଡ଼ିଆ ସାହିତ୍ୟ ଲାଗି କୌଣସି ସର୍ଜନାତ୍ମକ କୃତି ପ୍ରକାଶ କରିନାହାନ୍ତି କିମ୍ବା ସୃଷ୍ଟି କର୍ମରେ ମନୋନିବେଶ କରିନାହାନ୍ତି । ଏପରି ଆଚରଣକୁ ଓଡ଼ିଆ ବିଦ୍ୱେଷୀ ମନୋଭାବର ପରିପ୍ରକାଶ ବୋଲି କହି ହେବ ନାହିଁ । କାରଣ ସେ ଯଦି ଓଡ଼ିଆ ବିରୋଧୀ ମତ ପୋଷଣ କରୁଥାଆନ୍ତେ ତାହାହେଲେ ଉକ୍ତ ସଭାର ସଭ୍ୟ ହୋଇନଥାଆନ୍ତେ । ବରଂ ଏଥିର କାରଣ ହୋଇପାରେ ନିଷ୍କ୍ରିୟତା ଓ ଉଦାସୀନତା । ଉଦାସୀନତା ଯୋଗୁଁ ସେ ଓଡ଼ିଆ ରଚନା ଲାଗି ଯତ୍ନ କରିନଥିଲେ; ବଙ୍ଗଳାରେ ଆପଣା ମନକୁ ଲଗେଇ ଦେଇଥିଲେ ।

ବୀମସ୍ ସାହେବ ତାଙ୍କର ଏଇ ଉଦାସୀନତା ଭାଙ୍ଗିଲେ ଏବଂ ଓଡ଼ିଆ ଭାଷା-ସାହିତ୍ୟ ପ୍ରତି ଯତ୍ନବାନ ହେବାକୁ ଚେତେଇ ଦେଲେ । ତା'ପରେ ରାଧାନାଥ ହେଲେ ଓଡ଼ିଆ ସାହିତ୍ୟର ଲେଖକ ଓ ସାରସ୍ୱତ ସଂଗଠକ । 'ଉତ୍କଳ ଦର୍ପଣ' ତାଙ୍କୁ ଏଥିପାଇଁ ପ୍ରକାଶ ଓ ପ୍ରଚାରର କ୍ଷେତ୍ର ଯୋଗାଇଲା ।

ବିବେକୀ ( ୧୮୭୩ ) ହେଉଛି ରାଧାନାଥଙ୍କର ପ୍ରଥମ ପ୍ରକାଶିତ ଓଡ଼ିଆ ରଚନା । ସେହି ବର୍ଷ ସେ ଉତ୍କଳ ଦର୍ପଣ ପତ୍ରିକାରେ 'ମେଘଦୂତ' ଅନୁବାଦ-କାବ୍ୟ ଓ ଅନ୍ୟାନ୍ୟ ପ୍ରବନ୍ଧ ଏବଂ ପର ବର୍ଷ ଇତାଲୀୟ ଯୁବା ଓ 'ପବନ' କବିତା ପ୍ରକାଶ କରନ୍ତି । ବିବେକୀ, 'ଇତାଲୀୟ ଯୁବା' ଓ ମେଘଦୂତ ଇତ୍ୟାଦି ରଚନାକୁ ଛାଡ଼ିଦେଲେ, 'ପବନ' କବିତାଟି ହେଉଛି ତାଙ୍କର ମୌଳିକ ସୃଷ୍ଟି । ସେଦୃଷ୍ଟିରୁ ଏହାକୁ କବି ରାଧାନାଥଙ୍କର ପ୍ରଥମ ମୌଳିକ ଓଡ଼ିଆ ରଚନାରୂପେ ନିର୍ବିବାଦରେ ଗ୍ରହଣ କରାଯାଇପାରେ । ଏଥିରେ ପ୍ରତିଫଳିତ କବିଙ୍କର ଚିତ୍ତ-ବୃତ୍ତି ଯାହା, ତାହାକୁ ବିଶ୍ଳେଷଣକଲେ ଜଣାଯାଏ

ସେ ଏହାର ଅନ୍ତସ୍ତଳରେ ଏକ ଭାବ-ଗର୍ଭ ମନନର କାବ୍ୟିକ ଉଚ୍ଚାରଣ ସ୍ପଷ୍ଟ ।

କବି, ପ୍ରକୃତି ସହ ଆଳାପ କରୁଁ କରୁଁ ଅଗାଧ ସ୍ୱ ଚିନ୍ତାରେ ଆତ୍ମଗୋପନ କରିଛନ୍ତି । ପବନଠାରେ ଅନନ୍ତ ପୌରୁଷ ଓ ଅକଳନୀୟ ବ୍ୟକ୍ତିତ୍ୱର ସନ୍ଧାନ ପାଇଛନ୍ତି କବି । କବି ଦୃଷ୍ଟିରେ 'ପବନ' ବୋଧ ହୋଇଛି କାଳପରି ଅତି ପୁରାତନ । କାଳର ଗତି ପରି ତାର ଗତି । ଇତିହାସର ଅକ୍ଷୟ ସ୍ମାରକୀ ସେ । ଜୀବନର ସବୁ କିଛି କୋଳାହଳ ଏଇ ସମୀର ଦେହରେ ଲୀନ ହେଉଛି, ତାର କଳନା କାହିଁ ? ଏଇ ପ୍ରଭଞ୍ଜନର ଲୀଳା ଅତି ବିଚିତ୍ର / କବିଙ୍କ ପକ୍ଷରେ ତାହା ଅବୋଧ । † ଏଇ ବସ୍ତୁସ୍ୱ-ଭାବୁକତା ଭିତରେ କବି ମନର ତତ୍ତ୍ୱାନ୍ୱେଷୀ ପ୍ରବୃତ୍ତିଟି ସ୍ପଷ୍ଟ ହୋଇ ଉଠିଛି । ପ୍ରେମ-ଚିନ୍ତନର ଆବେଗ-ତରଳ ଉଚ୍ଚାରଣ ଏଠି କ୍ଷୀଣ ।

ମୁଁ ପୂର୍ବରୁ କହିଛି ଓଡ଼ିଆ କବି କବିତା ଲେଖେ, କବିତାର ରହ-ସ୍ୟଧି ଭିତରେ ଦର୍ଶନର ଭାବ-ଛନ୍ଦଟିକୁ କେମିତି ଆଣି ମିଶେଇ ଦଏ ସେ ସୂତ୍ର ଖୋଜିଲେ ମିଳେ ନାହିଁ । ସ୍ନାୟୁବିକ ତରଳ ଆବେଗଗୁଡ଼ିକ କବିତାର ଅକ୍ଷରରେ କେବଳ ଲେଖିହୋଇ ଯାଆନ୍ତି ନାହିଁ । ଦିଗ୍‌ବଳୟ ଆରପଟେ ଆକାଶ ଓ ସମୁଦ୍ର ଏକାଙ୍ଗ ଓ ଏକତନୁ ହୋଇ ପ୍ରୀତିରେ ମଜ୍ଜିଲା ପରି ସ୍ପନ୍ଦନଦୀପ୍ତ ରସ-ଚେତନା ଏବଂ ଦର୍ଶନସଂବଳିତ ତତ୍ତ୍ୱ-ଚିନ୍ତା ଏକାଠି ମିଶି ଓଡ଼ିଆ କବିର କାବ୍ୟ ନୀଡ଼ ରଚନା କରନ୍ତି । ଏହାକୁ ଆମ ମାଟିର ଦ୍ରାବିଡ଼ କୁହାଯାଉ କିମ୍ବା ପରମ୍ପରାର ଅଦୃଶ୍ୟ ସ୍ପର୍ଶ କୁହାଯାଉ; ଯାହା ହେଉନା କାହିଁକି, ରାଧାନାଥଙ୍କର କବିଶିଷ୍ୟ ଉତ୍କଳ ଭାରତୀଙ୍କର ନବାକଳନା କରୁଁ କରୁଁ ଦର୍ଶନ ବେଦୀର ଚୌହଦୀ ଛୁଇଁଛି । ଏଇ ଦାର୍ଶନିକ ଭାବ-ଚୈତନ୍ୟ, ପ୍ରେମ ଚେତନା ସହ ମିଶି ଏପରି ବଳୀୟସୀ ସାମର୍ଥ୍ୟ ଲାଭ କରିଛି ଯେ, ତାହା ତାଙ୍କର ସମଗ୍ର କାବ୍ୟ ସୃଷ୍ଟିକୁ ସମ୍ଭାଳି ଧରିଛି । କାବ୍ୟରୁ ଏହି ଭାବ ମେଳ ତିରୋହିତ ହୋଇ ପାରିନାହିଁ ।

---

† କାଳ ପରି ଅଟୁ ତୁ ପୁରାତନ, / କାଳ ଗତି ପ୍ରାୟେ ତୋହ ଗମନ, / ତୋ ଦେହେ ଅଙ୍କିତ କେତେ ପୁରାବୃତ୍ତ / କେତେ ଲୋକଙ୍କର ହାସ୍ୟରୋଦନ / ମିଶିଛୁ ତୋ ଦେହେ, ନାହିଁ ଗଣନା / …ଚିତ୍ର ଲୀଳା ତୋର ହେ ପ୍ରଭଞ୍ଜନ / ‥ କେମନ୍ତେ ବୁଝିବ ମୁଁ ଅକିଞ୍ଚନ / (ରାଧାନାଥ ରାୟ— ପବନ ( କବିତାବଳୀ ) —ଗ୍ରନ୍ଥାବଳୀ ୧୯୭୫ ସଂସ୍କରଣ, ବ୍ରହ୍ମପୁର । )

ସୁତରାଂ ୧୮୭୩-୭୫ ମଧ୍ୟରେ ରାଧାନାଥଙ୍କ ଲେଖନୀରୁ ଯେଉଁ କେତୋଟି ଓଡ଼ିଆ ରଚନା ଆତ୍ମପ୍ରକାଶ କରିଥିବାର ସୂଚନା ମିଳେ, ତାହାର ଭାବ ମୂଲ୍ୟ ଓ ସର୍ଜନା ଶକ୍ତିରୁ ଜଣେ ପ୍ରତିଶ୍ରୁତିସମ୍ପନ୍ନ ଉଦୀୟମାନ କବି ପ୍ରତିଭାର ସନ୍ଧାନ ମିଳିଥାଏ । ତେଣୁ ଏହି ସମୟ ସୀମାକୁ ପ୍ରତିଭାର ଉନ୍ମେଷ ଓ ଉଦ୍ଭରଣ କ୍ରମରେ ପ୍ରସ୍ତୁତିର କାଳ ବୋଲି ଗ୍ରହଣ କରାଯାଇପାରେ । ଏଠାରୁ ଓଡ଼ିଆ ସାହିତ୍ୟରେ କବିଙ୍କର ପ୍ରବେଶ ଘଟିବାରୁ ବନ୍ଧୁ ମହଲର ଉତ୍ସାହ ଓ ପରିବେଶର ଅନୁକୂଳତା ସୃଷ୍ଟି କର୍ମ ପାଇଁ ତାଙ୍କ ଚିତ୍ତରେ ଯେଉଁ ମାନସିକ ତତ୍ପରତା ସଂଗୃହିତ କଲା, ତାହାର ପରିଣାମରୁ ନବ-ଲେଖନୀ ଅଜସ୍ର ସ୍ରାବୀ ହୋଇଉଠିଲା ।

ଏତେବେଳେ କବି ଉତ୍ସାହ ପ୍ରଣୋଦିତ ହୋଇ ଏବଂ ପରିସ୍ଥିତିର ଆବଶ୍ୟକତାକୁ ଦୃଷ୍ଟିଦେଇ ଦୁଇଟି ଦିଗରେ ଆପଣା ଶକ୍ତି ବିନିଯୋଗ କରିଥିଲେ । ନୂତନ ସାହିତ୍ୟ ଓ ଶିକ୍ଷାସ୍ତୁତନ ଉପଯୋଗୀ ପାଠ୍ୟ-ପୁସ୍ତକର ଅଭାବ ସେ ଅଭିଜ୍ଞତାରୁ ଜାଣିଥିଲେ । ଏହାର ପରିପୂରଣ ପାଇଁ ଉଦ୍ୟମ କଲେ । ଫଳରେ ତାଙ୍କର ପ୍ରତିଭା ୧୮୭୬-୧୮୮୫ ମଧ୍ୟରେ ଦୁଇଆଡ଼କୁ ପ୍ରସାରିତ ହୋଇଗଲା । ପାଠ୍ୟ-ପୁସ୍ତକ ଓ ସାହିତ୍ୟ ରଚନା ଏକାଧାରରେ ଗତି କଲା । ମାତ୍ର ପରିମାଣ ଦୃଷ୍ଟିରୁ ଦେଖିଲେ, ସାହିତ୍ୟ ଅପେକ୍ଷା ପାଠ୍ୟ-ପୁସ୍ତକର ସଂଖ୍ୟା ପ୍ରାୟ ବେଶୀ । ଏ କାଳରେ ରାଧାନାଥଙ୍କର ରଚନାସମୂହ ହେଉଛି—ଉତ୍କଳ ରଚନା (୧୮୭୬), କବିତାବଳୀ (୧୮୭୬), କ୍ଷେତ୍ରତତ୍ତ୍ୱ ଓ କ୍ଷେତ୍ର ପରିମାଣ (୧୮୭୭), ଗଣିତ ବିଷୟର ଆଦର୍ଶ ପ୍ରଶ୍ନାବଳୀ (୧୮୭୭), ବ୍ୟାବହାରିକ ଭୂଗୋଳ (୧୮୭୭) ଭୂଗୋଳସାର ସଂଗ୍ରହ (୧୮୭୮), ସାହିତ୍ୟ ବିଷୟକ ଆଦର୍ଶ ପ୍ରଶ୍ନାବଳୀ (୧୮୭୯), ବ୍ୟାକରଣ (୧୮୮୧) ଏବଂ କବିତାବଳୀ-୨ୟ ଭାଗ (୧୮୮୫) ଇତ୍ୟାଦି ।

ପାଠ୍ୟ-ପୁସ୍ତକଗୁଡ଼ିକ ରାଧାନାଥୀ କବି-ପ୍ରତିଭାର ସ୍ମାରକୀ ହୋଇ ନଥିଲେ ବି କବିଙ୍କର ପରିଚିତିକୁ ପ୍ରସାରିତ କରିବାରେ ସହାୟକ ହୋଇଛନ୍ତି । ରାଧାନାଥ ଆପଣା ବ୍ୟକ୍ତିତ୍ୱର ସ୍ୱଭାବ-ଶକ୍ତିକୁ ଏହି ପାଠ୍ୟ-ପୁସ୍ତକ ମାଧ୍ୟମରେ **ବିଭିନ୍ନ** ମହଲକୁ ପରିବ୍ୟାପ୍ତ କରି ପାରିଛନ୍ତି; ଚିନ୍ତା-ପରିଚୟ ଜଗତ ସୃଷ୍ଟି କରି-ପାରିଛନ୍ତି ଏବଂ ଶିକ୍ଷାନୁଷ୍ଠାନରୁ ଭବିଷ୍ୟତ ଲାଗି ଏକ ପାଠକ ଶ୍ରେଣୀ ତିଆରି କରିପାରିଛନ୍ତି । ଯେମିତି ଅନୁଗାମୀ ସେମିତି ପ୍ରତିବାଦୀମାନଙ୍କର ଉଦ୍ଭବ ଲାଗି ସମ୍ଭାବ୍ୟ କ୍ଷେତ୍ର ମଧ୍ୟ ପ୍ରସ୍ତୁତ କରିଦେଇଛନ୍ତି । ପାଠ୍ୟ-ପୁସ୍ତକ ଲେଖକ ହିସାବରେ ରାଧାନାଥଙ୍କର ପ୍ରତିଷ୍ଠା ଅନେକଙ୍କ ପକ୍ଷରେ ସହନୀୟ ହୋଇନାହିଁ । ପୁଣି ପରବର୍ତ୍ତୀ କାଳରେ ରାଧାନାଥଙ୍କର କାବ୍ୟ-ରଚନା-ରୀତି ଯେପରି ବହୁ

ଅନୁଗାମୀଙ୍କୁ ପ୍ରଶଂସାମୁଖର କରିଛି, ସେହିପରି ଅନେକ ପ୍ରତିବାଦୀଙ୍କୁ କରିଛି ପ୍ରତିଶୋଧପରାୟଣ । ବାସ୍ତବିକ ଏଇ ସମୟ କବିଚରିତ୍ରରେ ପ୍ରତିଭା ପ୍ରସାରଣର ସମୟ—ଗୋଟିଏ ଇଲାକାରୁ ଅନ୍ୟ ଗୋଟିଏ ଇଲାକାକୁ ମାଡ଼ି ଯାଇଛି ରାଧାନାଥୀ ପ୍ରତିଭା । ପ୍ରସାରଣର ଗତି ଯେତେ କ୍ଷିପ୍ର ହୋଇଛି—କବି ପ୍ରତିଭା କ୍ରମଶଃ ସେତେ ବେଗଶାଳୀ ହୋଇ ଶୀର୍ଷଚୂଡ଼ା ସ୍ପର୍ଶ ପାଇଁ ଯତ୍ନବାନ ହୋଇ ପଡ଼ିଛି । କବି ଚରିତ୍ରର ପରବର୍ତ୍ତୀ କାଳ ଏଇ କାବ୍ୟ ଶକ୍ତି ପ୍ରଦର୍ଶନର ଚରମ ଶୁଭଦାନରେ ସମୃଦ୍ଧ ହୋଇଛି ।

ତାଙ୍କ ଜୀବନ-ଚରିତରେ ସମୟର ଭୂମିକା ଖୁବ୍ ମୂଲ୍ୟବାନ ମନେହୁଏ । ସମୟର ସହଚର ହୋଇ ଯେଉଁମାନେ କବିଙ୍କର ସଂସର୍ଗ ଲାଭ କରିଛନ୍ତି, ସେମାନେ ହୁଏତ କିଛି ନା କିଛି ପଦଚିହ୍ନ ପ୍ରତିଭାର ଗତି ପଥରେ ଛାଡ଼ି ଯାଇଛନ୍ତି । କବିଙ୍କର ଆବେଗ ଅବରୋଧ କ୍ଷମରେ ତାହା ଗୋଟିଏ ଗୋଟିଏ ମାଇଲ ଖୁଣ୍ଟି । କବିଙ୍କୁ ଯିଏ ଯେଉଁ ପ୍ରେରଣା ଦେଇଛି ତାହାର ଋଣ ସ୍ୱୀକୃତ ସେ ଅକୁଣ୍ଠ ଚିତ୍ତରେ କରିଛନ୍ତି । ସେପରି ଏକ ସ୍ମରଣୀୟ ଦୃଷ୍ଟାନ୍ତ ହେଉଛି, ଇନ୍‌ସପେକ୍ଟର ଭୂଦେବ ମୁଖାର୍ଜିଙ୍କ ସହ ରାଧାନାଥଙ୍କର ପରିଚୟ ।

ଭୂଦେବ ବାବୁ ୧୮୭୧ ମସିହାରେ ଓଡ଼ିଶା ପରିଭ୍ରମଣରେ ଆସି କଟକରେ ଅବସ୍ଥାନ କଲେ । ରାଧାନାଥଙ୍କ ପକ୍ଷରେ ସେ ପୁରାପୁରି ଅଚିହ୍ନା; କେବଳ କର୍ମଦାୟରେ ଭୂଦେବ ବାବୁଙ୍କ ସହ ପ୍ରଥମଥର ପାଇଁ ମିଳାମିଶା ଆରମ୍ଭ ହୁଏ । କବି ତାଙ୍କସହିତ କଟକ, ପୁରୀ, କୋଣାର୍କ ଓ ଯାଜପୁର ଇତ୍ୟାଦି ବିଭିନ୍ନ ଅଞ୍ଚଳ ପରିଭ୍ରମଣରେ ଯାଆନ୍ତି । ସେଇ ଅବସରରେ ଚଟିଘରମାନଙ୍କରେ ବିଶ୍ରାମ ନେଲାବେଳେ ଉଭୟଙ୍କ ମଧ୍ୟରେ ଆଳାପ-ଆଲୋଚନା ହୁଏ । ତାହା ରାଧାନାଥଙ୍କର ବ୍ୟକ୍ତିତ୍ୱ ସଂକ୍ରାନ୍ତରେ ସଠିକ ଧାରଣା ଲାଭ କରିବା ଲାଗି ଭୂଦେବ ବାବୁଙ୍କୁ ସାହାଯ୍ୟ କରେ ଏବଂ ରାଧାନାଥ ମଧ୍ୟ ସାହିତ୍ୟ-ଜୀବନ ଲାଗି କିଛି ଉତ୍ତେଜନା ତାଙ୍କ ସଂସର୍ଗରୁ ଲାଭ କରନ୍ତି । ଭୂଦେବଙ୍କ ସଂପର୍କରେ ରାଧାନାଥଙ୍କର ସ୍ୱଲିଖିତ ଏକ ମନ୍ତବ୍ୟରୁ ଏହାର ସତ୍ୟତା ଖୁବ୍ ସ୍ପଷ୍ଟ । †

---

† 'ପୂଜ୍ୟପାଦ ଭୂଦେବ ମୁଖୋପାଧ୍ୟାୟଙ୍କର ଓଡ଼ିଶାକୁ ଶୁଭାଗମନ ମୋ ଜୀବନର ଗୋଟିଏ ପ୍ରଧାନ ଘଟଣା । ତାହାଙ୍କ ଚରଣରେ ମୁଁ ଯେତେଦୂର ଋଣୀ କୌଣସି ବଙ୍ଗବାସୀଙ୍କ ନିକଟରେ ସେତେ ଦୂର ନୁହେଁ । ....ସେ ସର୍ବପ୍ରଥମରେ ଯେତେବେଳେ ଓଡ଼ିଶାକୁ ଆସିଲେ, ତହିଁ ପୂର୍ବରୁ ତାହାଙ୍କ ନିକଟରେ ମୁଁ ଆଦୌ ପରିଚିତ ନଥିଲି । ମୋ ସମ୍ବନ୍ଧରେ ସେ କିଞ୍ଚିତ୍ ପରିମାଣରେ କୁସଂସ୍କାରବିଶିଷ୍ଟ ମଧ୍ୟ ଥିଲେ ।'

ଭୂଦେବ ବାବୁ କଟକରେ ଅବସ୍ଥାନ କରୁଥିବାବେଳେ ରାଧାନାଥ ତାଙ୍କୁ ସ୍ୱଲିଖିତ ଗୋଟିଏ କବିତା-ଗ୍ରନ୍ଥର ପାଣ୍ଡୁଲିପି ଦେଖାଇଲେ । ତାହା ପଢ଼ି, ଭୂଦେବ ବାବୁ ଯେଉଁ ମନ୍ତବ୍ୟଟି ଦେଇଥିଲେ ତାହା ରାଧାନାଥଙ୍କର କବି-ଜୀବନ ଲାଗି ଖୁବ୍ ମୂଲ୍ୟବାନ ହୋଇଥିବା ମନେହୁଏ । ଭୂଦେବ ବାବୁଙ୍କର ମନ୍ତବ୍ୟ ହେଲା:—'ପୁରାତନ ବିଷୟ ଘେନି ଶକ୍ତିର ଓ ଶ୍ରମର ଅଯଥା ବିନିଯୋଗ କର କାହିଁକି ? ତୁମର ପାଣ୍ଡୁଲେଖ୍ୟ ପାଠ କରି ମୁଁ ପ୍ରୀତ ହୋଇଅଛି, ଏହାକୁ ଏଡୁକେଶନ ଗେଜେଟରେ ଛପାଇ ଦେବି; କିନ୍ତୁ ମୁଁ ଆଶା କରୁଅଛି, ତୁମେ ନୂଆ ଗଢ଼ିବାକୁ ଚେଷ୍ଟା କରିବ । ...ଓଡ଼ିଶା ଅତି ସୁନ୍ଦର ଦେଶ । ଏ ଦେଶର ମନୋହର ପ୍ରକୃତି କବିତାର ସଂପୂର୍ଣ୍ଣ ଉପଯୋଗୀ । ଓଡ଼ିଶା ବାସ୍ତବିକ କବିତ୍ୱପୂର୍ଣ୍ଣ ସ୍ଥଳର ଉପଯୁକ୍ତା ଧାତ୍ରୀ । ଓଡ଼ିଶାରେ ଯେଉଁ ଆଡ଼କୁ ଚାହିଁବ ନୂଆ ଗଢ଼ିବାର ଉପାଦାନ ଯଥେଷ୍ଟ ରହିଅଛି ।' *

କିନ୍ତୁ ରାଧାନାଥ ଏକଥା ଶୁଣି ମତ ଦେଲେ, 'ନୂଆ ଘଟଣା କଳ୍ପନାରୁ ଉଦ୍ଭାବନ କରି ଲେଖିବା ମୋ ଭଳି ଲୋକର ସାଧ୍ୟାତୀତ' । ମାତ୍ର ରାଧାନାଥଙ୍କର ଏପରି ମନ୍ତବ୍ୟ ଭୂଦେବ ବାବୁଙ୍କ ମନକୁ କାହିଁକି ପାଇଲା ନାହିଁ । ସେ ରାଧାନାଥଙ୍କର ମନ ପରିବର୍ତ୍ତନ ଉଦ୍ଦେଶ୍ୟରେ, କଟକରୁ ବାଲେଶ୍ୱର ଯାଉଁ ଯାଉଁ ବାଟରେ ଦର୍ପଣ ରାଜ୍ୟ ଦେଖି, ସେହି ରାଜ୍ୟର ପାହାଡ଼ ପର୍ବତମାନଙ୍କ ସଂପର୍କରେ ପ୍ରଚଳିତ କିଂବଦନ୍ତୀ କିଛି ଜାଣିବାକୁ ଇଚ୍ଛାକଲେ । ରାଧାନାଥ କିଂବଦନ୍ତୀରୁ ଉଦ୍ଧାର କରି କହିଲେ ଯେ, ଉତ୍କଳୀୟ ଗଜପତିଙ୍କର ବୈଶବନ୍ୟାସ ବେଳେ ଏହି ରାଜ୍ୟର ରାଜାଙ୍କର ଦର୍ପଣ ଧାରଣ ସେବା ଥିବାରୁ ଏହା ହେଲା ଦର୍ପଣ ରାଜ୍ୟ । ଏଇ ରାଜ୍ୟର କୌଣସି ଚଟି ଘର ନିକଟରେ, ଗୋଟିଏ ସରୋବର ଅଛି, ସେଇ ସରୋବର ନିକଟରେ ଜଣେ ତୀର୍ଥ ମାଯାଙ୍କର ଶିଶୁ ପୁତ୍ର ଖେଳୁ ଖେଳୁ କେଉଁଆଡ଼େ ଅଦୃଶ୍ୟ ହୋଇଗଲା;—ଏପରି କିଂବଦନ୍ତୀ ଏଠାରେ ପ୍ରଚଳିତ ବୋଲି ରାଧାନାଥ ଜଣାଇଲେ । ଭୂଦେବ ବାବୁ ଏହା ଶୁଣି ଗୋଟିଏ ଗଳ୍ପ ଉଲ୍ଲେଖ କଲେ । ଗଳ୍ପଟି ହେଲା—ଥରେ ଉତ୍କଳ ଗଜପତିଙ୍କର ଯୁବରାଜ ଶିକାର ଉଦ୍ଦେଶ୍ୟରେ ଏଇ ଦର୍ପଣ ରାଜ୍ୟର ଅରଣ୍ୟକୁ ଆସିଥିଲେ । ଦର୍ପଣ ରାଜକନ୍ୟା ତାଙ୍କୁ ଦେଖି ତାଙ୍କ ପ୍ରତି ଆକୃଷ୍ଟ ହୋଇ ପଡ଼ିଲେ ଏବଂ ଦର୍ପଣ ରାଜା ଯେତେବେଳେ ଦର୍ପଣଧର ଯୁବରାଜଙ୍କର ସେବାପାଇଁ ଆସିଲେ, ରାଜକନ୍ୟା ସମସ୍ତଙ୍କର ଅଜାଣତରେ ଆପଣାର ଖଣ୍ଡିଏ ପ୍ରତିକୃତି ଓ ପ୍ରେମ ପତ୍ରିକାଟିଏ ଦର୍ପଣ ଭିତରେ ଖଞ୍ଜି ଦେଇଥିଲେ । ଦୈବାତ୍

---

* ଦୁର୍ଗାଚରଣ ରାୟ—ରାଧାନାଥ ଜୀବନୀ—ପୃଷ୍ଠା ୧୭, କଟକ-୧୯୪୧

ଯେଉଁ ପ୍ରତିକୃତି ଓ ପ୍ରେମପତ୍ର ଯୁବରାଜଙ୍କ ସମ୍ମୁଖରେ ଖସି ପଡ଼ିଲା । ଦର୍ପଣ ରାଜା, କନ୍ୟାର ଏହି କାର୍ଯ୍ୟ ଲାଗି ମର୍ମାହତ ହେଲେ ଏବଂ ଘରକୁ ବାହୁଡ଼ି କନ୍ୟାକୁ ଭର୍ତ୍ସନା କଲେ । ଏଥିରେ ରାଜକନ୍ୟା ଅସହ୍ୟ ପରାଣବେଦନା ପାଇ ଆତ୍ମହତ୍ୟା କରିଥିଲେ — ଠିକ୍ ଏଇ ସରୋବରରେ ।

ଏହା ଗୋଟିଏ ନୂଆ ଉପାଖ୍ୟାନ । ଭୂଦେବ ବାବୁଙ୍କର ଯୁକ୍ତି ହେଲା, ନୂଆ ଉପାଦାନ ମିଳିବ ନାହିଁ କାହିଁକି ? ଏପରି ଏକ ବିଷୟକୁ ଯଦି ସଜାଡ଼ି ଲେଖାଯାଏ, ତାହାହେଲେ ଚମତ୍କାର କାବ୍ୟଟିଏ ହେବ । ବାସ୍ତବିକ ରାଧାନାଥଙ୍କର ମନକୁ ବଦଳାଇବା ଲାଗି ଏପରି କିଂବଦନ୍ତୀ ତିଆରିକରି ରାଧାନାଥଙ୍କୁ ଚେତେଇ ଦେଲେ ଭୂଦେବ ବାବୁ । ରାଧାନାଥଙ୍କ ପ୍ରତି ଭୂଦେବ ବାବୁଙ୍କର ପ୍ରଧାନ ବକ୍ତବ୍ୟ ଥିଲା—ପୁରାତନରେ ବିଶେଷ ନମଜ୍ଜି ନୂଆ ଉପାଦାନ ଗଢ଼ି କିମ୍ବା କିଂବଦନ୍ତୀ ତିଆରି କରି ଏବଂ ତାର କାବ୍ୟରୂପ ଅଂକନ କର ।

## ପ୍ରତିଭାର ପ୍ରକର୍ଷ ଓ ପ୍ରତିକ୍ରିୟା

ଏପରି ଏକ ପରାମର୍ଶର ବାସ୍ତବ ପ୍ରତିଫଳନ କବିଙ୍କର ପ୍ରଥମ କାବ୍ୟ **କେଦାରଗୌରୀ** (୧୮୮୫) ରଚନାରେ ପରିଲକ୍ଷିତ ହୋଇଥିଲା । କାବ୍ୟ ଲାଗି କିମ୍ବଦନ୍ତୀର ସର୍ଜନା କିମ୍ବା ପ୍ରଚଳିତ କିମ୍ବଦନ୍ତୀ ଓ ପୌରାଣିକ ଉପାଦାନ କାବ୍ୟରେ ବିନିଯୋଗକୁ କବି ରାଧାନାଥ, ଭୂଦେବ ବାବୁଙ୍କଠାରୁ ଉପଦେଶ ରୂପେ ଗ୍ରହଣ କରି ନିଜସ୍ୱ ରଚନାରେ ପରୀକ୍ଷା କରିଥିଲେ । ଭୁବନେଶ୍ୱର ପୃଷ୍ଠଭୂମିରେ ଲିଖିତ 'କେଦାରଗୌରୀ' କାବ୍ୟର ଅନ୍ତରାଳରେ ଯେଉଁ ପ୍ରଣୟ-ଘଟିତ ବ୍ୟାପାରର ଏକ ତ୍ୟାଗମୟ କାହାଣୀ ବିଦ୍ୟମାନ, ତାହାର ମୂଳସୂତ୍ର ଏଇ ମାଟିର ଚଳଣି ଓ ଚଳନ୍ତି-ଚରିତ ଭିତରେ ଖୋଜିଲେ ମିଳେ ନାହିଁ । ମାତ୍ର କବି, କାବ୍ୟ ରଚନାରେ ଏପରି ଶକ୍ତିଶାଳୀ ଆବହାଓ୍ୱା ସୃଷ୍ଟି କରିପାରିଛନ୍ତି ଯେ, ମିଥ୍ୟା ପ୍ରସଂଗଟି ସତ୍ୟର ଆଡ଼ମ୍ବରରେ ପରିଣତ ହୋଇଛି । କେଦାରଗୌରୀ ପ୍ରେମିକାଙ୍କର ପ୍ରାଣଦାନ ପୀଠରେ ଲଲାଟେନ୍ଦୁ କେଶରୀଙ୍କ ଦ୍ୱାରା ମନ୍ଦିର ପ୍ରତିଷ୍ଠା ବୃତ୍ତାନ୍ତର କୌଣସି ଐତିହାସିକ ଭିତ୍ତି ନାହିଁ । ଅଥବା କାବ୍ୟ-ପ୍ରସଂଗଟି ଯେ ଏକ ପୌରାଣିକ ଉପାଖ୍ୟାନ—ତାହାର ମଧ୍ୟ ସତ୍ୟତା ନାହିଁ ।

କିନ୍ତୁ ରାଧାନାଥଙ୍କର ଗୋଟିଏ ମିଥ୍ୟା ପ୍ରଚାର କହେ ଯେ, 'ଭୁବନେଶ୍ୱରରେ କେଦାର-ଗୌରୀ ନାମରେ ଗୋଟିଏ ରମଣୀୟ ନିର୍ଝର

ଅଛି । ନିମ୍ନଲିଖିତ ପଦ୍ୟରେ ସେଥିରେ ପୌରାଣିକ କଥା ଲିପିବଦ୍ଧ ହୋଇଅଛି’— ( କାବ୍ୟର ପ୍ରଥମ ସଂସ୍କରଣର ଭୂମିକା ) । ଏହି ମିଥ୍ୟା ବିବରଣୀ ବହୁ ସମାଲୋଚନାର ସମ୍ମୁଖୀନ ହୋଇଥିଲା । ‘ସଂସ୍କାରକ’ ପତ୍ରିକାର ତା ୭-୧୧-୮୭ ସଂଖ୍ୟାରେ ଏହାର ପ୍ରତିବାଦ କରାଯାଇଥିଲା । ରାଧାନାଥ ସ୍ୱମତ ପରିବର୍ତ୍ତନ କରି, କାବ୍ୟ-ପ୍ରସଂଗଟି ସେକ୍‌ସପିୟରଙ୍କର ପିରାମସ୍ ଏବଂ ଥିସ୍‌ବି ଉପାଖ୍ୟାନରୁ ଗୃହୀତ ବୋଲି ଜଣାଇଲେ । ତଥାପି ଏଇ ବିବୃତ୍ତି ଅନ୍ତରାଳରେ କିଛି ଅପ୍ରକାଶ୍ୟ ରହିଗଲା—କାବ୍ୟ-କଥା ସେମାନ କବି ଓଭିଡ୍‌ଙ୍କର ମେଟାମର-ଫୋସିସ୍ କବିତା ଗ୍ରନ୍ଥରୁ ସଂଗୃହୀତ ହୋଇଥିବା ବିଷୟ କବି ପ୍ରକାଶ କରିନଥିଲେ ।

• ତେବେ ଏହା ସତ୍ୟ ଯେ, ରାଧାନାଥ ଏଇ କଥା-କାବ୍ୟଟିର କାହାଣୀ ଅଂଶ ଓଭିଡ଼୍‌ଙ୍କଠାରୁ ଏବଂ ସ୍ଥଳବିଶେଷରେ ବର୍ଣ୍ଣିନାଛନ୍ତି ସବୁ ସେକ୍‌ସପିୟରଙ୍କର ‘ମିଡ଼ସମରସ୍ ନାଇଟସ୍ ଡ୍ରିମ୍’ର ଏକ ଗର୍ଭାଙ୍କରୁ ପ୍ରୟୋଜନମତେ ଆହରଣ କରିଥିଲେ । ଓଭିଡ୍‌ଙ୍କର କବିତାଟି ୧୧୦ ପଙ୍‌କ୍ତିରେ ଏବଂ ରାଧାନାଥଙ୍କର କବିତା ୧୦୮ ଧାଡ଼ିରେ ସମାପ୍ତ ହୋଇଛି । ଅଙ୍ଗସଜ୍ଜା ଦୃଷ୍ଟିରୁ ଉଭୟଙ୍କ ଭିତରେ ବିଶେଷ କିଛି ପାର୍ଥକ୍ୟ ନାହିଁ । ତଥାପି, ମୂଳ କଥାର ଦେଶୀୟ ଆରୋପଣରେ ରାଧାନାଥ ସଫଳ ହୋଇଛନ୍ତି ।

ରାଧାନାଥଙ୍କର ଏହି କାବ୍ୟ ଆଧୁନିକ କାବ୍ୟ-ସାହିତ୍ୟର ପ୍ରଥମ ସୃଷ୍ଟି ନୁହେଁ, ଏଥିପୂର୍ବରୁ ଜଗନ୍ମୋହନ ରାୟଙ୍କର ଅନୁବାଦ-କାବ୍ୟ ଭ୍ରମଭଂଜନ ( ୧୮୬୮ ) ଏବଂ ରାମଶଙ୍କର ରାୟଙ୍କର ପ୍ରେମତରୀ ଗାଥା ( ୧୮୬୮ ) ପ୍ରକାଶ ପାଇଥିଲା । ପ୍ରାଚୀନ ଛନ୍ଦ ନିୟମରେ ରଚିତ ଅନୁବାଦ-କାବ୍ୟଟିକୁ ବାଦ ଦେଲେ, ‘ପ୍ରେମତରୀ ଗାଥା’ରେ ନୂତନ କଥାବସ୍ତୁ ଓ ଅଙ୍ଗସଜ୍ଜାର ବିନିଯୋଗ ଘଟିଥିଲା । ତେବେ ଏହି ଦୁଇଟି କାବ୍ୟ, କେଦାରଗୌରୀ ପରି କଳାନିପୁଣ ଏବଂ ଅନିବାର୍‌-ଆବେଗ-ସ୍ରାବୀ ହୋଇପାରିନଥିଲେ । ତେଣୁ କଳା-କର୍ମ ଓ ପରିକଳ୍ପନାର ସଫଳତା ଦୃଷ୍ଟିରୁ ଏହାକୁ ପ୍ରଥମ କଥାକାବ୍ୟର ମର୍ଯ୍ୟାଦା ଦିଆଯାଇପାରେ । ମାତ୍ର ଏହାର ବହୁପୂର୍ବରୁ ରାମଶଙ୍କର କିମ୍ବା ଜଗନ୍ମୋହନଙ୍କ ଦ୍ୱାରା ନୂଆ କଥାବସ୍ତୁ ଘେନି କାବ୍ୟ ରଚନାର ଉଦ୍ୟମ ଆରମ୍ଭ ହୋଇଯାଇ-ଥିଲା । ରାଧାନାଥ, ନୂଆ କିମ୍ବଦନ୍ତୀ ଗଢ଼ିଲେ ଏବଂ, ତାହାକୁ କାବ୍ୟରେ ବିନିଯୋଗ କଲେ ।

ରାଧାନାଥୀ ପ୍ରତିଭାର ନିଜସ୍ୱରୂପ ଯାହା, ତାହାର ଆଦ୍ୟ ସଂକେତ କେଦାରଗୌରୀ ହିଁ ପ୍ରଦାନ କରିଥିଲା । ସେ ବିଶ୍ୱାସ କରୁଥିଲେ ଯେ,

'ସୃଜନରେ ନୂତନତା ଏବଂ ଅନୁଭୂତରେ ମୌଳିକତା ପ୍ରତିଫଳିତ କରିବା ପ୍ରତିଭାର ବିଧି-ପ୍ରତିପାଦିତ ଅଧିକାର ଅଟେ ।' † ଏପରି ବିଶ୍ୱାସ ତାଙ୍କ ମନ ଭିତରେ ସାରସ୍ୱତ ଜୀବନ ଆରମ୍ଭରୁ ହିଁ କାର୍ଯ୍ୟ କରୁଥିଲା । କିନ୍ତୁ ଏହାର ଫଳିତ ପ୍ରକାଶ ଘଟିଥିଲା ପରିଣତ କାଳରେ, ଯଥାର୍ଥ ପ୍ରତିଂଚରି ଆନୁକୂଲ୍ୟରୁ ।

ତେଣୁ ଅନୁଭବ କରାଯାଇପାରେ ଯେ, ରାଧାନାଥଙ୍କର କବି-ମନ ଖୁବ ନୀରବତା ଅବଲମ୍ବନ କରୁଥିଲା ଆପଣାର କାବ୍ୟ-ଦର୍ଶନ ସଂପର୍କରେ କୌଣସି ପ୍ରକାଶ୍ୟ ବକ୍ତବ୍ୟ ପ୍ରଦାନ କରିବାକୁ । କବି ହିସାବରେ ନିର୍ଦ୍ଦିଷ୍ଟ କ୍ଷେତ୍ରର ଅଧିକାରୀ ହୋଇଯାଇଲେ ପରେ ଏବଂ ଉପଯୁକ୍ତ ଭୂମିକା ଲାଭ କରିବା ଉପରୁ ସେ ହୁଏତ ଆବଶ୍ୟକତାର ଅନୁରୋଧରେ ଆପଣା ମନର ଗୋପନୀୟ ସଂପୁଟକୁ ଉନ୍ମୋଚିତ କରିଛନ୍ତି ।

ରାଧାନାଥୀ ପ୍ରତିଭାର ପରବର୍ତ୍ତୀ ସ୍ଫୁରଣ ହେଉଛି **ଚନ୍ଦ୍ରଭାଗା** (୧୮୮୬) । ଭୂଦେବ ବାବୁଙ୍କ ସହ ଓଡ଼ିଶାର ବିଭିନ୍ନ ଅଞ୍ଚଳ ପରିଭ୍ରମଣ କାଳରେ କବିଙ୍କୁ କୋଣାର୍କ ଦର୍ଶନର ସୁଯୋଗ ମିଳିଥିଲା । ମନ୍ଦିରର କାରୁକାର୍ଯ୍ୟ ଉଭୟଙ୍କୁ ମୁଗ୍ଧ କରିଥିଲା; ଏହା ଦେଶୀୟ ଶିଳ୍ପୀର ସୃଷ୍ଟି-ସ୍ୱାକ୍ଷର ବୋଲି ସହଜ-ଧାରଣା ସେମାନଙ୍କ ମନରେ ସଂଗୃହୀତ ହୋଇନଥିଲା; ବରଂ ତାହା ଗ୍ରୀକ୍‌ମାନଙ୍କର କଳା-କର୍ମ ହୋଇପାରେ—ଏମିତି ଏକ ଛଳ-ଭାବନା ସେମାନଙ୍କ ମନକୁ ପ୍ରଭାବିତ କରି-ଥିଲା । ରାଧାନାଥ, କଳା-କୁମାରୀ କୋଣାର୍କ ଠାରୁ କାବ୍ୟର ଉପାଦାନ ସଂଗ୍ରହ କଲେ ନାହିଁ କିମ୍ବା ଉପଯୁକ୍ତ କାବ୍ୟ-ପୀଠିକା ରୂପେ ସେ କୋଣାର୍କକୁ ନେଲେ ନାହିଁ । ଏହାର ଉପକଣ୍ଠରେ ପ୍ରବାହିତ ଚନ୍ଦ୍ରଭାଗା ନଦୀ ଓ ସାଗର ହେଲେ ରାଧାନାଥଙ୍କର କାବ୍ୟର କଥାଭୂମି । ହୋଇପାରେ, କୋଣାର୍କ କବିଙ୍କୁ କଳାରେ ସମ୍ମୋହିତ କରିଛି, କିନ୍ତୁ ସେଥିରୁ କାବ୍ୟ-ଉପାଦାନ ଆହରଣ ପାଇଁ ରାଧାନାଥ ଅକ୍ଷମ ହୋଇଛନ୍ତି । କବି ନୀଳକଣ୍ଠଙ୍କୁ ଯେପରି କୋଣାର୍କ 'କୋଣାର୍କେ' କାବ୍ୟ-ସୃଷ୍ଟି ନିମନ୍ତେ ପ୍ରେରଣାର ପ୍ରଧାନ ଉତ୍ସପରି ବିବେଚିତ ହୋଇଥିଲା, ସେପରି ଭାବାତ୍ମକ-ଦୋଳନ ରାଧାନାଥୀ ମନ କୋଣାର୍କ ଠାରୁ ହୁଏତ ପାଇପାରି ନଥିଲା ।

---

† ଉଦ୍ଧୃତ ଦେବୀପ୍ରସନ୍ନ ପଟ୍ଟନାୟକ — କବିଲିପି — ପୃ ୧୬ । ୧୭, ବିଶ୍ୱଭାରତୀ - ୧୯୫୭ ଜାତୀୟବଧ ସଂପର୍କରେ ରାଧାନାଥଙ୍କର ଲିଖିତ ମନ୍ତବ୍ୟ—ଗଂଗାଧର ମେହେରଙ୍କୁ ତା ୧୨/୮/୧୯୦୩ ।

ଏହାର କାରଣ ହୋଇପାରେ, ସତ୍ୟ-ସମର୍ଥିତ ଉପଯୋଗୀ କଥାବସ୍ତୁ ତିଆରି କରିବାରେ ରାଧାନାଥଙ୍କର ଅସାମର୍ଥ୍ୟ; କିମ୍ବା ବିଦେଶୀ ସାହିତ୍ୟରୁ ଜାଣିଥିବା କୌଣସି ରୋମାଣ୍ଟିକ କଥା-ବସ୍ତୁର ସାଦୃଶ୍ୟ ସଂପର୍କ ପାଇଁ କୋଣାର୍କ ଠାରୁ କିଛି ସୂତ୍ର ମିଳିବାରେ ଅସୁବିଧା । ଏଇ ଦୁଇଟି ଅସୁବିଧା ହେତୁ କବି ଚନ୍ଦ୍ରଭାଗାର ପରିବେଶକୁ କଳ୍ପିତ କାବ୍ୟର କଥା-ଭୂମି ରୂପେ ବାଛି ନେଲେ । ସେଠାରେ ରୋମାନ କବି ଓଭିଡ୍‌ଙ୍କର ମେଟାମର୍ଫୋସିସ୍‌ର ଅପଲୋ ଏବଂ ଡାଫେନୀ କାହାଣୀକୁ ସୂର୍ଯ୍ୟ-ଚନ୍ଦ୍ରଭାଗାଙ୍କର ପ୍ରଣୟ-ଆଧାରରେ ନବନିର୍ମିତ କଥାନକ ଉପରେ ଆରୋପ କରିଦେଲେ । କୋଣାର୍କର ବ୍ୟକ୍ତିତ୍ୱ ଏଠି କବି-ମନରେ ମୁଖ୍ୟ ଅଂଶ ପାଇନାହିଁ — ଚନ୍ଦ୍ରଭାଗା ପାଇଲା ଏକ ବଳିଷ୍ଠ ଭୂମିକା ।

ଚନ୍ଦ୍ରଭାଗା ନଦୀ, ସାଗର ଓ ସୂର୍ଯ୍ୟଦେବଙ୍କୁ କବି, ମଣିଷର ଭୂମିକାରେ ରୂପାୟିତ କରିଦେଲେ । ସେମାନଙ୍କ ବ୍ୟକ୍ତିତ୍ୱ ଇତିହାସର ଇଲକା ସ୍ପର୍ଶ କରୁନଥାଉ ପଛକେ, ପରିବେଷଣର କାରୁ-କଳାରେ ସେମାନେ ପୌରାଣିକ ବିଶ୍ୱାସର ଏକ ଇନ୍ଦ୍ରଜାଲ ସୃଷ୍ଟି କରିଛନ୍ତି । ଚନ୍ଦ୍ରଭାଗା ପ୍ରତି ଅଭିଳାଷୀ ହୋଇ ସୂର୍ଯ୍ୟଦେବ ଯେପରି ଆପଣାର ମର୍ଯ୍ୟାଦା ହାନି କଲେ, ସେଥିପାଇଁ ତାଙ୍କୁ ମିଳିଲା ସମନ୍ୟୁ ତପସ୍ୱୀଙ୍କର ଅଭିଶାପ, ଫଳତଃ କୋଣାର୍କ ମନ୍ଦିର ଭାଙ୍ଗିଗଲା ଓ ସେଠାରୁ ସୂର୍ଯ୍ୟ ପୂଜାର ଅବସାନ ଘଟିଲା । ଏହା ରାଧାନାଥଙ୍କର ମନଗଢ଼ା କିମ୍ବଦନ୍ତୀ— ଏଥିର ସ୍ରଷ୍ଟା ଓ ପ୍ରଚାରକ ହେଉଛନ୍ତି ରାଧାନାଥ । ଲୋକ ମୁଖରେ ଏହାର ପ୍ରଚଳନ ପୂର୍ବରୁ ନଥିଲା କିମ୍ବା ଏଥିଯୋଗୁ କୋଣାର୍କ ମନ୍ଦିରର ପତନ ଘଟିଲା ବୋଲି ଇତିହାସରେ ମଧ୍ୟ କୌଣସି ସୂଚନା ନଥିଲା ।

ଏ ମାଟିର ଚଳନ୍ତି କିମ୍ବଦନ୍ତୀ ଓ ଐତିହାସିକ ବିଭୂତି ପ୍ରତି ନଜର ନଦେଇ ମନଇଚ୍ଛା ଉପାଖ୍ୟାନ ତିଆରି କରି ଜାତୀୟ ଇତିହାସକୁ କଳଙ୍କିତ କରିଛନ୍ତି ବୋଲି ରାଧାନାଥଙ୍କ ଉପରେ ଅଭିଯୋଗ ହୋଇଥିଲା । ରାଧାନାଥ, ଉତ୍କଳୀୟ ସ୍ୱାତନ୍ତ୍ର୍ୟର ସୁରକ୍ଷା ଲାଗି ଯତ୍ନ କରି ନାହାନ୍ତି, ସବଂହ ବିଦେଶୀ ଆନୁଗତ୍ୟ ପ୍ରକାଶ କରି ଐତିହ୍ୟକୁ ବିକୃତ କରିଛନ୍ତି ବୋଲି ମଧ୍ୟ ତାଙ୍କ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରାଯାଇଥିଲା । ପ୍ରାଜ୍ଞ କବି ନୀଳକଣ୍ଠ, ରାଧାନାଥୀ ମନନର ଏଇ ଧାରାକୁ ସହିପାରି ନଥିଲେ — ଖୁବ୍ ନିନ୍ଦା କରୁଥିଲେ । ତାଙ୍କ କାବ୍ୟରେ ଏଇ ରାଧାନାଥ-ବିରୋଧୀ ଧାରଣାର ପ୍ରତିଧ୍ୱନି ଶୁଣାଯାଇଥିଲା— ଚନ୍ଦ୍ରହାସେ ବାଳା ‐ଆସିବେ ଚନ୍ଦ୍ରଭାଗା ସୁନ୍ଦରୀ / ଯବନାଣୀ କବି ନାୟିକା ନାଟିତକ ଆଚରି ।'

କେହି କେହି ଏପରି ବିବେଚକ ମୂଲ୍ୟ ଦେଇ ଏହା ରାଧାନାଥଙ୍କ କବି-ଜୀବନର ଅପକୀର୍ତ୍ତି ବୋଲି କହିଥାନ୍ତି । ମାତ୍ର ରାଧାନାଥଙ୍କର କାବ୍ୟ ଜିଜ୍ଞାସାର ମୂଳଭିତ୍ତିକୁ ଚିହ୍ନି ନଥିଲେ ଏମିତି ଯୁକ୍ତି ଶୁଣିବୁ ବାହାରେ । ଯେଉଁଠି ତାଙ୍କ ପ୍ରତିଭା ବାବଦରେ ଧାରଣା ସ୍ପଷ୍ଟ ସେଠି ଏହା ଗୌଣ ହୋଇଯାଏ । ବାସ୍ତବିକ ରାଧାନାଥଙ୍କ କାବ୍ୟରେ ସତ୍ୟ ହେଉଛି କବିତା, ମିଥ୍ୟା ହେଉଛି ଉପାଖ୍ୟାନ । କାରଣ ରାଧାନାଥ ହେଉଛନ୍ତି ମୂଳତଃ ଜଣେ କବି, କଳା ଓ ରୂପ-ପ୍ରାଣ ଜଣେ ଆର୍ଟିଷ୍ଟ; ତାଙ୍କ ପାଖରେ ଇତିହାସ ଏତେ ବଡ଼ ହେବ କାହିଁକି ?

ଆର୍ଟିଷ୍ଟ ରାଧାନାଥ, ପ୍ରଜ୍ଞା ଅପେକ୍ଷା ଅନୁଭୂତିକୁ କବି-ଜୀବନର ସାଥୀରୂପେ ସର୍ବଦା ସ୍ୱୀକୃତି ଦେଇଛନ୍ତି । ଉତ୍କଳର ପ୍ରତ୍ୟେକ ପରିବେଶ ତାଙ୍କ ଅନୁଭୂତିକୁ ଯେପରି ଜାଗ୍ରତ କରିଛି—ତାହାକୁ ସେ ଅଦ୍ଭୁତ କିମ୍ବା କଳ୍ପିତ ଉପାଖ୍ୟାନ ଜରିଆରେ ପ୍ରକଟିତ କରିଛନ୍ତି ମାତ୍ର । କବି, ଅନୁଭୂତିକି ଏତେ ମୂଲ୍ୟ ଦେଇ ନଥିଲେ ସାମାନ୍ୟ ଟିପାଖାତାଟିଏ ତାଙ୍କର ସହଯାତ୍ରୀ ହୋଇ ନଥାନ୍ତା ! କିଛି ଦର୍ଶନ କରି କିମ୍ବା ନୀରବ ନିଶ୍ଚଳ ଅବସ୍ଥାରେ ଥାଇ ଯଦି କେତେବେଳେ କେଉଁଠି ଅନୁଭୂତିର ସ୍ଫୁରଣ ଘଟିଲା, ତାହା ତାଙ୍କ ଟିପାଖାତାରେ ଲିପିବଦ୍ଧ ହୋଇ ରହୁଥିଲା । ଲୋଡ଼ା ପଡ଼ିଲେ ସେ ଏହାକୁ ବ୍ୟବହାର କରୁଥିଲେ । ପରିଭ୍ରମଣରେ ଗଲାବେଳେ ମଧ୍ୟ ଏଇ ଅଭ୍ୟାସକୁ ସେ ଭୁଲୁ ନଥିଲେ ।

ଜଏଣ୍ଟ ଇନ୍ସପେକ୍ଟର ରାଧାନାଥ, ବାମଣ୍ଡା ରାଜାଙ୍କର ନିମନ୍ତ୍ରଣ କ୍ରମେ ଦଶଦିନ ଛୁଟି ନେଇ ପଶ୍ଚିମାଞ୍ଚଳ ପରିଦର୍ଶନରେ ଯାଇଥିଲେ । ତାଳଚେର, ବାମଣ୍ଡା, ପାଲଲହଡ଼ା, କେନ୍ଦୁଝର ଇତ୍ୟାଦି ତାଙ୍କ ଯାତ୍ରାପଥରେ ଓ ରହଣି ଅବସରରେ ତାଙ୍କୁ ଯେମିତି ଆକୃଷ୍ଟ କରିଥିଲେ, ତାହାକୁ କବି ଜଣେ ସର୍ବୋତଦର୍ଶୀ ପଥିକର ମନ ନେଇ 'ଭ୍ରମଣକାରୀର ପତ୍ର' ନାମକ ଏକ ଲେଖାରେ ପ୍ରକାଶ କରିଥିଲେ (୧୮୮୭) । ଏହା ସେତେବେଳେ ନବସମ୍ବାଦ ଏବଂ 'ଓଡ଼ିଆ ଓ ନବସମ୍ବାଦ' ପତ୍ରିକାରେ ପ୍ରକାଶ ପାଇଥିଲା । ଏଥିରେ କବି, ଗଦ୍ୟ ଶୈଳୀର ସାହାଯ୍ୟ ନେଇଥିଲେ ମଧ୍ୟ, ପ୍ରକୃତି ପର୍ଯ୍ୟବେକ୍ଷଣ ଓ ସ୍ଥାନମାହାତ୍ମ୍ୟ ଅନୁଶୀଳନର ଏକ ଚମତ୍କାର କୌଶଳ ବଳରେ ରଚନାଟିକୁ କାବ୍ୟ-ସୁଲଭ କରିପାରିଥିଲେ । ପ୍ରକୃତି ସହିତ କବିଙ୍କ ଅନ୍ତରଙ୍ଗ ସମ୍ବନ୍ଧ ସ୍ଥାପି ବସୁଥିଲେ କବି । ପୂର୍ବାପର ତନ୍ମୟ ଆବେଶରେ ସେ ପ୍ରତ୍ୟେକ ଅଞ୍ଚଳ ଓ ପ୍ରାକୃତିକ ଅବସ୍ଥାକୁ ଲକ୍ଷ୍ୟ କରିଛନ୍ତି । ମୁଗ୍ଧତା ବୋଧରେ ସେ କେଉଁଠି ଫୁଲି ଉଠିଛନ୍ତି ତ

କେଉଁଠି ବିରୁଦ୍ଧାତ୍ମକ ବକ୍ତବ୍ୟ ଜରିଆରେ ସ୍ଥାନ ଓ ଅଧିବାସୀଙ୍କର ପରିଚୟ ଦେଇ ନୀରବ ରହିଛନ୍ତି । ବାମଣ୍ଡାର ପ୍ରାକୃତିକ ପରିବେଶ ଏବଂ ତାହାର ରାଜକୀୟ ଆତିଥ୍ୟ ତାଙ୍କୁ ମୁଗ୍ଧ କରିଛି । ପ୍ରାଧାନପାଟ ପ୍ରପାତର ଶୋଭା କବିମନକୁ ଏପରି ମୋହିତ କରିଛି ଯେ ସେ ଏହାର ବର୍ଣ୍ଣନାରେ ଶତମୁଖ ହୋଇ ଉଠିଛନ୍ତି: 'ମୁଁ ସମଗ୍ର ଓଡ଼ିଶା ଭ୍ରମଣ କରି ଏପରି ଗୋଟିଏ ସ୍ଥାନ ଦେଖିନଥିଲି । ପ୍ରକୃତିର ଶୋଭା ଏବଂ ମନୁଷ୍ୟର ଅଧ୍ୟବସାୟର ଏପରି ସମାବେଶ ଦେଖି କିଏ ପ୍ରୀତ ନହେବ ? କି ଭକ୍ତ କି କବି, କି ବିଷୟୀ, ସମସ୍ତଙ୍କ ପକ୍ଷରେ ଏ ସ୍ଥାନ ସମାନ ଉପଯୋଗୀ ।" *

ପ୍ରକୃତି ପ୍ରତି ଆସକ୍ତି ତାଙ୍କ କବିଜୀବନର ଉନ୍ମେଷ କାଳରୁ ହିଁ ପ୍ରମୂର୍ତ୍ତି ହୋଇ ଉଠିଥିଲା । ଓଡ଼ିଶାର ସୌନ୍ଦର୍ଯ୍ୟ ଉପଭୋଗ ଓ ଉପଲବ୍ଧି କରି କାବ୍ୟରେ ରୂପାୟିତ କରିବାଲାଗି ଭୂଦେବ ବାବୁଙ୍କର ପରାମର୍ଶ କବି-ମନର ସ୍ୱାଭାବିକ ଆଗ୍ରହକୁ ବହୁଗୁଣିତ କଲା । କବି ପ୍ରକୃତି ପ୍ରତି ଏକ ନିରଳସ ଦୃଷ୍ଟିକୋଣ ଚିରକାଳ ପୋଷଣ କରିଥିଲେ । କଥା କାବ୍ୟ ହେଉ କି, ମହାକାବ୍ୟ ବା ଖଣ୍ଡକାବ୍ୟ ହେଉ କବି ମନର ପ୍ରକୃତିପ୍ରବଣତା ଉପଯୋଗିତାନୁସାରେ କାବ୍ୟର ବିଭିନ୍ନ ଛନ୍ଦରେ ପ୍ରକାଶ ପାଉଥିଲା ।

କବିଙ୍କର ଚିନ୍ତନ କ୍ଷେତ୍ର ପ୍ରକୃତି ଜଗତରୁ ଜୀବନ ଜଗତ ଏବଂ ସେଠାରୁ ସମାଜ ତଥା ଐତିହାସିକ ତଥ୍ୟ ଭୂମି ଏବଂ କିମ୍ବଦନ୍ତୀର ଇଲାକା ଆଡ଼କୁ କ୍ରମଶଃ ମାଡ଼ି ଯାଉଥିବା ଦେଖିବାକୁ ମିଳେ । ଗୋଟିଏ କଥାରେ—ପ୍ରକୃତି, ଜୀବନ, ସମାଜ ଓ ଇତିହାସ ଏବଂ କିମ୍ବଦନ୍ତୀ ହେଉଛି, କବିଙ୍କର କାବ୍ୟସାମଗ୍ରୀ ଚୟନର ବ୍ୟାବହାରିକ ପରିସର । ଏଥିରୁ ଯାହା କବି-ଦୃଷ୍ଟିକି ଛୁଇଁ ତାହାର ଏକ ସଙ୍ଗତ ବିନ୍ୟାସ ହେଉଛି, କବିଙ୍କର କାବ୍ୟ-କବିତା । ତେଣୁ ପ୍ରକୃତି ସହିତ ବିଳାସ ତ ତାଙ୍କର ଆଦିମ, ତାକୁ ସାଥିରେ ଘେନି ସେ ଅନ୍ୟ ସବୁ ଭାବ-ଇଲାକା ଭିତରେ ପଶିଛନ୍ତି । କିନ୍ତୁ ସବୁଠାରେ ପ୍ରକୃତି-ଦର୍ଶନ ଯେ ମୁଖ୍ୟ ଅଂଶ ଘେନିଛି ତାହା ନୁହେଁ, ବରଂ ପ୍ରେମ ପାଇଛି ବିଶିଷ୍ଟ ଆସନ । ତାଙ୍କର କୌଣସି କଥା କାବ୍ୟ ନାହିଁ, ଯାହା କି ପ୍ରେମ ଭାବନାର ଏକ ମନୋଜ୍ଞ ଅଭିବ୍ୟକ୍ତିରୁ ମୁକ୍ତ ।

---

* ରାଧାନାଥ ଗ୍ରନ୍ଥାବଳୀ — ନୂତନ ସଂସ୍କରଣ ପୃ-୪୬୦, ପୁସ୍ତକ ଭଣ୍ଡାର, ବ୍ରହ୍ମପୁର ୧୯୭୫ ।

ଏଇ ପ୍ରେମ-ଚେତନା ଦେହଜ ଅଶ୍ଳୀଳତାର ପରିପୂରକ ନୁହେଁ; ସ୍ନାୟୁବିକ ଉତ୍ତେଜନା ସମ୍ଭୋଗ ମଧ୍ୟ ନୁହେଁ । କେବଳ ମାନସିକ ଆଦିମ ଆକର୍ଷଣର ଏକ ଭାବ-ମୟୀ ରୂପସତ୍ତା ଏହାର ସର୍ବାଂଶରେ ଲକ୍ଷଣୀୟ । କଳା ଏବଂ ପ୍ରାକୃତିକ ଜୀବନ-ଧର୍ମର ଅନୁରୋଧରେ ରାଧାନାଥ ତାଙ୍କର କାବ୍ୟ-ସମୂହ ଗଠନ କରିଛନ୍ତି । ଜୀବନର ବିବିଧ ପକ୍ଷ ଏବଂ ଜୀବ-ଧର୍ମୀ ସମ୍ଭାବନାର ନାନା ଉପସର୍ଗ ସେସ ଗୁଡ଼ିକରେ ଉତ୍କୀର୍ଣ୍ଣ ହୋଇଛି । କେଦାର ଓ ଗୌରୀ—ଦୁଇଟି ନିଷ୍ପାପ ଅନ୍ତର ପ୍ରେମ ସଂପର୍କକୁ ଅନ୍ଧ ସମାଜ ଓ ରକ୍ଷଣଶୀଳ ପରିବାର ଅସ୍ୱୀକାର କଲା ଉତ୍ତାରୁ ସେମାନେ ଆତ୍ମତ୍ୟାଗକୁ ହିଁ ଶ୍ରେୟ ମଣିଛନ୍ତି । ପରିସ୍ଥିତି ଏଥିପାଇଁ ମଧ୍ୟ ତାଙ୍କୁ ସାହାଯ୍ୟ କରିଛି । ଏଇ ଘଟଣା ମଣିଷ ମନକୁ ସହାନୁଭୂତିସିକ୍ତ କରିଛି; ମଣିଷ ମନରେ ଜୀବନ ପ୍ରତି ଏକ ମରମୀ ସଂବେଦନା ସଂଚ୍ଚାର କରିଛି । ଏତେବେଳେ କେହି କାବ୍ୟ-ଶ୍ରୋତା ବୁଝିବାକୁ ଇଚ୍ଛାକରେ ନାହିଁ; ଇତିହାସରେ ଏପରି କାହାଣୀର ଅସ୍ତିତ୍ୱ ଥିଲା କି ନାହିଁ ଅଥବା ତାହା ଭୁବନେଶ୍ୱର ପୃଷ୍ଠ-ଭୂମିରେ ଘଟିଥିଲା କି ନାହିଁ । ବରଂ କଳଶାଳୀ ଦିଶେ ଏହାର ଚେତାବେଦନ, ଓ ଆବେଗ ସ୍ପର୍ଶୀ ଭାବ-ଶକ୍ତି ।

ଏଇ ମାନ ଗୋଟିଏ ପକ୍ଷରେ ତାଙ୍କର ଅନୁଭୂତି ସୀମିତ ହୋଇ ରହିନାହିଁ । **ଚନ୍ଦ୍ରଭାଗା** (୧୮୮୬) ରଚନାରେ ରାଧାନାଥ, ପ୍ରେମଚେତନାର ଅନ୍ୟ ଏକ ପର୍ଯ୍ୟାୟକୁ ଗତି କରିଛନ୍ତି । ଭାବନା ଜନ୍ମିଛି, ରୂପର ଆକର୍ଷଣ ଦେବ ବା ମାନବ ନିକଟରେ ଅତି ପ୍ରବଳ, ଅତି ଗୋପନରେ ଥିଲେ ବି ତାହା ରସିକ ଆଖିକି ଦିଶେ; ଫୁଲର ମଧୁ ନଣ ମଧୁ ମାଛିର ଅଧର ସ୍ପର୍ଶରୁ ବଞ୍ଚେ ? ସେମିତି ପ୍ରେମିକ ଆଖିରେ ରୂପବତୀ ନାରୀ । * ଏଇ ରୂପ ଅବଳା ପକ୍ଷରେ ଆତ୍ମସଂରକ୍ଷଣର ସମ୍ବଳ ନୁହେଁ । ରୂପ ଲୋଭୀର କବଳରୁ ଆପଣାକୁ ବଞ୍ଚେଇବା ତା ପକ୍ଷରେ କଷ୍ଟକର ହୁଏ । ଏହାର ସତ୍ୟତା କବି ଚନ୍ଦ୍ରଭାଗା ଗ୍ରନ୍ଥରେ ପ୍ରକାଶ କରିଛନ୍ତି 'ଶକ୍ତିହୀନ ରୂପ କେବଳ ସିନା ଲଭେ ଦୁର୍ଗତି' ।

---

* କଲୁ ରୂପ ଥିଲେ ପ୍ରଚ୍ଛନ୍ନେ କେବେ ରସିକ ଗ୍ଭଡ଼େ / ମଧୁ ଥିଲେ ପୁଷ୍ପେ ଯତନେ ଖୋଜି ମଧୁପ କାଢ଼େ / ସେ ଅଟେ ଜଗତଜନର ମନନୟନ କାଳ । ଅପ୍ରକଟ ହୋଇ ରହିବା ପାଇଁ କାହିଁ ତା ସୁଖ ! ।। ରୂପ ଆକର୍ଷଣ ପ୍ରବଳ ନରେ କିବା ଅମରେ ।।
  (ରାଧାନାଥ ଗ୍ରନ୍ଥାବଳୀ—ଚନ୍ଦ୍ରଭାଗା ପୃ—୪୧, ନୂତନ ସଂସ୍କରଣ, ପୁସ୍ତକ ଭଣ୍ଡାର, ବ୍ରହ୍ମପୁର, ୧୯୭୫)

ଅସହାୟା ଚନ୍ଦ୍ରଭାଗା ପୁରୁଷ ଦାହରୁ ରକ୍ଷପାଇବା ଲାଗି ମରଣକୁ ଶ୍ରେୟ ମଣିଛି । କିନ୍ତୁ ଅପର ପକ୍ଷରେ ଏଇ ଅସହାୟା ନାରୀର ତରଳ ନାଃଶ୍ବାସରେ ସୂର୍ଯ୍ୟଙ୍କର ଦମ୍ଭ ଜଳି ଯାଇଛି । ମୁନିନ୍ଦ୍ରୟଙ୍କର ଅଭିଶାପରୁ ସୂର୍ଯ୍ୟ ମଧ୍ୟର ଭାର୍ଜିଛି ! ଇତିହାସ ଏ କଥା ମାନିବ ନାହିଁ—ବାସ୍ତବିକ ଏଠି ଇତିହାସର ସତ୍ତା ଆଦୌ ନାହିଁ; ଐତିହାସିକ ନ୍ୟାୟର କୌଣସି ଆଗ୍ରହ ମଧ୍ୟ ନାହିଁ । ଅଛି ନୈତିକ ନ୍ୟାୟର ଅଲଙ୍ଘ୍ୟ ଇଙ୍ଗିତ । ଶକ୍ତିହୀନ ଚନ୍ଦ୍ରଭାଗା ଉପରେ ପ୍ରଚଣ୍ଡ ପ୍ରତାପୀ ସୂର୍ଯ୍ୟ ଦେବଙ୍କର ଲାଳସା-ରଞ୍ଜିତ ଆକ୍ରମଣର ପରିଣାମ ଇଏ । ଲୋକଟି ଭୋଗୁଛି ଅପଣା କର୍ମର ଫଳ । କୀର୍ତ୍ତି ଭାଙ୍ଗି ନାହିଁ ଯେ ବ୍ୟକ୍ତିତ୍ବର ବଡ଼ିମା ଭୂଲୁଣ୍ଠିତ ହୋଇଯାଇଛି । ଏଇ କାବ୍ୟରୁ ଇତିହାସ ଖୋଜିବା ଅପେକ୍ଷା ତାର ମର୍ମଟିକୁ ଖୋଜିବା କଥା ।

ରାଧାନାଥ ଏଠାରେ ଜୀବନର ଯେଉଁ ଭାବ-ମଧୁ ରୂପଟିକୁ ଉପଲବ୍ଧି କରିଛନ୍ତି, ତାହାର ଭିନ୍ନ ଏକ ଦିଗ ଦର୍ଶନ କରିଛନ୍ତି ନନ୍ଦିକେଶ୍ବରୀ ( ୧୮୮୭ ) କାବ୍ୟରେ । ଅନ୍ୟାନ୍ୟ କାବ୍ୟ ପରି ଏହାର କଥାନକ ରୋମାନ କବି ଓଭିଡ଼୍ଙ୍କର ମେଟାମର ଫୋସିସ୍ କାବ୍ୟ-ଗ୍ରନ୍ଥର ଅଷ୍ଟମ କବିତା, ଦି କିଙ୍ଗ ମିନସ ଏଣ୍ଡ୍ ସିଲା' କାହାଣୀ ଏବଂ କବି ବାଇରନଙ୍କର 'ଦି ସିଜ୍ ଅଫ୍ କୋରିନ୍ଥ' କାବ୍ୟରୁ ସଂଗୃହୀତ ହୋଇ ଲୋକାନୁକୂଳ ଦେଶୀୟ କଥାବସ୍ତୁରେ ଆରୋପିତ ହୋଇଛି ।

ନନ୍ଦିକା ଇତିହାସର କନ୍ୟା କି ନୁହେଁ ତାହା ସନ୍ଦେହର ବିଷୟ । ରାଧାନାଥଙ୍କର ଏଇ କାବ୍ୟ-ରଚନା ପୂର୍ବରୁ ପ୍ରକାଶିତ ଷ୍ଟାର୍ଲିଙ୍ଗଙ୍କର ଓଡ଼ିଶା ଇତିହାସ ( ୧୮୨୫ ), ହଣ୍ଟରଙ୍କର ଓଡ଼ିଶା ( ୧୮୭୨ ) ଏବଂ ବାମସଙ୍କର ଓଡ଼ିଶା ଇତିହାସ ( ୧୮୮୨ ) ନନ୍ଦିକାର ଅସ୍ତିତ୍ବ ବିଷୟରେ ନୀରବ ରହିଥିଲେ । କେବଳ ପ୍ୟାରୀମୋହନ ଆଚାର୍ଯ୍ୟଙ୍କର ଓଡ଼ିଶା ଇତିହାସ ( ୧୮୮୦ )ରେ ସୁବର୍ଣ୍ଣ କେଶରୀଙ୍କୁ ନିଃସନ୍ତାନ ନୃପତି ରୂପେ ଉଲ୍ଲେଖ କରାଯାଇଥିଲା । ମାଦଳା ପାଞ୍ଜିର କିମ୍ବଦନ୍ତୀ ସୂତ୍ରରୁ ଜଣାପଡ଼ିଥିଲା ଯେ କେଶରୀ ବଂଶର ଶେଷ ରାଜା ସୁବର୍ଣ୍ଣ କେଶରୀଙ୍କ ସହିତ ଗଙ୍ଗ ବଂଶର ପ୍ରଥମ ରାଜା ଚୋଡ଼ଗଙ୍ଗଙ୍କର ସମର ହୋଇଥିଲା ।

ରାଧାନାଥ, ନନ୍ଦିକାର ଉଜ୍ଜଳ ବ୍ୟକ୍ତିତ୍ବ ନିର୍ମାଣ କରିଦେଲେ । କବିଙ୍କର କାବ୍ୟରେ ନନ୍ଦିକାର କିମ୍ବଦନ୍ତୀ ଏପରି ଭୂମିକା ଲାଭ କଲା ଯେ ଏହାର ପ୍ରଭାବରୁ ପରବର୍ତ୍ତୀ କାଳର ବହୁ ଲେଖକ ଓ ଐତିହାସିକ ନନ୍ଦିକା

ପ୍ରସଙ୍ଗକୁ ଘଟଣା ଭାବ ନିଜର ଲେଖାମାନଙ୍କରେ ବ୍ୟବହାର କରିଥିଲେ । ଭିକାରୀଚରଣ ପଟ୍ଟନାୟକଙ୍କ ଲେଖଣୀରୁ ନନ୍ଦିକେଶ୍ୱରୀ ଏବଂ ଅଶ୍ୱିନୀକୁମାର ଘୋଷଙ୍କଦ୍ୱାରା 'କେଶରୀ ଗଙ୍ଗା' ନାଟକ ଲିଖିତ ହୋଇଥିଲା । ତତ୍ପର ହରେକୃଷ୍ଣ ମହତାବଙ୍କ ଧାରଣାରେ ନନ୍ଦିକା ହେଲା ଇତିହାସକନ୍ୟା, କବି ସଚ୍ଚିଦାନନ୍ଦ ରାଉତରାୟ ଦେଲେ ତାକୁ ଅସମାପିକା ନାୟିକାର ଗୌରବ ।

ସୁତରାଂ କୁହାଯାଇପାରେ ଯେ, ଓଡ଼ିଶା ଇତିହାସର ପ୍ରଭାବରୁ ନନ୍ଦିକେଶ୍ୱରୀ କାବ୍ୟର ସୃଷ୍ଟି ହୋଇ ନାହିଁ; ବରଂ ଏହା ଓଡ଼ିଶାର ଇତିହାସ ଲେଖା ଓ ସାହିତ୍ୟ-ସର୍ଜନାକୁ ପ୍ରଭାବିତ କରିଛି । ଗୋଟିଏ ଦୃଷ୍ଟିରୁ ଦେଖିଲେ ଏହା ରାଧାନାଥୀ ପ୍ରତିଭାର କୃତିତ୍ୱ ହୋଇପାରେ । ମାତ୍ର ଏଥିରେ ଇତିହାସ ଯେତେ ବଡ଼ ନୁହେଁ ବଡ଼ ହେଉଛି ଜୀବନ ବା ଜୀବନ ପ୍ରତି ଥିବା ସଂକେତ ।

ନନ୍ଦିକାର ଚରିତ୍ରରେ ଜୀବନ ପ୍ରତି ସମ୍ଭାବ୍ୟ ଇଂଗିତ ନିହିତ । ଯେଉଁ ଶକ୍ତିହୀନତାର ପରିଣାମରୁ ଚନ୍ଦ୍ରଭାଗାର ଅଶ୍ରୁଳ ପରିଣତି ଘଟିଥିଲା କିମ୍ବା ଆତ୍ମସଂରକ୍ଷଣରେ ଅସମର୍ଥା ନାୟିକା ପୁରୁଷ ଦାଉରୁ ରକ୍ଷା ପାଇବା ପାଇଁ ବଞ୍ଚିବା ଅପେକ୍ଷା ମରଣକୁ ଶ୍ରେୟ ମଣିଥିଲା—ତାହାର ଭିନ୍ନ ଏକ ପ୍ରସ୍ତର ଦ୍ୟୋତକ ହୋଇଛି ନନ୍ଦିକେଶ୍ୱରୀ କାବ୍ୟ ।

ନନ୍ଦିକା, ଚନ୍ଦ୍ରଭାଗା ପରି ପ୍ରୀତି ବିମୁଖା ନୁହେଁ । ନିଜ ଇଚ୍ଛାର ନାୟକ ଲାଗି ସେ ଅଭିଳାଷିଣୀ । ଚନ୍ଦ୍ରଭାଗା ପାଇଁ ପ୍ରେମିକଙ୍କର ମନ ଯେପରି ଚଞ୍ଚଳ ହୋଇ ଉଠିଥିଲା, ଏଠାରେ ଚୋଡ଼ଗଙ୍ଗ ପାଇଁ ପ୍ରେମିକାଙ୍କର ମନ ସେପରି ଚଞ୍ଚଳ ହୋଇ ଉଠିଛି । ପ୍ରୀତିର ସଫଳତା ପାଇଁ ନନ୍ଦିକା, ରାଜକୀୟ ବଡ଼ିମା ଓ ଦେଶ ଜାତିର ସ୍ୱାର୍ଥମାନଙ୍କୁ ବଳି ଦେଇ ପିତାଙ୍କର ଶତ୍ରୁ ଚୋଡ଼ଗଙ୍ଗଙ୍କର ନିକଟରେ ପ୍ରଣୟପ୍ରାର୍ଥୀ ହୋଇଛି । ପିତାଙ୍କର କୈମର୍ତ୍ତି ବନ୍ଦିମନ୍ଦିରରେ ଶତ୍ରୁ ବୀରଙ୍କଠାରୁ ପ୍ରଣୟ ନିବେଦନ ଜଣେ ପ୍ରୀତି ପ୍ରଗଳ୍ଭା ନାୟିକାର ଚରିତ୍ରାଧାରରେ ସ୍ୱୀକୃତ ଯୋଗ୍ୟ ପାଏ ।

ପ୍ରୀତିବର୍ଣ୍ଣ ନନ୍ଦିକାର ପ୍ରେମ ଏକଦିଗଗ୍ରସ୍ତ, ଚନ୍ଦ୍ରଭାଗାରେ ସୂର୍ଯ୍ୟଙ୍କର ଲାଳସା ମଧ୍ୟ ସେମିତି । ମାତ୍ର କେଦାରଗୌରୀରେ ଥିଲା ଉଭୟ-ପକ୍ଷୀ ପ୍ରେମାତୁରତା । ନନ୍ଦିକାର ନାରୀମନଟିକୁ କେହି ବୁଝି ନାହାନ୍ତି — ପିତା

କମ୍ପା ଅଭିଳଷିତ ନାୟକ । ତେଣୁ ସେ ହୋଇଛନ୍ତି ପରିତ୍ୟକ୍ତା । ବ୍ୟର୍ଥତା ବୋଧର ପୁଂଜିଭୂତ ବେଦନା ବୋଝ ବହିବାର ସ୍ୱପ୍ନ ପୋଷଣ କରିପାରି ନାହାନ୍ତି ସେ; ମୃତ୍ୟୁକୁ ମଣିଛନ୍ତି ଏକ ମାତ୍ର ବରଣୀୟ ଅବଲମ୍ବନ । ଏଠି ବି ଶକ୍ତି ବନ୍ଧନେ ନନ୍ଦନା ସହିତ ଜୀବନରେ ଅପମାନ ।

କବି ରାଧାନାଥଙ୍କର ପ୍ରଶସ୍ତ ଦୃଷ୍ଟିରେ ଶକ୍ତି ଓ ସୌନ୍ଦର୍ଯ୍ୟର ସମନ୍ୱୟ ଏଯାବତ୍ ଘଟି ନାହିଁ । ଏପର୍ଯ୍ୟନ୍ତ ତିନୋଟି କଥା-କାବ୍ୟର ସ୍ରଷ୍ଟା ରାଧାନାଥ, ଜୀବନର ମୌଳିକ ସତ୍ୟ ପ୍ରେମ ବାବଦରେ ଦୁଇଟି ପର୍ଯ୍ୟାୟର ଅନୁଭବ ଲିପିବଦ୍ଧ କରିଛନ୍ତି । କେଦାର ଗୌରୀରେ ଗୋଟିଏ ଏବଂ ଅନ୍ୟଟି ଚନ୍ଦ୍ରଭାଗା ଓ ନନ୍ଦିକେଶ୍ୱରୀରେ ପ୍ରତିଫଳିତ ।

ରାଧାନାଥଙ୍କର କାବ୍ୟ-ସୃଷ୍ଟିର ଗତିକ୍ରମ ଚର୍ଚ୍ଚା କଲାବେଳେ ଯେଉଁ ଭାବ-ବସ୍ତୁର ବିଶ୍ଳେଷଣ ହେଉଛି ତାହା ମୂଳତଃ ପ୍ରେମ-ଜିଜ୍ଞାସାର ବୋଧନ । ଏହାକୁ ଅନୁଶୀଳନ କରିବା ଅବସରରେ ଜୀବନପ୍ରତି କବିଙ୍କର ସୁମତ ଏବଂ କଳା-ଧର୍ମ ବାବଦରେ ତାଙ୍କର ଧାରଣା କଣ, ସେ ବିଷୟରେ କିଛି ସୂଚନା ଦେବାର ସୁଯୋଗ ମିଳୁଛି । କବିତାରୁ ଜୀବନକୁ ଦେଖାଯାଉଛି ଓ କବିତା କିପରି ଜୀବନାନୁଭୂତି ଦ୍ୱାରା ପ୍ରଭାବିତ ହୋଇଛି ତାହାକୁ ଉଦ୍‌ଘାଟନ କରାଯାଉଛି । ଏଇ ଦୁଇ ଦିଗନ୍ତରୁ କବି ଚରିତ ଅନୁଧ୍ୟାନ କଲାବେଳେ ମୁଁ ଲକ୍ଷ୍ୟ କରୁଛି ଯେ ପ୍ରେମ-ଚେତନା ହିଁ ରାଧାନାଥଙ୍କର ମୁଖ୍ୟ କାବ୍ୟ-ଚେତନା କାରଣ ତାଙ୍କର ସମୁଦାୟ କାବ୍ୟ-କୀର୍ତ୍ତି ମଧ୍ୟରୁ ମାତ୍ର ତିନୋଟିକୁ ( ଚିଲିକା, ମହାଯାତ୍ରା, ଦରବାର ) ବାଦଦେଲେ ଆଉ ସବୁ କାବ୍ୟ, ମାନବୀୟ ପ୍ରେମ-ଭାବ-ଭିତ୍ତିକ । ଅନ୍ୟ ବାଟରେ କହିଲେ କୁହାଯାଇପାରେ ଯେ, ସେ କାବ୍ୟ ଭିତରେ ଜୀବନର ଯେଉଁ ଆଲେଖ୍ୟ ଅଙ୍କନ କରିଛନ୍ତି ତାହା ପ୍ରେମର ପ୍ରଭାବଶାଳୀ ସ୍ପର୍ଶରେ ପରିପ୍ଲୁତ ।

କବି-ଜିଜ୍ଞାସାରେ ଏହା ହୁଏତ ଅନୁଭୂତ ହୋଇଛି ଯେ, ପ୍ରେମ ହେଉଛି ଜୀବନର ସର୍ବବ୍ୟାପୀ ଆବେଗ । ଏହାର ବୈଚିତ୍ର୍ୟ ବୋଧରେ ଜୀବନ ହୁଏ ବିଚିତ୍ର । ତେଣୁ କବି, ପ୍ରେମ-ଚେତନାର ପ୍ରଶସ୍ତ ଭୂମିରୁ ବୃହତ୍ତର ଜୀବନର ସତ୍ୟ-ରୂପ ଏବଂ ସମସ୍ୟାବଳୀ ଉପଲବ୍‌ଧି କରିବାରେ ପ୍ରୟାସୀ ହୋଇଛନ୍ତି । ଅନ୍ଧାରରୁ ଉଠି ଆଲୋକରେ ଆତଯାତ ହେବାଲାଗି ଜୀବନ ପ୍ରତି ଅନୁକୂଳ ସଂକେତ ପ୍ରଦାନ କରିଛନ୍ତି କବି । ଏଥିଲାଗି କୌଣସି ଅପ୍ରିୟ ସତ୍ୟ ଘଟଣା

ବା ମାନବୀକ ଆଚରଣର କିଛୁ ନଗ୍ନ ବାସ୍ତବତାର ଉଲ୍ଲେଖ ଘଟିବା ଆବଶ୍ୟକ ମନେ ହେଲେ ମଧ୍ୟ ତାହାକୁ କବି ଶ୍ଳୀଳତାବୋଧଙ୍କ ପର ଲୁଚେଇ ଦେଇ ନାହାଁନ୍ତି । ନଗ୍ନ ମାନବୀକ ସତ୍ତାର ନାଶ୍ୟନ ଅଭିବ୍ୟକ୍ତି—ଖୁବ୍ ନିର୍ଭୀକ ଭାବେ କବି କଣ୍ଠରୁ ଉଚ୍ଚାରିତ ହୋଇଛି । କିନ୍ତୁ ଅନ୍ତରାଳରେ ରହିଛି ଜଣେ ନୀତିମନା ସମାଜବାଦୀର ମନ । ଏଥିଯୋଗୁ ମନେହୁଏ; କବି ରାଧାନାଥଙ୍କର ସକଳ ପ୍ରୟାସ ପଛେ ଯେପରି ଜୀବନ ଓ ସମାଜ ଲାଗି ଅଭିପ୍ରେତ । ଏହାର ପ୍ରକାଶ ସିଧାସଳଖ ନୁହେଁ—ତାହା ହୋଇଥିଲେ କଳାର ମର୍ଯ୍ୟାଦା ପଡ଼ିଯାଆନ୍ତା ।

କବି, କାଳକୁ ହିଁ ଅଗ୍ରାଧିକାର ଦେଇଛନ୍ତି—ତହିଁରେ ଜୀବନର ଗ୍ରହଣୀୟତା ଦେଖିଛନ୍ତି । କାରଣ, ତାଙ୍କର ଭୂତବୋଧ ହିଁ ଚହଲେଇ ଦେଇଥାଏ ଯେ, ରାଧାନାଥ ପ୍ରଥମତଃ ଜଣେ କବି, ଜୀବନ-ଶିଳ୍ପୀ ବା ସମାଜ ଦ୍ରଷ୍ଟା ହେବା ହେଉଛି ପରିପୂରକ ଘଟଣା । ସେ କଳାର କମନୀୟତା ଭିତରେ ଜୀବନର ବାସ୍ତବତା ଫୁଟାଇଛନ୍ତି; ସୋପାନ ପରେ ସୋପାନ ଅନ୍ୱେଷଣ କଲାପରି ଗୋଟିଏ କାବ୍ୟରୁ ଆଉ ଗୋଟିଏ କାବ୍ୟକୁ ଗତି କରିଛନ୍ତି । କେଦାର ଗୌରୀ, ଚନ୍ଦ୍ରଭାଗା ଓ ନନ୍ଦିକେଶ୍ୱରୀ ରଚନାରୁ ଉଷା ରଚନା କ୍ଷେତ୍ରକୁ ଓହ୍ଲାଇଲା ବେଳକୁ ପ୍ରତ୍ୟେକ କାବ୍ୟ-ବସ୍ତୁରେ ଜୀବନର ଭିନ୍ନ ଭିନ୍ନ ଭାବ-ପ୍ରସ୍ତ ପ୍ରତିଫଳିତ ହୋଇଛି ।

ଉଷା (୧୮୮୮) ପ୍ରଣୟ କାହାଣୀ ଅଶ୍ରୟରେ କଳ୍ପିତ ହୋଇଥିଲେ ମଧ୍ୟ ଏଠାରେ କବି, ଜୀବନର ଭିନ୍ନ ଏକ ଦିଗର କାବ୍ୟ-ଚିତ୍ର ଅଙ୍କନ କରିଛନ୍ତି । ଏଥି ପୂର୍ବରୁ ରଚିତ ହୋଇଥିବା କାବ୍ୟମାନଙ୍କର କଥାବସ୍ତୁ ଓ ଚରିତ୍ର ପରି ଏହାର ଗଠନ ନୁହେଁ । ନାରୀର ଶକ୍ତିହୀନତା କିମ୍ବା ଅସହାୟତା ଏଥିରେ ଲକ୍ଷିତ ହୁଏ ନାହିଁ । ପ୍ରଣୟ ରାଗର ଖଣ୍ଡନ ପାଇଁ ମଧ୍ୟ ଏଠାରେ ପରିବାର ପ୍ରତିବନ୍ଧକ ରୂପେ ଠିଆ ହୋଇନାହିଁ । ନାରୀ ପ୍ରେମଭିକ୍ଷୁଣୀ କିମ୍ବା ପ୍ରେମ-ବିମୁଖା ହୋଇ ପୁରୁଷର ସମ୍ପୂର୍ଣ୍ଣ ଅଧୀନ ହୋଇ ନାହିଁ । ରୂପ ଏଠି କେବଳ ଭୂଷଣ ହୋଇଛି ବୋଲି ପରୋକ୍ଷରେ ନାରୀ କଷଣ ଭୋଗିଛି—ଏକଥା ମଧ୍ୟ ନୁହେଁ । କବି, ନାରୀ ଠାରେ ଶକ୍ତି ଓ ଶ୍ରୀ—ଉଭୟର ସମନ୍ୱୟ ଆଣିଛନ୍ତି । ତେଣୁ 'ଉଷା' ହୋଇଛି ସୌନ୍ଦର୍ଯ୍ୟମୟୀ ଓ ଶକ୍ତିମତୀ । ଶକ୍ତିର କଳନା କରାଯାଇ ସୌନ୍ଦର୍ଯ୍ୟ-ସମ୍ବନ୍ଧ ସ୍ଥାପିତ ହୋଇଛି ।

ଉଷା କାବ୍ୟର କଥା-ବସ୍ତୁ ଓ ବର୍ଣ୍ଣନାଧାରା ବହୁଲାଂଶରେ ଦେମାନ କବି ଓଭିଡ଼ଙ୍କର 'ହିରୋ ମିନସ ଏଣ୍ଡ ଆଟଲାଣ୍ଟା' ଅଖ୍ୟାୟିକା କାବ୍ୟ ଏବଂ ଇଂରେଜୀ

କବି ଇଢ଼ିଲସ୍ଥମ୍ ମରେସ୍ (୧୮୩୪-୧୮୯୬ )ଙ୍କର 'ଦି ଆର୍ଥଲି ପାରାଡ଼ାଇଜ' କାବ୍ୟଗ୍ରନ୍ଥ ଅନ୍ତର୍ଗତ 'ଆଟଲଣ୍ଟାରେସ୍'ରୁ କେତେକାଂଶରେ ଅନୁସୃତ ହୋଇ ବାଲେଶ୍ୱର ପରିବେଶରେ ଆରୋପିତ ହୋଇଛି । ଅନୁସନ୍ଧାନରୁ ଜଣାଯାଏ, ରାଧାନାଥଙ୍କର ଉଷା, ଜନ୍ମ-ଯୌବନ, ପ୍ରତିଜ୍ଞା-ପରାଜୟ, ଏବଂ ପରିଣୟ-ପ୍ରସ୍ଥାଣ ପ୍ରଭୃତି ପ୍ରସ୍ତରେ ସାମାନ୍ୟ କେତୋଟି ବ୍ୟତିକ୍ରମକୁ ବାଦ ଦେଲେ, ପ୍ରାୟ ଆଟଲଣ୍ଟାଙ୍କର ପ୍ରତିରୂପ ବହନ କରିଛି ।· ଏହି ବ୍ୟତିକ୍ରମ ଗୁଡ଼ିକ ଆହରଣୋପେଟ୍ ରାଧାନାଥଙ୍କର କଳ୍ପନାପ୍ରସୂତ ଏବଂ ତାଙ୍କ ନିର୍ମାଣ ନିପୁଣତାର ପରିଚ୍ଛାୟକ ।

ବାଲେଶ୍ୱର ହୋଇଛି ଉଷା-କାବ୍ୟର କେନ୍ଦ୍ରଭୂମି । ଏହାର ଉତ୍ତର ଓ ଦକ୍ଷିଣ ତଟବର୍ତ୍ତୀ ସ୍ଥାନମାନଙ୍କର କିମ୍ବଦନ୍ତୀ ଓ ପ୍ରସିଦ୍ଧି, ପ୍ରସଙ୍ଗ ଅନୁମତେ କାବ୍ୟଟିରେ ଲିପିବଦ୍ଧ ହୋଇଛି । ବାଲେଶ୍ୱର ସହର ଏବଂ ଆଖପାଖ ଅଞ୍ଚଳର କାବ୍ୟାତ୍ମକ ଭୂଗୋଳ ଓ କିମ୍ବଦନ୍ତୀମୂଳକ ଉଲ୍ଲେଖ କରିଥାରେ କବି ଅନ୍ୟମାନଙ୍କ ମନରେ ସହଜ ବିଶ୍ୱାସର ଏକ ବାତାବରଣ ସୃଷ୍ଟି କରିପାରିଛନ୍ତି । ପାଶ୍ଚାତ୍ୟ ଆହରଣ, ଅନ୍ତରାଳରେ ରହିଯାଇଛି । ମାତ୍ର ସୁନହଟ ଗ୍ରାମର ଉତ୍ତର ତଟରେ ଅବସ୍ଥିତ 'ଉଷାମେଢ଼' ବା 'ଉଷା ମଣ୍ଡପ'—ଉଷା-ଜୟନ୍ତଙ୍କର ସମାଧିସ୍ଥଳ ବୋଲି କବି ନୂଆ କିମ୍ବଦନ୍ତୀଟିଏ ସୃଷ୍ଟିକରି ଦେଇଛନ୍ତି । ସାଧାରଣରେ ଏହା କବିଙ୍କର ଚମତ୍କାର-କର୍ମ ବୋଲି ବିବେଚିତ ହୋଇପାରେ ମାତ୍ର ଜଣେ ଜୀବନ-ଜିଜ୍ଞାସୁ ଆଖିରେ ଦେଖିଲେ ଉଷା ଚରିତ୍ରରେ ନିହିତ ଶୌର୍ଯ୍ୟ ଓ ସୌନ୍ଦର୍ଯ୍ୟର ସମନ୍ୱୟ ଅଂଶଟି ହେଉଛି କବିଙ୍କ ମନନ-ଶକ୍ତିର ଦ୍ୟୋତକ । ଉଷା କାବ୍ୟର ପୂର୍ବବର୍ତ୍ତୀ ରଚନାମାନଙ୍କ ତୁଳନାରେ କବି ଏଠି ଭାବନା ସ୍ତରରେ ଆଉଏକ ପାହାଚ ଉପରକୁ ଉଠିଥିବା ଲକ୍ଷିତ ହୁଏ ।

ଉଷା କାବ୍ୟ ରଚନାରେ ଏକ ବ୍ୟକ୍ତିଗତ ଘଟଣାର ପ୍ରଭାବ କବି ମନକୁ କମ୍ପିତ ଭାବାବିଷ୍ଟ କରିଥିବା ମଧ୍ୟ ଜଣାଯାଇଥାଏ । ରାଧାନାଥଙ୍କର କନିଷ୍ଠପୁଅ ଭାଇ, ଅବିନାଶ ଚନ୍ଦ୍ର, ବିବାହ ରାତି ପାହାନ୍ତାକୁ ବିସୂଚିକା ରୋଗରେ ମୃତ୍ୟୁବରଣ କରିଥିଲେ । କନିଷ୍ଠଙ୍କର ଦୁଃଖ ଘୁଞ୍ଚେଇବା ପାଇଁ ରାଧାନାଥ ଖୁବ୍ ଯତ୍ନ କଲେ, ଦୁଇବର୍ଷ ଧରି ସାନ୍ତ୍ୱନା ଓ ପ୍ରବୋଧନା ଦେଲେ । ତାଙ୍କ ମନକୁ କୌଣସି ମତେ ସାଧାରଣ କର୍ମରେ ପ୍ରବୃତ୍ତ କରେଇବା ପାଇଁ ଖୁବ୍ ଚେଷ୍ଟା କଲେ ସେ । ମାତ୍ର ସବୁ ବିଫଳ ହେଲା । ଅବିନାଶ ଚନ୍ଦ୍ରଙ୍କର ଏଇ ଦୁର୍ଘଟଣା ରାଧାନାଥଙ୍କୁ ଗଭୀର ଭାବେ ସ୍ପର୍ଶ କରିଥିଲା; ଏଇ ଘଟଣାର ଛାଇ ଉଷା କାବ୍ୟ

ଅନ୍ତରାଳରେ ପଡ଼ିଥିଲା । ତେବେ ଏଥିରୁ ବୁଝାଯାଇପାରେ ଯେ ଉଷା-ଜୟନ୍ତଙ୍କର ପ୍ରଣୟ ଅନ୍ତରାଳରେ ଅବିନାଶ ହିଁ ଜୀବିତ । ରାଧାନାଥଙ୍କ କବି-ଶକ୍ତିକୁ ଚିହ୍ନିବା ପାଇଁ ଏଇ ଘଟଣା ସେତେ ଉପଯୋଗୀ ନୁହେଁ; ଉଷା-ଚରିତ୍ର ଚିତ୍ରଣରେ ଥିବା ଜୀବନ-ଦୃଷ୍ଟି ହିଁ ବିଶେଷ ମୂଲ୍ୟବାନ । କବିଙ୍କ ଭାବନାର ଉତ୍ତରଣ ବା ଅବରୋହଣର ନମୁନା ଜାଣିବା ଏଥିରୁ ସମ୍ଭବ ।

ଜୀବନ ପ୍ରତି କବିଙ୍କର ଗଭୀର ଅନୁରାଗ ଏବଂ ଏକ କଳାତ୍ମକ ପରିପାଟୀରେ ଜୀବନର ନିଛକ ବାସ୍ତବତାକୁ ପ୍ରତିଫଳିତ କରିବା ଲାଗି ଆତୁର ପ୍ରୟତ୍ନ ହୁଏତ ସୃଷ୍ଟି କରେ ପାର୍ବତୀ (୧୮୯୦) କାବ୍ୟ । ଏହି କାବ୍ୟ ସମ୍ବଲପୁର ହିତୈଷିଣୀରେ ଧାରାବାହିକ ଭାବରେ ପ୍ରକାଶ ପାଇଥିଲା (୧୮୯୦ ଅଗଷ୍ଟ ୧୩—୧୮୯୦ ଡିସେମ୍ବର ୧୦) । ପରେ ଏହା ବାମଣ୍ଡା ରାଜା ସାର୍ ବାସୁଦେବ ସୁଢ଼ଳ ଦେବଙ୍କ ଅର୍ଥ ସାହାଯ୍ୟରୁ ଜଗନ୍ନାଥ ବଲ୍ଲଭ ପ୍ରେସରୁ ପୁସ୍ତକ ଆକାରରେ ପ୍ରକାଶିତ ହେଲା (୧୮୯୧) । ଅନ୍ୟାନ୍ୟ କାବ୍ୟ ମାନଙ୍କ ପରି କବି ଏହି କାବ୍ୟଟିର କଥାବସ୍ତୁକୁ ମଧ୍ୟ ପାଶ୍ଚାତ୍ୟ ସାହିତ୍ୟରୁ ଆହରଣ କରି ସ୍ୱଦେଶର ଇତିହାସ ଓ ଭୌଗୋଳିକ ପରିବେଶରେ ଆରୋପ କରିଥିଲେ ।

ପାର୍ବତୀ କାବ୍ୟର କଥାଭୂମି ଅନ୍ତରାଳରେ ଆସ୍କାଇଲସ୍‌ଙ୍କ ଆଗାମେମ୍‌ନନ୍ ଓ ସେକ୍ସପିଅରଙ୍କ ହାମଲେଟ୍ ନାଟକର ପ୍ରଭାବ ପ୍ରତିଫଳିତ ହୋଇଥିବା ଜଣାଯାଏ । ଆଗାମେମ୍‌ନନ୍, ନାଟକର ଟ୍ରୟ ଅଭିଯାନ ଘଟଣା ପାର୍ବତୀ କାବ୍ୟର କଥାନକକୁ ପ୍ରଭାବିତ କରିଅଛି । ଗଙ୍ଗେଶ୍ୱରଙ୍କ ଅଭିଯାନ ଓ ଦୁର୍ଗ ଅବରୋଧ ପ୍ରସଙ୍ଗ ରାଜା ଆଗାମେମ୍‌ନନ୍‌ଙ୍କର ଟ୍ରୟ ଅଭିଯାନ ପ୍ରେରଣାରୁ ଉତ୍ପନ୍ନ ।

ଆସ୍କାଇଲସ୍‌ଙ୍କ ଓ୍ୱାଚମେନ୍ ତୁଲ୍ୟ ରାଧାନାଥଙ୍କ କଞ୍ଚୁକୀ । କାବ୍ୟ ନାଟିକାଟିରେ ଥିବା ବିଜୟ ବହ୍ନିର ଗତିକ୍ରମ ବର୍ଣ୍ଣନା ରାଧାନାଥଙ୍କ କବି ମନକୁ ନୂତନ ପ୍ରେରଣାରେ ମୁଗ୍‌ଧ କରିଛି । ଓଡ଼ିଶାର ଭୌଗୋଳିକ ପରିବେଶରେ ବିଜୟ ବହ୍ନିର ଯାତ୍ରା ପଥକୁ ଟାଣି ନେଇଛନ୍ତି କବି ।

ରାଜା ଗଙ୍ଗେଶ୍ୱରଙ୍କ ଗୋପନ ପାପ ଓ ହତ୍ୟା ଘଟଣାକୁ ବ୍ୟକ୍ତ କରିବା ପାଇଁ ହେମଲେଟ୍ ଅନୁଯାୟୀ ପାର୍ବତୀ କାବ୍ୟରେ ପ୍ରେତ ମୂର୍ତ୍ତିର ପରିକଳ୍ପନା

କରାଯାଇଛି । ପ୍ରେମମୁଖରେ ସଂଳାପ ଦେଖି ବିଦେଶୀ କଥୋପକଥନ, କଞ୍ଚୁକୀରୁ ଶୁଭ ଦର୍ଶନ ଇତ୍ୟାଦି ରାଧାନାଥ ସେକସ୍‌ପିଅରଙ୍କ ହାମ୍‌ଲେଟ୍‌ ନାଟକରୁ ଆହରଣ କରିଛନ୍ତି ।

କାବ୍ୟର ଚରିତ୍ରମାନଙ୍କୁ ମାଦଳା ପାଞ୍ଜିରୁ ସଂଗ୍ରହ କରାଯାଇଛି । କେତୋଟିଙ୍କୁ କବି ନୂତନ ଭାବେ କାବ୍ୟରେ ସଂଯୋଜିତ କରିଛନ୍ତି । ଗଙ୍ଗେଶ୍ୱର ଏକଜାତ ଇତ୍ୟାଦିଙ୍କ ନାମ ମାଦଳା ପାଞ୍ଜି ତଥ୍ୟସମର୍ଥିତ । ପାର୍ବତୀ, କୌଶଲ୍ୟା ଓ ଅନ୍ନପୂର୍ଣ୍ଣା ନାମ ସଂପର୍କରେ ଇତିହାସ ନୀରବ । ରତ୍ନପୁର ସହିତ ଗଙ୍ଗେଶ୍ୱରଙ୍କ ଯୁଦ୍ଧ ଓ କୌଶଲ୍ୟା-ଗଙ୍ଗ ପୁଷ୍କରିଣୀ ଖୋଳା ବ୍ୟାପାର ସମ୍ପର୍କରେ ସୂଚନା ମାଦଳାପାଞ୍ଜିରୁ ମିଳିଥାଏ ।

ମାଦଳା ପାଞ୍ଜିକୁ ଯଦି ଇତିହାସ ବୋଲି ଧରାଯାଏ ତାହେଲେ କଥିତ ଚରିତ୍ରମାନେ ଇତିହାସର ବ୍ୟକ୍ତି ହୋଇପାରନ୍ତି । ମାତ୍ର ମାଦଳା ପାଞ୍ଜିର ଉପାଦାନକୁ ଇତିହାସର ସତ୍ୟରୂପ ବୋଲି ଐତିହାସିକ ମାନେ ଉପଲବ୍ଧି କରନ୍ତି ନାହିଁ । ତେଣୁ ଏମାନେ ଯେ ଇତିହାସର ଜଣେ ଜଣେ ବିବାଦ-ଶୂନ୍ୟ ବ୍ୟକ୍ତିତ୍ୱ, ଏକଥା କୁହାଯାଇ ନପାରେ । ପ୍ରସଙ୍ଗଟି ମାଦଳା ପାଞ୍ଜିରୁ ନିଆଯାଇ ଆହରଣର ସମନ୍ୱୟରେ ଯେଉଁ ରୂପ ନେଇଛି ତାହାକୁ ଆଲୋଚକମାନେ ନୀତିବାଦୀର ଦୃଷ୍ଟି-କୋଣରୁ ସହଜ ଭାବନାରେ ଗ୍ରହଣ କରି ପାରିନଥିଲେ । ଏହି କାବ୍ୟକୁ ଜାତୀୟ କଳଙ୍କ ବୋଲି ଅନେକ ଆଖ୍ୟାୟିତ କରିଥିଲେ । କିନ୍ତୁ ଏ ସମ୍ପର୍କରେ ଡକ୍ଟର କୃଷ୍ଣଚନ୍ଦ୍ର ପାଣିଗ୍ରାହୀଙ୍କର ମତ ହେଲା, "ମାଦଳା ପାଞ୍ଜିର ଅସତ୍ୟ ସମ୍ବନ୍ଧରେ ଦୃଢ଼ ମତ ପ୍ରକାଶ କରିବାର ବ୍ୟକ୍ତି ଓଡ଼ିଶାରେ କମ ଦେଖାଯାନ୍ତି । ମାତ୍ର ତାର ମୂଲ୍ୟ ଏହିପରି ଭାବରେ ବୃଦ୍ଧି କରିବା ପାଇଁ ବହୁବ୍ୟକ୍ତି ଅଛନ୍ତି । ଏପରି ସ୍ଥଳରେ ମାଦଳା ପାଞ୍ଜିକୁ ଯଦି ଜାତୀୟ ଇତିହାସ ବୋଲି କୁହାଯାଏ ତେବେ ତାହାରି ଅବଲମ୍ବନରେ ଲିଖିତ ପାର୍ବତୀ କାବ୍ୟକୁ ଜାତୀୟ କଳଙ୍କ ବୋଲି କହିବାର କାରଣ ନାହିଁ ।" †

କାବ୍ୟରେ କେବଳ ଐତିହାସିକ ଶୁଦ୍ଧତା ସୃଷ୍ଟି କରିବା କବିଙ୍କର ଲକ୍ଷ୍ୟ ନୁହେଁ । ତେଣୁ କବି ଇତିହାସ ଅପେକ୍ଷା ଜୀବନ ଓ ଜୀବନପ୍ରତି ପ୍ରିୟଭାବନା ପୋଷଣ କରୁଥିଲେ । ଜୀବନରେ ପାପ ଓ ପୁଣ୍ୟର ସଂକ୍ରମଣ

---

† ଡକ୍ଟର କୃଷ୍ଣଚନ୍ଦ୍ର ପାଣିଗ୍ରାହୀ—ପ୍ରବନ୍ଧ ମାଳଞ୍ଚ, ପୃଷ୍ଠା ୫୭ । ୫୭; କଟକ ୧୯୭୨ ।

ଭିତରୁ ପୁଣ୍ୟ ପାଇଁ ସୂଚନାତ୍ମକ ନିର୍ଦ୍ଦେଶ ତାଙ୍କ କାବ୍ୟରୁ ମିଳୁଥିଲା । ପାପର ଉଲ୍ଲେଖ ଦେଇ ନୀତି ଧର୍ମକୁ ସମାଜରେ ପ୍ରତିଷ୍ଠିତ କରିବା ଥିଲା ତାଙ୍କର ଉଦ୍ଦେଶ୍ୟ । ପ୍ରତ୍ୟକ୍ଷ ଭାବରେ ସେ ପୁଣ୍ୟର ମହତ୍ତ୍ୱ ଘୋଷଣା କରିନାହାନ୍ତି ବରଂ ପରୋକ୍ଷ ଭାବରେ ପାର୍ବତୀ କାବ୍ୟରେ କୌଶଲ୍ୟା ଓ ପାର୍ବତୀ ଚରିତ୍ର ଚିତ୍ରଣ କରିବାରେ ପୁଣ୍ୟ ବୋଧର ଉଚ୍ଚ ମାନକୁ ପ୍ରକାଶ କରିଛନ୍ତି । କାବ୍ୟର ଏହି ଅନ୍ତଃ ଚେତନାକୁ ନ ବୁଝି ବିଭିନ୍ନ ମହଲରୁ କାବ୍ୟ ଓ କବିଙ୍କ ପ୍ରତି ପ୍ରତିବାଦ ପ୍ରକାଶ ପାଇଥିଲା । ଏହି କାବ୍ୟଟିକୁ ସାମାଜିକ, ଐତିହାସିକ ଓ ଜାତୀୟ କଳଙ୍କ ବୋଲି କୁହାଯାଇଥିଲା । ମାତ୍ର କଳାଦୃଷ୍ଟିରୁ ଦେଖିଲେ ରାଧାନାଥଙ୍କର ଏହି କାବ୍ୟ ଯେଉଁ ମର୍ଯ୍ୟାଦା ପାଇବା ଯୋଗ୍ୟ, ଅଜ୍ଞତା ବଶତଃ ଲୋକେ ତାହା ଦେଇ ପାରିନଥିଲେ ।

ରମଣୀୟ କଳାରେ ଯେତେ କଳଙ୍କ ଲାଗିଲେ ବି ତାହା ସୁନା ପରି ଉଜ୍ଜ୍ୱଳ ରହେ; ଠିକ ସେମିତି ମୂଲ୍ୟ ପାଇଲା ପାର୍ବତୀ । ଓଡ଼ିଶାର ଭବିଷ୍ୟତ ପାଠକଗଣ ଏହାକୁ ଜାତୀୟ ଜୀବନର ଏକ କଳଙ୍କ ବୋଲି ନଭାବି ଜୀବନର ସତ୍ୟ ଘଟିତ ଏକ ସାଧାରଣ ଘଟଣା ଜ୍ଞାନରେ ଉପଯୁକ୍ତ ମୂଲ୍ୟ ଦେଇଥିଲେ । ପାର୍ବତୀ କାବ୍ୟରେ ଯେଉଁ ଘଟଣାର ଉଲ୍ଲେଖ ଅଛି ତାହା କଣ ମର୍ତ୍ତ୍ୟରେ ଅସମ୍ଭବ କି ? ଯଦି ମର୍ତ୍ତ୍ୟରେ ଏପରି ପାପ ସମ୍ଭବ ତାହାହେଲେ ଓଡ଼ିଶାର କବି ସେପରି ଜଘନ୍ୟ ପାପର ଅବତାରଣା କରି ପାପ ପାଇଁ ଶାସ୍ତି ବିଧାନ କରାଇ ସତ୍ୟ ଓ ନୀତିକୁ ଜଗତ ସମ୍ମୁଖରେ ପ୍ରତିଷ୍ଠା କରିବା ଲାଗି ଯତ୍ନ କରିବା ତ କମ୍ ଗୌରବର କଥା ନୁହେଁ ।

ରାଧାନାଥ ପାର୍ବତୀ କାବ୍ୟ ରଚନା କଲେ; ଉଦ୍ଦେଶ୍ୟ ନଥିଲା କୌଣସି ଜାତିକୁ ଆକ୍ଷେପ କରିବା । ସେ ଘୃଣା କରୁଥିଲେ ପାପକୁ, କୌଣସି ଜାତିକୁ ନୁହେଁ । କବି ବିଶ୍ୱାସ କରୁଥିଲେ ଯେ କୌଣସି କାବ୍ୟ ଯଦି ପାପ ପୁଣ୍ୟର ବିଗ୍ରହ କରୁଥାଏ, ନୀତିର ପରୋକ୍ଷ ସଂକେତ ଦେଉଥାଏ, କିଂବା ଜୀବନକୁ ଅନ୍ଧାର ଓ ଆଲୋକ-ଉଭୟ ପଥରୁ ପରଖି ଦେଖୁଥାଏ— ତନ୍ମଧ୍ୟରେ ଯେଉଁ ଜାତିର ବା ଅଞ୍ଚଳର ଚରିତ୍ର ଥା'ନ୍ତୁ ନା କାହିଁକି ତାହା କେବଳ ସେହି ଜାତିର ଭୌଗୋଳିକ ଅବସ୍ଥିତି ମଧ୍ୟରେ ସୀମାବଦ୍ଧ ହୋଇ ରହେ ନାହିଁ ବରଂ ବିଶ୍ୱମାନବଙ୍କ ଲାଗି ତାହା ଉନ୍ମୁଖ ହୋଇ ରହେ ।

ଏହି ଧାରଣା ଉପରେ ଆସ୍ଥା ରଖି କବି ତାଙ୍କ କାବ୍ୟର ଯେଉଁ 'ଭଗ୍ନଶିର-ମାନଙ୍କୁ ପାପର ଅନ୍ଧକାର ଭିତରେ ଆଣ୍ଠୁ ପାଣ୍ଠୁ ହୋଇଥିବା ଅନୁଭବ

କରିଛନ୍ତି, ସେମାନଙ୍କୁ ଯଥା ସମ୍ଭବ ମଙ୍ଗଳୋଦକ ଦେଇ ପବିତ୍ର କରିଛନ୍ତି। ନୈତିକ ଆଲୋକରେ ପୁନର୍ଜୀବିତ କରି ସେମାନଙ୍କୁ ମୁକ୍ତ କରି ଦେଇଛନ୍ତି। ଗଙ୍ଗେଶ୍ୱରଙ୍କର ଜୀବନାବସାନରେ ଏହି ମୁକ୍ତିର ଆଭାସ ନିହିତ। ସେହିପରି ନନ୍ଦିକା ମଧ୍ୟ ଜୀବନର ମୁକ୍ତିର ଆନନ୍ଦ ଉପଭୋଗ କରିଛି। ଉଚ୍ଛୃଙ୍ଖଳ ପ୍ରେମ ବାସନାରୁ କବି ତାକୁ ମୁକ୍ତ କରି ଦେଇଛନ୍ତି। ସଂଯମ ଶୃଙ୍ଖଳା ହିନତାର ଉପଯୁକ୍ତ ଶାସ୍ତି ତାକୁ ମିଳିଛି। ଯୌବନର ଉଦ୍ଦାମତାରେ ଅନ୍ଧ କନ୍ୟା ନନ୍ଦିକା ଆତ୍ମ-ମୃତ୍ୟୁର ପରିଣାମ ଭୋଗ କରିଛି। ନନ୍ଦିକା ଜୀବନ ପ୍ରତି କବିଙ୍କର ଏହା ଏକ ପରୋକ୍ଷ ନିର୍ଦ୍ଦେଶ ନୁହେଁ ବରଂ ସମଗ୍ର ମର୍ତ୍ତ୍ୟର ଜୀବନର ଆଦର୍ଶ ଓ ସଂଯମ ହୀନତା ପ୍ରତି ଏହା ଏକ ସଂକେତ ବାଣୀ।

ଅତଏବ ଏହା ସ୍ପଷ୍ଟ ଯେ କବିଙ୍କର କାବ୍ୟକୃତିରେ ବିଚ୍ୟୁତିର ଅନ୍ତରାଳରେ ନୀତି ଏବଂ ପାପର ଅନ୍ତରାଳରେ ପୁଣ୍ୟର ପଦଧ୍ୱନି ଅନ୍ୱେଷୀଙ୍କୁ ଉପଲବ୍ଧ ହୋଇଥାଏ। ପୁଣ୍ୟର ସୌଧ ତୋଳିବା ପାଇଁ ସେ ପାପକୁ ଭୂମିକା ରୂପେ ଗ୍ରହଣ କରିଛନ୍ତି। ବରଂ ସେ ନାସ୍ତି ମୂଳକ ଉପକ୍ରମ ବା ନେଗେଟିଭ ଏପ୍ରୋଚ୍ ମାଧ୍ୟମରେ ଅସ୍ତିବୋଧର ଏକ ଦୃଢ଼ ଆବହାଓ୍ୱା ସୃଷ୍ଟି କରିବା ପାଇଁ ଯତ୍ନବାନ ହୋଇଛନ୍ତି। କାବ୍ୟରେ ସେ ଯେଉଁ ସତ୍ୟର ପ୍ରତିମୂର୍ତ୍ତି ଅଙ୍କନ କରିଛନ୍ତି ତାହା ମାନବିକ ସତ୍ୟର ମୂଲ୍ୟବୋଧକୁ ପରିପୂର୍ଣ୍ଣ କରି କ୍ରମେ କ୍ରମେ ମାନବୋତ୍ତର ଜଗତକୁ ସ୍ପର୍ଶ କରିଛି।

କଳାର ଶ୍ରେଷ୍ଠ ଧର୍ମକୁ କବି ରକ୍ଷା କରି ଅଛନ୍ତି। ମାନବ ଜୀବନର ଏବଂ ତାର ସତ୍ୟତାକୁ କବି ଅସ୍ୱୀକାର କରିପାରି ନାହାନ୍ତି। କବି-ଜିଜ୍ଞାସାରେ ବିଶ୍ୱାସ କରାଯାଇଥାଏ ଯେ, "ମାନବ ଜୀବନ ମୂଳରେ ଯେଉଁ ଗୁଢ଼ ନୀତି ରହିଛି, ଶ୍ରେଷ୍ଠ କଳା ତାକୁ କୌଣସି କ୍ରମେ ଛାଡ଼ି ଦେଇପାରେନାହିଁ। କାବ୍ୟ ବିଭିନ୍ନ ଘଟଣାସ୍ଥଳରେ ସେ ମୂଳନୀତିର ବ୍ୟାଖ୍ୟା ବା ସମାଲୋଚନା ମାତ୍ର। ସେହି ଚରମ ଲକ୍ଷ୍ୟର ଓ ଆଦର୍ଶର ଅନୁପସ୍ଥିତି ଯେଉଁ ସ୍ଥଳରେ ଆମ୍ଭେମାନେ ଦେଖୁଁ, ତାକୁ ସାହିତ୍ୟ କହିବା ବାହୁଲ୍ୟ। ସଂଯତ ଓ ଶୃଙ୍ଖଳାବଦ୍ଧ ଜୀବନର ଯେ ଆନନ୍ଦ, ତାକୁ ସାହିତ୍ୟର ଆଦର୍ଶ ରୂପେ ଧରିନେଉଁ।" †

---

† ଶ୍ରୀ ବୈକୁଣ୍ଠନାଥ ପଟ୍ଟନାୟକ—କଳାପୁରୁଷ—ଶ୍ରୀ ରାଧାନାଥ ଜୀବନୀ—ପୃଷ୍ଠା ୮୮, କଟକ, ୧୯୪୯

ଏଇ କଳା-କମନୀୟତା ଭିତରେ କବି ଆଦର୍ଶର ମହନୀୟତାକୁ ଅକ୍ଷୁଣ୍ଣ ରଖିବା ପାଇଁ ଚେଷ୍ଟା କରିଛନ୍ତି । ତେଣୁ ତାଙ୍କ କାବ୍ୟ ସାହିତ୍ୟରେ ସତ୍ୟ ସହିତ ଶିବ ଓ ସୁନ୍ଦରର ସମନ୍ୱୟ ସ୍ଥାପିତ ହୋଇ ପାରିଛି । କବିକୃତିରେ ଯେଉଁ ସତ୍ୟର ପ୍ରତିଫଳନ ଘଟିଛି ତାହା ହେଉଛି ମାନବିକ ସତ୍ୟର ସ୍ୱାଭାବିକ ରୂପ । ଏହି ସତ୍ୟର ଭୂମିକା ଉପରେ କବି ଶିବର ସଙ୍କେତ ଧ୍ୱନି ଉଚ୍ଚାରଣ କରିଛନ୍ତି । ସତ୍ୟ ଓ ଶିବକୁ ଏକାଠି କରି ସୁନ୍ଦର ସହିତ ମିଳେଇ ଦେଇଛନ୍ତି । ତାଙ୍କର କଳା କ୍ରମଶଃ ସୁନ୍ଦରରେ ପରିଭୂତ ହୋଇଛି ।

କବିଙ୍କର ସୌନ୍ଦର୍ଯ୍ୟ ଉପାସନା ଦିଗନ୍ତ ପ୍ରସାରୀ । ଏହା କୌଣସି ଜଗତକୁ ବାଦ ଦେଇନାହିଁ; କି ପ୍ରାକୃତିକ କି ମାନବିକ ସବୁ ଜଗତର ପ୍ରାଣବନ୍ତ ଛାୟାଛବି କବି ଅଙ୍କନ କରିଛନ୍ତି । ଚିଲିକା ( ୧୮୯୧ )ରେ ଏହି ସୌନ୍ଦର୍ଯ୍ୟ ଉପାସନାର କାବ୍ୟଶ୍ରୀ ପରିଲକ୍ଷିତ ହୁଏ । ଏହି କାବ୍ୟଟି 'ଉତ୍କଳ ପ୍ରଭା' ପତ୍ରିକାର ଗୋଟିଏ ସଂଖ୍ୟାରେ ପ୍ରକାଶିତ ହୋଇଥିଲା । କବିଙ୍କର ସୌନ୍ଦର୍ଯ୍ୟ କଳ୍ପନାର ବିଭିନ୍ନ ଉପାଦାନ ଓ ତାର ରସାଲେଖ୍ୟ ଏହି କାବ୍ୟର ଅନ୍ତର୍ଭୂମିରେ ପ୍ରମୂର୍ତ୍ତି ହୋଇଅଛି ।

ଚିଲିକାର ଭୌଗୋଳିକ ପରିବେଶ କବି ଆଖିକୁ ପ୍ରଭାବଶାଳୀ ଆକର୍ଷଣ ଯୋଗାଇଛି । ଜଣେ ବାସ୍ତବ ମଣିଷର ଆଖିନେଇ ସେ ଚିଲିକାକୁ ଦେଖି ନାହାନ୍ତି । ସୌନ୍ଦର୍ଯ୍ୟ ପ୍ରାଣ କବିର ଦୃଷ୍ଟି ଦେଇ ସେ ଚିଲିକାର ବ୍ୟକ୍ତି ସତ୍ତାକୁ ଉପଲବ୍ଧି କରିଛନ୍ତି । ଚିଲିକାର ସୌନ୍ଦର୍ଯ୍ୟ ପ୍ରମୁଦିତ ଆତ୍ମରୂପ କବି ଆଖିକୁ ଯେମିତି ବଡ଼ ସେମିତି ଦିଶିଛି ତାର ପରିବେଶ । ଚିଲିକା କ୍ଷେତ୍ରର ପରିକ୍ରମା କରୁଁ କରୁଁ କବି ଉତ୍କଳର କେତେକ ଭୌଗୋଳିକ ଓ ପୌରାଣିକ ଅବସ୍ଥିତିକୁ ଉପଲବ୍ଧି କରିଛନ୍ତି । ଚିଲିକାର ପ୍ରାକୃତିକ ଶୋଭା ସହିତ ଭାରତର ଅନ୍ୟାନ୍ୟ ସୌନ୍ଦର୍ଯ୍ୟ ସ୍ଥଳୀର ଏକ ତୁଳନାତ୍ମକ ବିଚାର କରିବାର ସୁଯୋଗ ପାଇଛନ୍ତି କବି ।

କବି ଚିଲିକାକୁ ଦେଇଛନ୍ତି ଜୀବନ୍ତ ବ୍ୟକ୍ତିତ୍ୱର ଭୂମିକା । ଏହି ଚିଲିକା ଉତ୍କଳୀୟ ଜୀବନର ଗତିଧାରା ସହିତ ଆପଣାକୁ ମିଶେଇ ଦେଇଛି । କବି ଯଦି ଏହାକୁ କେବଳ ପ୍ରକୃତି-କନ୍ୟା ରୂପେ ଅନୁଭବ କରି ଅଚଳା ସୁନ୍ଦରୀ ପ୍ରତିମାର ମର୍ଯ୍ୟାଦା ଦେଇଥାନ୍ତେ ତାହାହେଲେ ପ୍ରସଙ୍ଗ ଅନୁମତେ ତାହାକୁ ତ୍ରିଗୁଣାତ୍ମିକା ( ସତ୍ତ୍ୱ, ରଜ, ତମ ) କରି ଗଢ଼ି ତୋଳିବାର ଅବକାଶ ନଥାନ୍ତା ।

କବି କଅଣ ବା ଦେଖନ୍ତେ ସ୍ୱଦେଶ ଶତ୍ରୁମାନଙ୍କ ସହିତ ସଂଗ୍ରାମରତ ଚିଲିକାର ରୁଦ୍ରମୂର୍ତ୍ତି କିମ୍ବା କପରି ବା ଅନୁଭବ କରନ୍ତେ ଚିଲିକାକୁ ଇତିହାସର ରଙ୍ଗସ୍ଥଳୀ ବୋଲି ?

ଯେଉଁ ଚିଲିକାର କାବ୍ୟ ମୂର୍ତ୍ତି କବି ଅଙ୍କନ କରିଛନ୍ତି ତାହା ଉତ୍କଳ ଭୁବନେ ଶୋଭାର ଭଣ୍ଡାର ହେଲେ ବି ଜାତି ଓ ବ୍ୟକ୍ତି ଜୀବନକୁ ପରିପ୍ଳୁତ ବା ପ୍ରଭାବିତ କରିବାରେ ଖୁବ୍ ଶକ୍ତିଶାଳୀ ବିବେଚିତ ହୋଇଛି । ଭାବୁକର ସୂକ୍ଷ୍ମ ଦୃଷ୍ଟି ଥିଲେ ଏହାର ଚିତ୍ତୋଲ୍ଲାସକ ସ୍ନିଗ୍ଧ ରୂପକୁ ଅନୁଭବ କରିଯାଇ ପାରେ ।

କବି ଭାବୁକ ମାନସ ନେଇ ଚିଲିକାକୁ ଦେଖିଛନ୍ତି, ତେଣୁ ଚିଲିକାର ଭାବମୂର୍ତ୍ତି କବିଙ୍କ ମନରେ କମ୍ପନ୍ ଦୋଳନ ସୃଷ୍ଟି କରିଛି । ବିଭିନ୍ନ ଛନ୍ଦରେ କବି ଭାବୁକ ମାନସର ପ୍ରତିକ୍ରିୟାକୁ ପ୍ରକାଶ କରିଛନ୍ତି । ଏହା ଗୋଟିଏ କ୍ଷେତ୍ରରେ ସୀମାବଦ୍ଧ ହୋଇ ରହିନାହିଁ; ପ୍ରାକୃତିକ ଜଗତରୁ ଜୀବ ଜଗତ ପର୍ଯ୍ୟନ୍ତ ଏହି ଭାବୁକତାର ପ୍ରସାରଣ ଘଟିଛି । ଏହାରି ଭିତରେ ଉକୁଟି ଉଠିଛି ଇତିହାସ, କିମ୍ବଦନ୍ତୀ, ପୁରାଣ, ଭୌଗୋଳିକ ପ୍ରକୃତି ଏବଂ ବ୍ୟକ୍ତି ଓ ଜାତୀୟ ଜୀବନର ପ୍ରତିଛବି । କବି ଆପଣା ଜୀବନର ଦୃଷ୍ଟିକୋଣ ଓ ଅନୁଭବବୋଧକୁ ମଧ୍ୟ ଏଠି ଉଲ୍ଲେଖ କରିବାର ସୁଯୋଗ ପାଇଛନ୍ତି । କବି ଯେ ସୌନ୍ଦର୍ଯ୍ୟ ପିପାସୀ ଏବଂ ଏହି ସୌନ୍ଦର୍ଯ୍ୟ ଉପାସନା ନିମନ୍ତେ ତାଙ୍କ ଚିତ୍ତ ଯେ ସତତ ବ୍ୟାକୁଳ ତାହା କବି ଆତ୍ମ ବିବୃତି ମାଧ୍ୟମରେ ଏଠାରେ ଉଲ୍ଲେଖ କରିଛନ୍ତି । ବାସ୍ତବ ଜୀବନ ଅପେକ୍ଷା ଏହି ସୌନ୍ଦର୍ଯ୍ୟ ଜୀବନର ଉପାସନା ଅତି ଲୋଭନୀୟ । ତେଣୁ କବି ତାଙ୍କର ଶେଷ ଜୀବନ ଚିଲିକାର ପଶ୍ଚିମ ତୀରରେ ଅତିବାହିତ କରିବା ନିମନ୍ତେ ଇଚ୍ଛା କରିଛନ୍ତି । କିନ୍ତୁ ବାସ୍ତବତାର ଆଘାତରେ ତାହା ଫଳବତୀ ହୋଇପାରିନାହିଁ । *

---

* କରିଥିଲି ଆଶା କରିବି ଯାପନ / ତୋ ପଶ୍ଚିମ ତୀରେ ପଶ୍ଚିମ ଜୀବନ
ବିନା ପ୍ରୟାସରେ ସୌନ୍ଦର୍ଯ୍ୟ ପିପାସା / ମେଣ୍ଟିବାର ଥିଲା ତୋହଠାରେ ଆଶା
...କୁଟୀର ବିରଚି ଜଟିଆ ଚରଣେ / କାଟୁଥାନ୍ତି ଆୟୁ ଶେଷ ନିକାଞ୍ଚନେ
ମାତ୍ର ପରିଣାମେ ଭୁସ୍ୱାବାଜିବତ / ଆଶାରେ ସେ ଆଶା ହେଲା ପରିଣତ;
( ରାଧାନାଥ ପଦ୍ୟ-ଗ୍ରନ୍ଥାବଳୀ—ନୂତନ ସଂସ୍କରଣ, ବ୍ରହ୍ମପୁର, ୧୯୭୫—
ପୃଷ୍ଠା—୧୪୮ )

ଏଇ ସୌନ୍ଦର୍ଯ୍ୟ ଲାଳସା ବାଲ୍ୟକାଳରୁ କବିଙ୍କ ମନରେ ଉଦିତ ହୋଇଥିଲା । ତାହା କ୍ରମଶଃ ବଳବତୀ ହୋଇଥିଲା ବିନା ତୃପ୍ତିବାର କିଛି କାରଣ ନଥିଲା । ରାଧାନାଥ ପିତାଙ୍କର ଉପଦେଶ ଅନୁସାରେ ପ୍ରକୃତି ପର୍ଯ୍ୟବେକ୍ଷଣ ଲାଗି ତତ୍ପରତା ଦିଲବରେଙ୍କୁ ଦେଖାଇ ଅସୁଥିଲେ । ବାଲେଶ୍ୱରର ସମୁଦ୍ର ଉପକୂଳକୁ ସେ ବାରମ୍ବାର ଯାଉଥିଲେ, ଅବସ୍ଥାପନ୍ନରେ ସମୁଦ୍ରର ବିବିଧ ଦୃଶ୍ୟ ମନଭରି ଦେଖୁଥିଲେ । ଡେପୁଟି ଇନ୍‌ସପେକ୍ଟର ପଦରେ ଥାଇ, ସମଗ୍ର ଜିଲ୍ଲା ପରିଦର୍ଶନ କରୁଥିଲେ; କଏଣ୍ଟ ଇନ୍‌ସପେକ୍ଟର ଥିଲାବେଳେ ସମଗ୍ର ଓଡ଼ିଶା ଓ କରଦରାଜ୍ୟ ଗୁଡ଼ିକ ପରିଭ୍ରମଣ କରି ଓଡ଼ିଶାର ପ୍ରକୃତି ସମ୍ପର୍କରେ ଧାରଣା ସଂଗ୍ରହ କରୁଥିଲେ । ଓଡ଼ିଶାର ଭୌଗୋଳିକ ଓ ପ୍ରାକୃତିକ ଶୋଭା ବିଭବ ସମ୍ବନ୍ଧରେ ନିଜସ୍ୱ ଧାରଣା ଲାଭ କରିବାର ସୁଯୋଗ କବି ସେତେବେଳେ ପାଇଥିଲେ ।

ଭୂଦେବ ବାବୁଙ୍କ ସହ ସେ ଗୟା ପର୍ଯ୍ୟନ୍ତ ପରିଭ୍ରମଣ କରିଥିଲେ । ଏଇ ପରିଭ୍ରମଣ ତାଙ୍କ ମନକୁ ତୃପ୍ତି ଦେଇ ପାରି ନ ଥିଲା । ସେ ପୁନର୍ବାର ସ୍ୱପନ୍ତରେ ବଙ୍ଗ, ବିହାର, ଅଯୋଧ୍ୟା, ରାଜପୁତନା, ପଞ୍ଜାବ, ଗୁଜରାଟ, ମହାରାଷ୍ଟ୍ର ଏବଂ ମଧ୍ୟପ୍ରଦେଶର କେତେକ ସ୍ଥାନ ପରିଦର୍ଶନ କରି ହିମାଳୟ ଦର୍ଶନ ଲାଳସାରେ ଦାର୍ଜିଲିଙ୍ଗ ଯାଇଥିଲେ । କଣେ ଭାରତୀୟ ହିସାବରେ ଭାରତ ଦର୍ଶନର ସାଧୁ ଇଚ୍ଛାକୁ ରାଧାନାଥ ଜୀବନରେ ଫଳବତୀ କରି ପାରିଥିଲେ । ସେଇସବୁ ପ୍ରାକୃତିକ ଦୃଶ୍ୟ ଦର୍ଶନ କରି କବି ଯେଉଁ ଅନୁଭୂତି ସଂଗ୍ରହ କରିଥିଲେ ତାର ସୃଜନାତ୍ମକ ଅଭିବ୍ୟକ୍ତି ଚିଲିକା ଓ ଅନ୍ୟାନ୍ୟ କାବ୍ୟ-କୃତିରେ ପ୍ରକଟ ହୋଇଥିଲା । କବିଙ୍କର ବ୍ୟକ୍ତି ଜୀବନ ଏପରି ଅନେକ ବିକ୍ଷିପ୍ତ ଘଟଣା ଲିପିରେ କଡ଼ିତ ହୋଇଥିବାରୁ ସେଗୁଡ଼ିକର ଗ୍ରନ୍ଥିପ୍ରତିଫଳନ ରଚିତ କାବ୍ୟାବଳୀରେ ଘଟିବା ସ୍ୱାଭାବିକ । କୌଣସି କ୍ଷେତ୍ରରେ ଏଥିର ଅନ୍ୟଥା ପ୍ରାପ୍ତ ହୋଇ ନାହିଁ କହିଲେ ଚଳେ । ତେଣୁ କୁହାଯାଇପାରେ ଯେ, ରାଧାନାଥଙ୍କର କାବ୍ୟ-କୃତି ହେଉଛି ତାଙ୍କ ଅନୁଭୂତିର ସ୍ୱାକ୍ଷର ।

ଏଇ ଅନୁଭୂତିର ପୂର୍ଣ୍ଣ ପ୍ରକାଶ ଆମେ ଲକ୍ଷ୍ୟ କରୁଁ ମହାଯାତ୍ରା (୧୮୯୧-୯୬) ରଚନାରେ । ମହାକାବ୍ୟଟିର ପ୍ରତି ଛନ୍ଦରେ ଓତପ୍ରୋତ ମନନର ପ୍ରତିଲିପି ମୂର୍ତ୍ତି । କବି ଅନୁଭୂତିର ସ୍ୱଚ୍ଛତା ଏବଂ ଅଭିଜ୍ଞାନର ବିପୁଳତା ଏହାର ବିଭିନ୍ନ ପଙ୍କ୍ତିରେ ପରିଦୃଷ୍ଟ ହୁଏ । କାବ୍ୟ ରଚନା କ୍ରମରେ ରାଧାନାଥଙ୍କର ଅଗ୍ରଗତିର ମୂଲ୍ୟାମୂଲ୍ୟ ମହାଯାତ୍ରାର ପ୍ରକାଶ ଲଗ୍ନକୁ ଅତ୍ୟଧିକ ବୃଦ୍ଧି ପାଇଲା । ପାର୍ବତୀ, ଚିଲିକା ଇତ୍ୟାଦିର ଆତ୍ମପ୍ରକାଶ ବେଳକୁ କବି ପ୍ରତିଭା, ଉଦ୍ଭାବଣର

ପ୍ରଶସ୍ତି ଓ ପ୍ରଶଂସା ଯେତିକି ଲାଭ କରି ଥିଲେ ତାହାର ଅଭିବୃଦ୍ଧି ଘଟିଲା ମହାକାବ୍ୟର ସୃଷ୍ଟି ଫଳରେ ।

କବି-ଶକ୍ତିର ଅସାଧାରଣ ବିଭୂତିଟିକୁ 'ମହାଯାତ୍ରା' ପ୍ରକଟିତ କରିଦେଲା । ଅନ୍ୟାନ୍ୟ କାବ୍ୟ ତୁଳନାରେ ରାଧାନାଥ ଏଠାରେ ଭିନ୍ନ ଏକ ସର୍ଜନା-ଶୈଳୀର ପୋଷକତା କରିଥିଲେ । ପାଶ୍ଚାତ୍ୟ କଥା ବସ୍ତୁଟିକୁ ଦେଶୀୟ ପରିବେଶରେ ଲୋକାନୁକୂଳ ଆରୋପ ଘଟାଇ ରାଧାନାଥ ଯେପରି ଅନ୍ୟାନ୍ୟ କାବ୍ୟମାନଙ୍କର ଜୀବନ୍ୟାସ ସାଧନ କରିଥିଲେ, ଏ କ୍ଷେତ୍ରରେ ତାହାର ବିପରୀତ ଆଭିମୁଖ୍ୟ ପୋଷିତ ହୋଇଥିବା ଲକ୍ଷିତ ହେଲା । ଭାରତୀୟ ଇତିହାସ ଓ ପୁରାଣ ହେଲେ ଏହାର ସନାତନ କଥା ବସ୍ତୁ । ତାହାର ପୁଷ୍କଳ ଭୂମିକା ଉପରେ ଯେଉଁ ମହାକାବ୍ୟର କଳେବର ନିର୍ମିତ ହୋଇଛି ସେଥିରେ ପରିବେଷଣ କଳା ଓ ଅଭିବ୍ୟକ୍ତିର ଧାରାରେ ପାଶ୍ଚାତ୍ୟ ଅନୁସୃତ ତଥା ଆହୃତ ଉପାଦାନର ଦୃଷ୍ଟାନ୍ତ ନିହିତ ।

ରାଧାନାଥ ଏଥିରେ ପାଶ୍ଚାତ୍ୟ ଏପିକ୍ ରଚନା ରୀତି ଅନୁସରଣ କରିଛନ୍ତି । ଆରମ୍ଭରୁ ଇଷ୍ଟ ବନ୍ଦନା ପରିବର୍ତ୍ତେ ବାଗଦେବୀ ସ୍ୱରୂପିଣୀ ଶାରଳାଙ୍କୁ କାବ୍ୟ-ବସ୍ତୁ କଥନ ପାଇଁ ନିବେଦନ କରିଛନ୍ତି । ଏପରି ନିବେଦନ ପାଶ୍ଚାତ୍ୟ କାବ୍ୟାନୁମୋଦିତ । ହୋମାର, ଭର୍ଜିଲ, ଦାନ୍ତେ, ମିଲ୍‌ଟନ ଇତ୍ୟାଦି ତାଙ୍କ କାବ୍ୟରେ କାବ୍ୟଦେବୀଙ୍କୁ ଏପରି ନିବେଦନ ଜଣାଇଛନ୍ତି । ପାଣ୍ଡବମାନଙ୍କ ସମ୍ମୁଖରେ ଅଗ୍ନିଙ୍କର ଆବିର୍ଭାବ, ଗାଣ୍ଡିବ ଧନୁ ଓ ତୂଣଯୁଗ୍ମ ଫେରସ୍ତ ପାଇଁ ଅର୍ଜୁନଙ୍କୁ ତାଙ୍କର ନିର୍ଦ୍ଦେଶ, ସାଗର ବକ୍ଷକୁ ଖଡ଼ଗକ୍ଷେପଣ, ଯୁଧିଷ୍ଠିରଙ୍କୁ ଅଞ୍ଜନ ଦାନ, କ୍ରୋଧ ପୁରୁଷ ଶାକ୍ୟସିଂହଙ୍କର ଆବିର୍ଭାବ କଳି ଅନୁଚରବର୍ଗଙ୍କର ଆଗମନ ଦୃଶ୍ୟ, ଭାରତର ପତିତ ଅବସ୍ଥା ଲକ୍ଷ୍ୟ କରି ମର୍ମପୀଡ଼ାବୋଧ, ଦିଲ୍ଲୀ ନଗରୀ ବର୍ଣ୍ଣନା ଓ ଦିଲ୍ଲୀର ରଣ ଚତ୍ୱରକୁ ଭାରତୀୟ ରାଜ୍ୟମାନଙ୍କରୁ ସୈନ୍ୟମାନଙ୍କର ଆଗମନ ଓ ସେଠାରେ ସେମାନଙ୍କର ସମାବେଶର ଚିତ୍ର ପ୍ରଭୃତିର ପରିବେଷଣରେ ପାଶ୍ଚାତ୍ୟ କାବ୍ୟ ଓ କବିମାନଙ୍କର ଅନୁସୃତ ଥିବା ଜଣାଯାଏ । ସେହିପରି ପାଣ୍ଡବମାନଙ୍କର ତୀର୍ଥାଟନ (ପ୍ରୟାଗ, କାଶୀ, ଅଯୋଧ୍ୟା, ନୈମିଷାରଣ୍ୟ, ଗୟା, ରାଜଗିରି, କାଳୀଘାଟ, ପ୍ରାଗଜ୍ୟୋତିଷପୁର, ଲୌହିତ୍ୟ ପ୍ରଭୃତି) ବର୍ଣ୍ଣନାରେ ମହାଭାରତ ଓ ରାମାୟଣ ସହିତ କବି ସାଦୃଶ୍ୟରକ୍ଷା କରିଛନ୍ତି । କାଳିଦାସଙ୍କ ରଘୁବଂଶ ତ୍ରୟୋଦଶ ସର୍ଗବର୍ଣ୍ଣିତ ପ୍ରୟାଗସ୍ଥ କଳ୍ପବୃକ୍ଷ ବିଷୟ ବର୍ଣ୍ଣନାରେ ମହାଯାତ୍ରା ବର୍ଣ୍ଣନାର ସାମ୍ୟ ନିହିତ ।

ପୁନଶ୍ଚ ମହାକାବ୍ୟଟିର ରଚନାଛନ୍ଦରେ ସନ୍ନିବେଶିତ ବହୁଭିନ୍ନ ପୌରାଣିକ ଓ ଐତିହାସିକ ଉପାଦାନଗୁଡ଼ିକୁ କବି ପ୍ରାଚ୍ୟ ଶାସ୍ତ୍ରମାନଙ୍କରୁ ସଂଗ୍ରହ କରିଛନ୍ତି ।

ସୁକାନ୍ତ ଋଷିଙ୍କ ତପଶ୍ଚରଣ ପ୍ରସ୍ତାବରୁ ମହାନଦୀର ଉତ୍ପତ୍ତି ପ୍ରସଙ୍ଗ 'କପିଳ ସଂହିତା'ରୁ କବି ସଂଗ୍ରହ କରିଥିବା ଅନୁମିତ ହୁଏ । ପାଣ୍ଡବମାନଙ୍କର ବିଭିନ୍ନ ତପୋବନ ପରିଦର୍ଶନ ଏବଂ କବି ଏହାର ବର୍ଣ୍ଣନା କଲାବେଳେ ସଂସ୍କୃତ କବି ଭାସ ଓ କାଳିଦାସଙ୍କର ପଦାଙ୍କ ଅନୁସରଣ କରିଛନ୍ତି । ମାଳଭୂମିର ପ୍ରକୃତିବର୍ଣ୍ଣନାରେ ପ୍ରାଚ୍ୟ ଅନୁସୃତ ପଦ୍ଧତି ମଧ୍ୟ ନୂତନ ସଂଯୋଜନାରେ ବ୍ୟକ୍ତ ହୋଇଛନ୍ତି କବି । କଳି ଆବିର୍ଭାବର ବର୍ଣ୍ଣନାରେ ରାଧାନାଥ ପ୍ରାଚ୍ୟ ଓ ପାଶ୍ଚାତ୍ୟ କବିଙ୍କୁ ସ୍ମରଣ କରିଛନ୍ତି ।

ମିଲ୍‌ଟନ, ସ୍ପେନସରଙ୍କର ରୀତି ଏବଂ ନୈଷଧକାରଙ୍କର ବିଷୟ ସଜ୍ଜା ଅନୁଯାୟୀ ସେ ଏହି ବର୍ଣ୍ଣନାଟିକୁ ପରିକଳ୍ପିତ କରିଛନ୍ତି । ସ୍ଥଳେ ଉକ୍ତ ବର୍ଣ୍ଣନାରେ ନୈଷଧର ପ୍ରତିଫଳନ ମଧ୍ୟ ଲକ୍ଷଣୀୟ । କିନ୍ତୁ କଳିର ଅନ୍ୟ କେତେକ ଅନୁଚର ଯଥା—ମଦ, ଈର୍ଷା, କଳହ, ଆଳସ୍ୟ, ମିଥ୍ୟା, ଇତ୍ୟାଦିଙ୍କୁ କବି ପୂର୍ଣ୍ଣମାତ୍ରାରେ ନିଜ ଅଭିଜ୍ଞାନ ବଳରୁ ପାଶ୍ଚାତ୍ତ୍ୟ ଅନୁଭୂତି ଉପରେ ନିର୍ଭର କରି ବର୍ଣ୍ଣନା କରିଛନ୍ତି ।

ପ୍ରାଚ୍ୟ ଓ ପାଶ୍ଚାତ୍ତ୍ୟ ଉଭୟ କାବ୍ୟ-କଳାର ପ୍ରଭାବ ମହାଯାତ୍ରା ମହାକାବ୍ୟକୁ ପରିପୁଷ୍ଟ କରିଥିଲେ ମଧ୍ୟ ରାଧାନାଥୀ ପ୍ରତିଭାର ପ୍ରକର୍ଷ ଏଥିରେ ପ୍ରକଟିତ ହୋଇଥିଲି । କବି, ବିସ୍ତୃତ କାନଭାସ୍ ଉପରେ ମାନବ ଜାତି ଓ ଦେଶ ଜୀବନର ବିଚିତ୍ର ଭାବ-ରାଗ ପର୍ଯ୍ୟବେକ୍ଷଣ କରିଥିଲେ । ସମାଜ ଓ ମାନବୀୟ କଳଙ୍କର ବିବିଧ ପକ୍ଷ ତେଜସ୍ୱୀନ ଦୂର ଦୃଷ୍ଟି ବଳରେ ଅବଲୋକନ କରି ସେଥିରୁ ଅତିକ୍ରାନ୍ତ ହେବା ଲାଗି କାବ୍ୟିକ ସୂଚନା ମଧ୍ୟ ପ୍ରଦାନ କରିଥିଲେ । ଗୋଟିଏ କଥାରେ କୁହାଯାଇପାରେ, କବି 'ମହାଯାତ୍ରା'ରେ ଭାରତୀୟ ସଂସ୍କୃତିର ମହାଯାତ୍ରାକୁ ହିଁ ପ୍ରତିଫଳିତ କରିଛନ୍ତି; ପୁନରୁତ୍‌ଥାନ ପାଇଁ ଜାତିକୁ ଚେତେଇ ଦେଇଛନ୍ତି । ମହାଯାତ୍ରା ହେଉଛି ଯଥାର୍ଥତଃ ଭାରତୀୟ ଆତ୍ମାର ମହାବାଣୀ ଏବଂ ଭାରତୀୟ ମନନର ମହାକାବ୍ୟ । କିନ୍ତୁ ଅଙ୍ଗସଜ୍ଜା ଓ ପରିବେଷଣ ପରିପାଟୀରେ ଯାହା କିଛି ପାଶ୍ଚାତ୍ତ୍ୟ ସଂଯୋଗର ସ୍ୱରୂପ ନିହିତ ।

ରୀତି ଦୃଷ୍ଟିରୁ ଏହା ରୋମାଣ୍ଟିକ ଏପିକ୍ ପର୍ଯ୍ୟାୟଭୁକ୍ତ । ପ୍ରାଚ୍ୟ ଆଦର୍ଶ ଅନୁମତେ ଏହା ମହାକାବ୍ୟର ମୌଳିକ ଲକ୍ଷଣ ସର୍ବାଂଶରେ ବହନ କରିନାହିଁ । ଅମିତ୍ରାକ୍ଷର ଛନ୍ଦ ପ୍ରୟୋଗ ସମେତ ନୂତନ ଶୈଳୀରେ ଏହା ପ୍ରାଚ୍ୟ ମହାକାବ୍ୟ ଓ ପାଶ୍ଚାତ୍ୟ ଏପିକ୍ ଗଠନ ରୀତିକୁ ସମନ୍ୱିତ କରିଛି । କାବ୍ୟରେ ନଗର

ଉପବନ, ଶୈଳ, ସମୁଦ୍ର, ସଂଧ୍ୟା-ପ୍ରକୃତି, ଯୁଦ୍ଧମନ୍ତ୍ରଣା ଇତ୍ୟାଦିର ଉପଯୋଗ ଏବଂ ଯୁଧିଷ୍ଠିର ଭଳି ଜଣେ ଧୀରୋଦାତ୍ତ, ସଦ୍ ବଂଶଜ ନାୟକଙ୍କ ଚୟନ, ସର୍ଗାନ୍ତେ ପରବର୍ତ୍ତୀ ସର୍ଗକଥାର ଆଭାସ ପ୍ରଦାନ, ବିଷୟବସ୍ତୁରେ ଇତିହାସ-ପୁରାଣର ସମ୍ମିଶ୍ରଣ—ପ୍ରଭୃତି ପ୍ରକାଶିତ ହୋଇଥିବାରୁ ଏହା ପ୍ରାଚ୍ୟ ମହାକାବ୍ୟ ପ୍ରତି ସମର୍ଥନ ଜଣାଉଛି । ଅନ୍ୟ ଅଂଶରେ ଏହା ପାଶ୍ଚାତ୍ତ୍ୟ ଏପିକ ରୀତିର ସାଦୃଶ୍ୟ ରକ୍ଷା କରିଛି ।

କାବ୍ୟାରମ୍ଭରେ ପ୍ରାଚ୍ୟ ଆଦର୍ଶ ଅନୁମତେ ଆଶୀର୍ବଚନ ବା ଦେବା-ଦେବୀ ସ୍ତୁତି ନ କରି କାବ୍ୟ-ଭାରତୀ ସାରଳାଙ୍କୁ କଥା-ବସ୍ତୁ କଥନ ପାଇଁ ଅନୁରୋଧ କରାଯାଇଛି । ଏହା ପାଶ୍ଚାତ୍ୟରୀତି ଅନୁକୂଳ । ଏଥିରେ ସର୍ଗାନ୍ତେ ନୂତନ ଛନ୍ଦର ବ୍ୟବହାର ନାହିଁ । ବିଷୟ ବସ୍ତୁକୁ ଇତିହାସ ଓ ପୁରାଣ ଭିତ୍ତିକ କରାଯାଇଛି । ଗୁରୁ ଗମ୍ଭୀର ଆବେଗରେ ତାହା ପରିବେଷିତ ହୋଇଛି । ଏଥିରେ ଏକ ମହତ ଉଦ୍ଦେଶ୍ୟର ପୋଷକତା କରାଯାଇଛି । ଉଦ୍ଦେଶ୍ୟଟିର ସ୍ୱରୂପ ହେଉଛି—ଦେଶର ଗୌରବ କୀର୍ତ୍ତନ ଏବଂ ଧାର୍ମିକ ତଥା ନୈତିକ ମୂଲ୍ୟ-ବୋଧର ସ୍ଥାପନା । ବିଷୟବସ୍ତୁରେ ତାହାର ପ୍ରାଣବେଗ ଉଚ୍ଛ୍ୱସିତ ।

କାବ୍ୟଟିର ବିଷୟ ହେଉଛି ଯଥାର୍ଥତଃ ଭାରତୀୟ ସଂସ୍କୃତି ଓ ଆଦର୍ଶ ଆତ୍ମାର ଇତିହାସ । ସମୟର ସୋପାନରେ ଘଟିଥିବା ସେହି ସଂସ୍କୃତିର ବିକାଶ ଓ ବିଚ୍ୟୁତିର ଚିତ୍ର ଏଥିରେ ପ୍ରକଟିତ । କିନ୍ତୁ ଯାହା ଏକାନ୍ତ ଭାବେ ଶାଶ୍ୱତ ଓ ଅକ୍ଷତ, ସେହି ଆଦର୍ଶ-ସତ୍ତାର ଅମ୍ଳାନ ଦୀପ୍ତି ଯୁଧିଷ୍ଠିରଙ୍କ ଚରିତ୍ର ମାଧ୍ୟମରେ ଉନ୍ମୋଚିତ ହୋଇଛି । ଜୀବନର ଅବକ୍ଷୟର ସେ ଦ୍ରଷ୍ଟା, ପୁଣି ତାର ସଂରକ୍ଷଣ ପାଇଁ ସେ ବି ଜଣେ ସଚେତକ । ଉଭୟ ଭୂମିକାରେ କବି ତାଙ୍କୁ ନିଯୁକ୍ତ କରିଛନ୍ତି । କାବ୍ୟଟିରେ ପୃଥ୍ୱୀରାଜ କିମ୍ବା ଅମର୍ଷୀଙ୍କର ବ୍ୟକ୍ତିଗତ ବୀରତ୍ୱ ବ୍ୟଞ୍ଜକ ଭାବନାର ମୂଳ ରୂପ ସାମାଜିକ ହିତ-ଭାବନା ବା ଦେଶଭକ୍ତିରେ ରୂପାନ୍ତରିତ ହୋଇ ଯାଇଛି । କବିଙ୍କ କାଳର ସାମାଜିକ ଚେତନା ଓ ସେ ଯୁଗର ସନ୍ଦେଶ, ମହାପ୍ରୟାଣରେ ଅଭିବ୍ୟକ୍ତି ଲାଭ କରିଛି । ଯୁଧିଷ୍ଠିର ବା ଦ୍ରୌପଦୀଙ୍କର ଖେଦୋକ୍ତି ଭିତରେ କବି ଆତ୍ମାର ବେଦନା, ବ୍ୟର୍ଥ ଆଶାର ଅଶ୍ରୁ, ଗତିହୀନ ଜୀବନର ବିଡ଼ମ୍ବନା ଓ ନିୟତି ବିଧାନ ପ୍ରତି ଅଖଣ୍ଡ କ୍ଷୋଭର ଭାଷା ଉଚ୍ଚାରିତ ହୋଇଛି । ମହାପ୍ରୟାଣର ବହୁଛନ୍ଦରେ କବି ଆପଣା ମନର ଅବ୍ୟକ୍ତ ଭାବ ଓ ଆବେଗ ଅନୁଭୂତିର ବାଣୀ ରୂପ ଅଙ୍କନ କରିଛନ୍ତି । ବହୁ ଅତିପ୍ରାକୃତ ଓ ଅଲୌକିକ ଉପାଦାନର ଚମତ୍କାର ଚୟନରେ ଏହା ବିସ୍ମୟ ଉଦ୍‌ବୋଧକ ହୋଇପାରିଛି । ଚରିତ୍ର ବିଶେଷ

( ଯୁଧିଷ୍ଠିର-ଦ୍ରୌପଦୀ )ଙ୍କର ମନଃସ୍ୱରୂପ ବିଶ୍ଳେଷଣ ପ୍ରତି ଏଥିରେ ମଧ୍ୟ ଦୃଷ୍ଟି ଦିଆଯାଇଛି ।

ଏ ସବୁ ଦୃଷ୍ଟିରୁ ଦେଖିଲେ ଜଣାଯାଏ, ମହାଯାତ୍ରା ହେଉଛି ଆଧୁନିକ ଓଡ଼ିଆ ସାହିତ୍ୟର ସର୍ବପ୍ରଥମ କଳାତ୍ମକ ରୋମାଣ୍ଟିକ ଏପିକ୍ । ଏହା ଏକାନ୍ତ ଭାବେ ସ୍ୱତଃସ୍ଫୂର୍ତ୍ତି ବା ସର୍ଜନାତ୍ମକ ଏପିକ ନୁହେଁ, ପୂର୍ଣ୍ଣତଃ ପ୍ରାଚ୍ୟ ମହାକାବ୍ୟ ନୁହେଁ । ବରଂ ପାଶ୍ଚାତ୍ୟ ଗଠନାଦର୍ଶ ଅନୁମତେ—ଏହା ସ୍ୱତଃ ସ୍ଫୂର୍ତ୍ତି ଓ ସାହିତ୍ୟିକ ମହାକାବ୍ୟର ମଧ୍ୟବର୍ତ୍ତୀ ଏକ ରୂପ—ରୋମାଣ୍ଟିକ ମହାକାବ୍ୟ । ଏଥିରେ ମହାକାବ୍ୟର ସତ୍ତ୍ୱ ଅଛି ପୁଣି ଅଛି ରୋମାଣ୍ଟିକ କଥା-କାବ୍ୟର ସତ୍ତ୍ୱ-ଉଭୟ ମିଶ୍ର ହୋଇଛନ୍ତି ରୋମାଣ୍ଟିକ ମହାକାବ୍ୟ । ଏହା ଏକ ଉଚ୍ଚାଙ୍ଗ କାବ୍ୟ-କୀର୍ତ୍ତିର ନିଦର୍ଶନ ସ୍ଥାପନ କରିପାରିଛି । କବିଙ୍କର ସର୍ଜନକ୍ଷମ ପ୍ରତିଭାର ବହୁପ୍ରସାରୀ ପ୍ରାଣ-ସତ୍ତ୍ୱକୁ ଏହା ପ୍ରତିଷ୍ଠିତ କରିପାରିଛି । ଯେଉଁ କବି-ପ୍ରତିଭା, କେଦାରଗୌରୀର ସ୍ରଷ୍ଟା, ସେଇ ଶକ୍ତିର ସୃଷ୍ଟି ହେଉଛି ମହାଯାତ୍ରା । ଏମାନଙ୍କ ଭିତରେ ସମୟର ବ୍ୟବଧାନ ଯେତେ, କବି-ଶକ୍ତିର ବ୍ୟବଧାନ ତାହାଠାରୁ ଅଧିକ ଗୁଣ ସିନା ଊଣା ନୁହେଁ ।

ତଥାପି ମହାଯାତ୍ରା ପୁସ୍ତକ ଆକାରରେ ପ୍ରକାଶ ପାଇବା ପରେ ( ୧୮୯୬ ) ଏ ଦେଶର ତଥାକଥିତ ଗ୍ରାହକମାନେ କାବ୍ୟକୁ ଆଲକର ଏକ 'ସମାଲୋଚନା' ପୁସ୍ତକ ପ୍ରକାଶ କରିଥିଲେ । ଏହା ଯଦି ଶୁଦ୍ଧ ସାରସ୍ୱତ ସମୀକ୍ଷା ହୋଇଥାନ୍ତା ତାହାହେଲେ କିଛି ଆପତ୍ତି ନ ଥାନ୍ତା । ମାତ୍ର ଈର୍ଷାଦ୍ୱେଷପ୍ରେରିତ କୁତ୍ସାମୂଳକ କଟୂକ୍ତି ଏଥିରେ ପୂରି ରହିଥିଲା । ଏପରି ପଦକ୍ଷେପ ପ୍ରତିଭାର ପ୍ରଗତି ପ୍ରତି ଏକ ନଷଣ । ରାଧାନାଥଙ୍କର ମନରେ ଏଇ ଅଗ୍ରାହକତା ଓ ପ୍ରତିକୂଳ ଆଚରଣ ଗଭୀର ବ୍ୟଥା ସଞ୍ଚାର କରିଥିଲା । ସାରସ୍ୱତ ବନ୍ଧୁ ଓ ଉତ୍ସାହୀ ବ୍ୟକ୍ତି ବର୍ଗଙ୍କୁ କବି ଏତେବେଳେ ଯେଉଁ ଚିଠି ପତ୍ର ଲେଖିଥିଲେ ତହିଁରେ ଏଇ ମାନସିକ ପ୍ରତିକ୍ରିୟାର ସୂଚନା ମିଳୁଛି । ରାଧାନାଥଙ୍କର ହିତୈଷୀ ବନ୍ଧୁ ମହାରାଜ ଶ୍ରୀରାମଚନ୍ଦ୍ର ଭଞ୍ଜଦେଓ, ଶଶିଭୂଷଣଙ୍କୁ ଏକ ପତ୍ର ଲେଖି 'ମହାଯାତ୍ରା' ବିରୋଧୀ ସମାଲୋଚନା ଗ୍ରନ୍ଥ ସଂପର୍କରେ ଆପଣାର ମନୋଭାବ ପ୍ରକାଶ କରିଥିଲେ । କାବ୍ୟଟିର ସମାଲୋଚକଙ୍କ ପ୍ରତି ତାଙ୍କର ମନୋଭାବ କ୍ଷୁବ୍ଧ-ବିରକ୍ତ ବ୍ୟଞ୍ଜକ ହୋଇପଡ଼ିଥିଲା । †

† "ନିକଟରେ ମହାଯାତ୍ରାର ସମାଲୋଚନା ବୋଲି ଖଣ୍ଡେ ବହି ମୁଁ ଦେଖିବାକୁ ପାଇଥିଲି । ସୌଭାଗ୍ୟବଶତଃ ସଂସାରରେ ଯେଉଁ ଶ୍ରେଣୀର ଲୋକ [illegible] ସମାଲୋଚକ [illegible] ଠିକ୍ ସେହି ଶ୍ରେଣୀୟ ବ୍ୟକ୍ତି । ସେମାନଙ୍କ [illegible]

କୌଣସି ସାହିତ୍ୟିକ କୃତ ଲକ୍ଷ୍ୟରେ ଏପରି ସମାଲୋଚନା ପ୍ରକାଶ ପାଇବା ମୂଳରେ ହୁଏତ ପ୍ରଧାନ କାରଣ ହୋଇପାରେ ପ୍ରତିଭାର ପ୍ରସିଦ୍ଧି ପ୍ରତି ଈର୍ଷା । ଲୋକେ ଈର୍ଷାକୁଳ ହୋଇ ରାଧାନାଥଙ୍କର, କବି-ଖ୍ୟାତିକୁ ଅବଗୁଣ୍ଠିତ କରିଦେବା ଇଚ୍ଛାରେ ଏପରି ପ୍ରୟତ୍ନ ଆରମ୍ଭ କରି ଦେଇଥିଲେ କିମ୍ବା ପାଠ୍ୟପୁସ୍ତକ ନେଇ ଘଟିଥିବା କନ୍ଦଳକୁ ମନେ ରଖି ରାଧାନାଥଙ୍କର ନ୍ୟୂନତା ପ୍ରତିପାଦନ ପାଇଁ ଚେଷ୍ଟା କରିଥିଲେ । କେତେକ ମଧ୍ୟ ସାମାଜିକ ଦୃଷ୍ଟିକୋଣରୁ ମହାଯାତ୍ରା ପ୍ରତି ବିମୁଖମନା ହୋଇ ପଡ଼ିଥିଲେ । ପ୍ରସଙ୍ଗ କ୍ରମେ କାବ୍ୟଟିରେ ବ୍ରାହ୍ମଣ ଜାତିର ଅଧୋଗତି ଏବଂ ବୌଦ୍ଧଧର୍ମର ପ୍ରଶସ୍ତିସୂଚକ ଉଲ୍ଲେଖ ଥିବାରୁ ଅନେକ କଟୁ ସମାଲୋଚନା କରିବାକୁ ମଧ୍ୟ ଭୁଲି ନଥିଲେ । ସେମାନଙ୍କ ଦୃଷ୍ଟିରେ କବି ଅହିନ୍ଦୁ, କଳି ସେନାପତି ରୂପେ ଆଖ୍ୟାୟିତ ହୋଇଥିଲେ । କାରଣ କବିଙ୍କର ଭୁଲ୍ ହେଲା ଯେ, ସେ 'କଳିଶିଷ୍ୟ କୁକ୍ଷିମ୍ଭରି ଦ୍ୱିଜାତି ଦୁଷ୍କୃତି / ଯୋଗେ ନାରଖାର ହେବ ଅଚିରେ ଏ ମହୀ / ···ଏମିତି ଅନେକ କିଛି ଆକ୍ଷେପୋକ୍ତି କଳିଯୁଗର ଅଶାନ୍ତି, ଅଜିତାତ୍ମା, ଅଜିତ କ୍ରୋଧ ବ୍ରାହ୍ମଣମାନଙ୍କ ସଂପର୍କରେ ତାଙ୍କ କାବ୍ୟରେ ଉଲ୍ଲେଖ କରିଥିଲେ । ତେଣୁ ତାଙ୍କୁ ନିନ୍ଦା ଓ କୁତ୍ସାର ଶରବ୍ୟ ହେବାକୁ ପଡ଼ିଲା ।

କଥାରେ ଅଛି, ସ୍ୱୈର ଚନ୍ଦ୍ରକୁ ନିନ୍ଦେ, ରସିକ ନିନ୍ଦେ ସନ୍ଥକୁ । ସେଇପରି ଏଇ କବି ନିନ୍ଦାର ତରିକା । ସ୍ୱାର୍ଥରେ ବାଧା ପଡ଼ିବାରୁ ସତକୁ ଘୋଡ଼ାଇବାର ଅପଚେଷ୍ଟା ସମାଲୋଚକମାନେ ଆରମ୍ଭ କଲେ । ମାତ୍ର ପରେ ମହାଯାତ୍ରା ସଂପର୍କରେ ନିନ୍ଦୁକମାନଙ୍କର ଆଖି ସଫା ହୋଇଯାଇଥିଲା । ଏଇ ଅଘଟଣା ସଂପର୍କରେ କିନ୍ତୁ ସୁସ୍ଥ ସମାଲୋଚକମାନଙ୍କର ଦୃଷ୍ଟିକୋଣ ଭିନ୍ନ ପ୍ରକାରର ଥିଲା । ସେ କାଳରେ ଅନ୍ୟତମ ସମାଲୋଚକ ଶ୍ରୀ ଭୋଳାନାଥ ସାମନ୍ତରାୟ, ମହାଯାତ୍ରା ଓ କବି ରାଧାନାଥଙ୍କ ସଂପର୍କରେ ଆଲୋଚନା କରି ଲେଖିଥିଲେ ଯେ, "ସକ୍ରେଟିସ ଓ ଯୀଶୁଖ୍ରୀଷ୍ଟଙ୍କର ଦେଶୀୟମାନେ ତାଙ୍କୁ ଅପମାନ ଓ ପ୍ରାଣଦଣ୍ଡ

---

···ରୋଗଗ୍ରସ୍ତ ଓ ପ୍ରକୃତିରେ ସେମାନେ କିଛି ଉତ୍ତମ, ଉଦାର ବା ଶୋଭନୀୟ ଦେଖିବାକୁ ପାଆନ୍ତି ନାହିଁ । ବସ୍ତୁତଃ ସେମାନେ ଭଗବାନଙ୍କ ଶତ୍ରୁ ( ସଇତାନ )ର ଶିଷ୍ୟ । ମୂଳରୁ ଶେଷଯାଏଁ ବହି ଖଣ୍ଡି ଖାଲି ବିଷ, ଅଗ୍ନି ଓ ଅସୂୟା ଉଦ୍‌ଗୀରଣ କରୁଅଛି ।"

( ଦୁର୍ଗାଚରଣ ରାୟ—ରାଧାନାଥ ଜୀବନୀ ପୃଷ୍ଠା ୨୩୨; କଟକ-୧୯୪୧; ଶଶିଭୂଷଣ ରାୟଙ୍କ ଲିଖିତ ମହାରାଜ ଶ୍ରୀରାମଚନ୍ଦ୍ର ଭଞ୍ଜଦେଓଙ୍କର ପତ୍ର ତା ୧୧।୫।୮୯୭ )

ପର୍ଯ୍ୟନ୍ତ କରିଥିଲେ । ରାଧାନାଥ କବିଙ୍କର ନିନ୍ଦା ଶୁଣି ଯଦି ତାଙ୍କର ବନ୍ଧୁ ଓ ଶିଷ୍ୟବର୍ଗ ଦୁଃଖିତ ହୁଅନ୍ତି, ତେବେ ସେମାନଙ୍କର ବୁଝିବା ଭ୍ରମ । ଯଶଃ ମୃତବ୍ୟକ୍ତିର ପୁରସ୍କାର । ଜୀବିତର ଯଥାଯୋଗ୍ୟ ପୁରସ୍କାର ସର୍ବଥା ସୁଲଭ ନୁହେଁ । ଉତ୍କଳ ସାହିତ୍ୟ ପ୍ରିୟ ରାଧାନାଥ କବିଙ୍କର 'ମହାଯାତ୍ରା'ର ତୀବ୍ର ସମାଲୋଚକମାନେ କବିଙ୍କର ପ୍ରଚୁର ପ୍ରତିଭା ସ୍ୱୀକାର କରିବାକୁ ଯେ ମୁକ୍ତକଣ୍ଠ ହୋଇଅଛନ୍ତି; ଏହା ଉତ୍କଳ ପକ୍ଷରେ ଅଳ୍ପ ସୌଭାଗ୍ୟର ବିଷୟ ନୁହେଁ । ପ୍ରତିଭା ଯଶୋଭବନର ସିଂହଦ୍ୱାରର ପ୍ରହରୀ । ପ୍ରତିଭା ସହିତ ପରିଚୟ ହେଲେ ଯଶୋଦ୍ୱାର କବାଟ ଉଦ୍‌ଘାଟିତ ହେବାର ବିଳମ୍ବ ନଥାଏ । ପ୍ରତିଭା ଦେବତା, ପ୍ରତିଭା ନମସ୍ୟ । ପ୍ରତିଭା, ଠାରେ ସମସ୍ତଙ୍କ ମସ୍ତକ ଅବନତ । ପ୍ରତିଭାକୁ ଅବଜ୍ଞା କରିବାର ସାଧ୍ୟ କାହାର । *"

ବାସ୍ତବିକ ଏହାହିଁ ସତ୍ୟ ବୋଧ ହେଲା । ନିନ୍ଦୁକମାନଙ୍କର ଯୁକ୍ତି ମଉଳିଗଲା । କାଳକ୍ରମେ ପ୍ରତିଭାର ଦୀପ୍ତି ବିସ୍ତାର ଗଲା । ନିନ୍ଦା ଦୃଷ୍ଟିରେ ସମାଲୋଚିତ କାବ୍ୟ ସମ୍ମାନିତ ହେଲା । ଓଡ଼ିଆ ସାହିତ୍ୟ ଭଣ୍ଡାରକୁ 'ମହାଯାତ୍ରା' ହେଲା କୋହିନୁର ମଣି ତୁଲ୍ୟ । † ଏହା ପ୍ରତିଭାର ପ୍ରଶସ୍ତି ଓ ପ୍ରକର୍ଷର ଏକ ନିଦର୍ଶନ ନୁହେଁ ତ ଆଉ କଣ ?

ବିଦ୍ୟାଳୟମାନଙ୍କରେ ଅଶ୍ଳୀଳତାବର୍ଜନ ଓ ପ୍ରିୟ ପରିଚିତ ଲେଖକଙ୍କର ପାଠ୍ୟ-ପୁସ୍ତକ ପ୍ରଚଳନକୁ କେନ୍ଦ୍ର କରି ଯେଉଁ କ୍ଷୋଭ ଓ ବିଦ୍ୱେଷଭାବ ବଢ଼ିଗଲା

---

* ( ଶ୍ରୀ ଭୋଳାନାଥ ସାମନ୍ତରାୟ···ସମ୍ବଲପୁର ହିତୈଷିଣୀ ତା ୧୮।୧୧। ୧୮୯୭ ସଂଖ୍ୟା — ମହାଯାତ୍ରା ଓ କବିବର ରାଧାନାଥ ରାୟ— ପ୍ରବନ୍ଧ )

† 'କବି ଆପଣାର ସମୟୋଚିତ ବିଷୟକୁ ବିଷୟୋଚିତ ଭାବରେ ଏବଂ ଭାଷାରେ ଅଳଂକୃତ କରିଅଛନ୍ତି ଏବଂ ସମସ୍ତ ଜୀବନରେ ସଯତ୍ନ ଉପାର୍ଜିତ ଯୋଗ୍ୟତାର ଓ ବହୁଦର୍ଶିତାର ଫଳ ଏହି ପୁସ୍ତକରେ ସନ୍ନିବେଶିତ କରିଥିବାରୁ 'ମହାଯାତ୍ରା' ଉତ୍କଳ ସାହିତ୍ୟ ଭଣ୍ଡାରର କୋହିନୁର ସ୍ୱରୂପ ହୋଇଅଛି ।'

( ସମ୍ବଲପୁର ହିତୈଷିଣୀ — ୧୮୯୭, ଡ଼ିସେମ୍ବର ୬ ତାରିଖ ସଂଖ୍ୟାର ଟିପ୍ପଣୀ )

ମହଲରେ ପୁଞ୍ଜିଭୂତ ହୋଇ ରହିଥିଲା ତାହା ପାଟଣ୍ଡି ଓ ମହାଯାତ୍ରା କାବ୍ୟ ପ୍ରକାଶର ସ୍ଫୂର୍ତ୍ତି ବହ୍ୟୁତି କରଥାରେ ଗୁମର ଉଠିଲା । ଏକ ପ୍ରକାର ପ୍ରକାଶ୍ୟ ଭେଷ କବଙ୍କୁ ଦୋହଲାଇ ଦେବାଲାଗି ତିଆର ହୋଇଗଲା । ପାଟଣ୍ଡି କାବ୍ୟର ସାମାଜିକ ସ୍ଫୂର୍ତ୍ତି ସଂପର୍କୀୟ ସମସ୍ୟା (?) ଦେଇ ଏଇ ପ୍ରତିକ୍ରିୟାଟି ପ୍ରକାଶର ସୁଯୋଗ ପାଇଲା । ତାହା ତ ଏକାବେଳକେ ଲଭିଯାଇ ନଥିଲା; ମହା-ଯାତ୍ରାର କାବ୍ୟ—ପ୍ରସିଦ୍ଧିକୁ ସହି ନ ପାରି ରାଧାନାଥଙ୍କର ଶତ୍ରୁମାନେ କଲିକତାଁର ସ୍କୁଲଟିକୁ ମହାଯାତ୍ରା ପୋଥିରେ ଝାଡ଼ି ଦେବାକୁ ଯତ୍ନ କରିଥିଲେ । ଉଦ୍ୟମ ସିନା ବିଫଳ ହେଲା; ମାତ୍ର କବି-ମନକୁ ଏହା ଭାରାକ୍ରାନ୍ତ କରି ଦେଇଥିଲା ।

ରାଧାନାଥ ୧୮୭୨-୧୯୦୩ ପର୍ଯ୍ୟନ୍ତ ଶିକ୍ଷା ପ୍ରଶାସକ ଦାୟିତ୍ୱରେ ଥିଲେ । ଏହି ସମୟ ଭିତରେ ସେ ଡ଼େପୁଟି ଇନସ୍‌ପେକ୍ଟର (୧୮୭୨-୧୮୭୭) ଜଏଣ୍ଟ ଇନସ୍‌ପେକ୍ଟର (୧୮୭୭-୧୮୯୨) ଏବଂ ଇନସ୍‌ପେକ୍ଟର (୧୮୯୨-୧୯୦୩) ପଦବୀରେ କାର୍ଯ୍ୟ କରିଛନ୍ତି । ତାଙ୍କର କାର୍ଯ୍ୟକାଳ ୩୧ ବର୍ଷ ଭିତରୁ ପ୍ରାୟ ସତର ବର୍ଷ (୧୮୭୨-୧୮୮୯) ସେ ପାଠ୍ୟ-ପୁସ୍ତକ ରଚନାରେ ବ୍ୟୟ କରିଛନ୍ତି । ପାଠ୍ୟ-ପୁସ୍ତକ ରଚନା କରି ତାହାକୁ ବିଦ୍ୟାଳୟମାନଙ୍କରେ ପ୍ରଚଳିତ କରାଇବାରେ ସେ ଆପଣାର ପଦବୀକୁ ଯେ ବ୍ୟବହାର କରି ନାହାନ୍ତି ଏକଥା କହି ହେବନି । ଡକ୍ଟର ନଟବର ସାମନ୍ତରାୟଙ୍କର ଅନୁଧ୍ୟାନ କହେ, "ରାଧାନାଥ କେବଳ ଶିକ୍ଷା ବିଭାଗର ଜଣେ ଉଚ୍ଚତମ ଶାସକ ନଥିଲେ, ସେ ମଧ୍ୟ ଥିଲେ ଅତି ଉଚ୍ଚକୋଟୀର ଜଣେ କବି ଓ ସାହିତ୍ୟିକ । ଆଧୁନିକ ଶିକ୍ଷା ପଦ୍ଧତିରେ ସେ ଯେପରି ନିପୁଣ ଥିଲେ ସେହିପରି ଆଧୁନିକ ସାହିତ୍ୟ ସଂପର୍କରେ ସେ ଜଣେ ଯଥାର୍ଥ ଉପଦେଷ୍ଟା ଥିଲେ । ଫଳରେ ଶାସକ ଓ କବି ରାଧାନାଥଙ୍କର ଏ ଉଭୟ ବ୍ୟକ୍ତିତ୍ୱ ତାଙ୍କୁ ଲୋକ ଆଖିରେ ଅତି ଉଚ୍ଚ ଆସନରେ ଉପସ୍ଥାପନ କରିଥିଲା । ଶାସକ ରାଧାନାଥ ନିର୍ବାଚନ କରିବେ ସାହିତ୍ୟ ପାଠ୍ୟ-ପୁସ୍ତକ, ସେଇ ପାଠ୍ୟ-ପୁସ୍ତକ ଉପରେ କବି ରାଧାନାଥ ଲେଖିବେ ପ୍ରଶ୍ନାବଳୀ, ସେଇ ପ୍ରଶ୍ନାବଳୀରୁ ପରୀକ୍ଷକ ରାଧାନାଥ ନିର୍ବାଚନ କରିବେ ପରୀକ୍ଷା ପାଇଁ ପ୍ରଶ୍ନ, ଏଇ ପ୍ରଶ୍ନମାନଙ୍କ ମାଧ୍ୟମରେ ସେହି ରାଧାନାଥ ଛାତ୍ରମାନଙ୍କ ପରୀକ୍ଷା ଫଳ ନିର୍ଣ୍ଣୟ କରିବେ; ପରୀକ୍ଷାର ଫଳ ଉପରେ ନିର୍ଭର କରିବ ଜଏଣ୍ଟ ଇନସ୍‌ପେକ୍ଟର ରାଧାନାଥଙ୍କର ଆର୍ଥିକ ସାହାଯ୍ୟ ପାଇଁ ଅନୁମୋଦନ" । †

† ଡକ୍ଟର ନଟବର ସାମନ୍ତରାୟ—ଆଧୁନିକ ଓଡ଼ିଆ ସାହିତ୍ୟର ଇତିହାସ (୧୮୦୩-୧୯୨୦), ପୃଷ୍ଠା ୧୪୧, ଭୁବନେଶ୍ୱର ୧୯୬୪ ।

ରାଧାନାଥ ଏପରି ଏକ ସୁବିଧା ଜନକ ଅବସ୍ଥାରେ ଥିବାରୁ ବହୁ ଲୋକଙ୍କୁ ଆପଣା ଆଡକୁ ଟାଣି ଆଣିଥିଲେ କିମ୍ବା ଲୋକ ସୁଯୋଗ ପ୍ରାପ୍ତି ଆଶାରେ ରାଧାନାଥଙ୍କର ସାରସ୍ୱତ-ପରିଧି ଭିତରେ ପ୍ରବେଶ କରିଥିଲେ । ପୁନଶ୍ଚ ଏ ଦେଶରେ ୧୮୮୦ ମସିହା ପରେ ବହୁ ନିମ୍ନତମ ସ୍କୁଲ ପ୍ରତିଷ୍ଠିତ ହେଲା । 'ଫଳ ଅନୁଯାୟୀ' ଦରମା ନୀତି ପ୍ରବର୍ତ୍ତିତ ହେଲା । ଗୁଣୀ ଛାତ୍ରମାନଙ୍କୁ ପୁସ୍ତକ ଆକାରରେ ପାରିତୋଷିକ ଦେବାର ବ୍ୟବସ୍ଥା କରାଗଲା । ସରକାର ପୁରସ୍କାର ଦେବାଲାଗି ପୁସ୍ତକ ସଂଗ୍ରହ କଲେ । ୧୮୭୨ରୁ ମଧ୍ୟ ସରକାର, ପାଠ୍ୟ-ପୁସ୍ତକ ରଚନା ଲାଗି ଲୋକଙ୍କୁ ଉତ୍ସାହିତ କରିବା ନିମନ୍ତେ ତିନିହଜାର ଟଙ୍କାର ପୁରସ୍କାର ଘୋଷଣା କରିସାରିଥିଲେ । ପ୍ୟାରୀମୋହନ ଆଚାର୍ଯ୍ୟଙ୍କର ଓଡ଼ିଶାର ଇତିହାସ ( ୧୮୭୮ ) ଏବଂ ମଧୁସୂଦନ ରାଓଙ୍କର ପ୍ରବନ୍ଧମାଳା ( ୧୮୮୦ ) ଏହି ଯୋଜନା ଅନୁସାରେ ପ୍ରତ୍ୟେକେ ତିନିଶହ ଟଙ୍କାର ପୁରସ୍କାର ଲାଭ କରିଥିଲେ । ସେହିପରି ବ୍ୟକ୍ତିଗତ ଅନୁଦାନରୁ ମଧ୍ୟ ପାଠ୍ୟ-ପୁସ୍ତକ ରଚନାକୁ ଉତ୍ସାହିତ କରାଯାଇଥିଲା । ଢେଙ୍କାନାଳର ମହାରାଜା ଭଗୀରଥ ମହେନ୍ଦ୍ର ବାହାଦୁର କଟକ ସ୍କୁଲ କମିଟି ହାତରେ ନଅ ହଜାର ଟଙ୍କା, ଦୁଇଜଣ ଓଡ଼ିଆ ଛାତ୍ରଙ୍କ ଲାଗି ବୃତ୍ତି ବ୍ୟବସ୍ଥା ଏବଂ ପାଠ୍ୟ-ପୁସ୍ତକ ଲେଖକଙ୍କୁ ଉତ୍ସାହିତ କରିବା ଉଦ୍ଦେଶ୍ୟରେ ଦାନ କରିଥିଲେ । ଦ୍ୱାରକାନାଥ ରାୟଙ୍କର କ୍ଷେତ୍ର ପରିମାଣ ( ୧୮୭୦ ) ଏବଂ ଜଡ ବିଜ୍ଞାନ ( ୧୮୭୦ ) ଢେଙ୍କାନାଳ ପୁରସ୍କାର ଲାଭ କରିଥିଲା ।

ସୁତରାଂ ସରକାରୀ ଓ ବେସରକାରୀ ପ୍ରୋତ୍ସାହନ ଫଳରେ ୧୮୭୨ ମସିହା ଉତ୍ତାରୁ ପାଠ୍ୟ-ପୁସ୍ତକ ରଚନା ଲାଗି ଲେଖକମାନଙ୍କ ଭିତରେ ପ୍ରତିଦ୍ୱନ୍ଦ୍ୱିତା ବଢ଼ି ଯାଇଥିଲା । କେତେକ ମଧ୍ୟ ପାଠ୍ୟ-ପୁସ୍ତକ ରଚନା ଓ ପ୍ରକାଶନକୁ ଏକ ବ୍ୟବସାୟରେ ପରିଣତ କରି ଦେଇଥିଲେ । ରାଧାନାଥଙ୍କୁ କେନ୍ଦ୍ର କରି ସେତେବେଳେ ମଧ୍ୟ ଦଳେ ପାଠ୍ୟ-ପୁସ୍ତକ ଲେଖକଙ୍କର ଅଭ୍ୟୁଦୟ ଘଟିଥିଲା । * ସେମାନଙ୍କ ମଧ୍ୟରୁ ଅଧିକାଂଶ ହେଉଛନ୍ତି ରାଧାନାଥଙ୍କର

---

* ବୈକୁଣ୍ଠନାଥ ଦେ — ପ୍ରଥମ ଶିକ୍ଷା (୧୮୬୭), ବାଳିକା ପାଠ (୧୮୮୭), ଅବଧାନ ଦୀପିକା (୧୮୭୧), ଆଦର୍ଶ ପ୍ରଶ୍ନାବଳୀ-ଜ୍ୟାମିତି (୧୮୮୧), ଭୂଗୋଳସାର (୧୮୮୨), ଦଲିଲ ସଂଗ୍ରହ (୧୮୮୨), ଓଡ଼ିଶାର ସଚିତ୍ର-ସଂକ୍ଷିପ୍ତ ଇତିହାସ (୧୮୮୩), ଓଡ଼ିଶାର ଭୂଗୋଳ (୧୮୮୩), ପାଠମାଳା (୧୮୮୩), ଜେଗ୍ରାଫିକାଲ ପ୍ରାଇମାର (୧୮୮୪), ଜମିଦାରୀସେରସ୍ତା (୧୮୮୩), ଭାରତଇତିବୃତ୍ତ (୧୮୮୫) । ରାଧାନାଥ ରାୟ — ଉତ୍କଳ ରଚନା (୧୮୭୬), କବିତାବଳୀ (୧୮୭୬), କ୍ଷେତ୍ରତତ୍ତ୍ୱ ଓ କ୍ଷେତ୍ର ପରିମାଣ

ଅନୁଗାମୀ କିମ୍ବା ଆତ୍ମୀୟ ସ୍ୱଜନ । ସୀତାନାଥ, ରମାନାଥ ଚନ୍ଦ୍ରନାଥ, ଓ ଦ୍ୱାରିକାନାଥ ଏମାନେ ହେଉଛନ୍ତି ରାଧାନାଥଙ୍କର ଆତ୍ମୀୟସ୍ୱଜନ । ଅନ୍ୟମାନେ ତାଙ୍କର ପ୍ରିୟ ପରିଚିତ କିମ୍ବା ଭିନ୍ନ ଗୋଷ୍ଠୀର ଲେଖକ ।

ଏହା ଗୋଟିଏ ଲଭଙ୍କଶ ବ୍ୟାପାର ହୋଇଥିବାରୁ ଯେଉଁମାନେ ଏଥି ଭିତରକୁ ପ୍ରବେଶାଧିକାର ପାଇଲେ ନାହିଁ ସେମାନେ ରାଧାନାଥଙ୍କ ପ୍ରତି ଅସନ୍ତୋଷ ମୂଳକ ମନୋଭାବ ପୋଷଣ କରିଥିଲେ । ସୁଯୋଗ ଉଣ୍ଡୁଥିଲେ କନ୍ଦଳ ଲଗେଇ ଦେବାଲଗି ; ପାର୍ବତୀ ଏବଂ ମହାଯାତ୍ରାର ପ୍ରକାଶ ପରେ ପରେ କନ୍ଦଳ ଆରମ୍ଭ ହୋଇଗଲା । ସମାଲୋଚକମାନେ ବୁଝିଲେ ନାହିଁ, ଉଚ୍ଚ ସାହିତ୍ୟର ମୂଲ୍ୟ କିମ୍ବା କଳାର ଗୌରବ । ଇତିହାସ ବା ସାମାଜିକ ଅଭିପ୍ରାୟକୁ ଆଳକରି ନିନ୍ଦା ରଟିଲେ । ଏଇ ଘଟଣା ରାଧାନାଥଙ୍କର ସର୍ଜନା ଶକ୍ତି ଓ ସାହିତ୍ୟ ରଚନା ସ୍ପୃହାରେ ଉଦାସୀନତା ଓ ଶିଥିଳତା ସଂଚାର କରିଦେଲା । ବ୍ୟକ୍ତିଗତ କାରଣରୁ ମଧ୍ୟ ରାଧାନାଥ ଭାଙ୍ଗି ପଡ଼ିଲେ । ପୁତ୍ର ଶଶିଭୂଷଣ ମୂର୍ଚ୍ଛା ରୋଗରେ ପୀଡ଼ିତ (୧୮୯୨) ହେବାରୁ ରାଧାନାଥଙ୍କର ମାନସିକ ବିଷାଦ ବୋଧ ଖୁବ୍ ବଢିଗଲା ।

---

(୧୮୬୭), ଗଣିତ ବିଷୟରେ ଆଦର୍ଶ ପ୍ରଶ୍ନାବଳୀ (୧୮୭୭), ବ୍ୟବହାରିକ ଭୂଗୋଳ (୧୮୭୭), ଭୂଗୋଳସାର ସଂଗ୍ରହ (୧୮୭୮), ସାହିତ୍ୟ ବିଷୟକ ଆଦର୍ଶ ପ୍ରଶ୍ନାବଳୀ (୧୮୭୯), ବ୍ୟାକରଣ (୧୮୮୧) ।

ଫକୀରମୋହନ ସେନାପତି — ଜୀବନଚରିତ (୧୮୬୭), ଭାରତବର୍ଷର ଇତିହାସ (୧୮୬୧) ; ରାଧାନାଥଙ୍କର ପ୍ରଶାସନ ପୂର୍ବରୁ ଫକୀରମୋହନଙ୍କର କୃତିତ୍ୱ ପାଠ୍ୟ-ପୁସ୍ତକ ରଚନାରେ ଉପଲବ୍ଧ ହୋଇଥିଲା । ପରବର୍ତ୍ତୀ-କାଳକୁ ସେ ପାଠ୍ୟ-ପୁସ୍ତକ ରଚନାରେ ଲିପ୍ତ ଥିଲେ ମଧ୍ୟ ଅଧିକ ସୃଷ୍ଟି ଲାଗି ବିଶେଷ ତତ୍ପର ନଥିଲେ ।

ଗୋବିନ୍ଦଚନ୍ଦ୍ର ପଟ୍ଟନାୟକ—ଧାତୁ ବିବେକ (୧୮୭୨), ବର୍ଣ୍ଣବିଜ୍ଞାନ, ନୀତିଶିକ୍ଷା, ଉପକ୍ରମଣିକା, ବ୍ୟାକରଣ କୌମୁଦୀ ଇତ୍ୟାଦି ।

ଚତୁର୍ଭୁଜ ପଟ୍ଟନାୟକ—କାବ୍ୟ କୁସୁମ, ଜ୍ଞାନୋଦୟ, କ୍ଷେତ୍ରତତ୍ତ୍ୱର ପ୍ରଶ୍ନୋତ୍ତର, ବାଳବନ୍ଧୁ, ବାଳବୋଧିନୀ, ବାଳବୋଲି, ପ୍ରଶ୍ନମାଳା, ଅଙ୍କସାର, ଇଂରାଜୀ ପ୍ରଥମ ପାଠ୍ୟ ପୁସ୍ତକ, ଭଜନମାଳା, କବିତାବଳୀ ତତ୍ତ୍ୱମାଳା (୧୮୮୩), ଶବ୍ଦନିଧି (୧୮୮୩), ସ୍ୱାସ୍ଥ୍ୟ ସାଧନ (୧୮୮୬), ଫ୍ୟାଟର୍ ଚର୍ଟ ଅଫ୍ ଓଡ଼ିଶା (୧୮୮୪) ।

ଉକ୍ତ ଆନ୍ତୁ ଉଦ୍ଗ୍ରମନସ୍କ ରାଧାନାଥ ସାହିତ୍ୟ ଜଗତ୍ ପ୍ରତି ବୀତସ୍ପୃହ ହୋଇ ଉଠିଲେ। କବି ଗଙ୍ଗାଧର ମେହେରଙ୍କୁ ଲିଖିତ ଗୋଟିଏ ପତ୍ରରେ ତାଙ୍କର ମାନସିକ ଅବସ୍ଥାର ସୂଚନା ସେ ଦେଇଥିଲେ । ରାଧାନାଥ ଲେଖିଥିଲେ, "ପ୍ରକୃତ ସାହିତ୍ୟ ଜ୍ଞାନ ସମସ୍ତ ହାକ୍ଷେପ ଅଟେ, ବିଶେଷତଃ ଓଡ଼ିଶାରେ କାଳିଦାସଙ୍କ ସହିତ ଭକ୍ତଙ୍କପରି କବି ସମାନ ଆସନ ପାଆନ୍ତି । ହିମାଳୟ ସହିତ ନଦିଲାସ ତୁଳିତ ହୁଏ । ଏପରି ଦେଶରେ ସାହିତ୍ୟ-ଜ୍ଞାନ ଲାଭ ସହଜ କଥା ନହେଁ । ସାହିତ୍ୟାନୁରାଗ ମୋହର ବହୁ ଦିନରୁ ଥିଲା, ମାତ୍ର ଉଚ୍ଚ ସାହିତ୍ୟ କଥଣ ସେ ଜ୍ଞାନ ବହୁ ବିଳମ୍ବରେ ଲାଭ ହେଲା । ସେହି ଜ୍ଞାନ ଲାଭ ସଙ୍ଗେ ସଙ୍ଗେ ସାହିତ୍ୟ ଚର୍ଚ୍ଚା ପରିତ୍ୟାଗ କରିବାକୁ ହେଲା । ବର୍ତ୍ତିମାନ ମୋହର ବୟଃକ୍ରମ ୪୭ ବର୍ଷ । କ୍ରମଶଃ ଜରାର ନିକଟବର୍ତ୍ତୀ ହେଉଅଛୁ । ମୁଁ କନେ କିଛୁ କରିପାରିବି ଏପରି ଆଶା ସ୍ୱପ୍ନରେ ସୁଦ୍ଧା

---

ଗୌରୀଶଙ୍କର ରାୟ—ଭୂଗୋଳତତ୍ତ୍ୱ (୧୮୭୨) ।
ଗୋବିନ୍ଦଚନ୍ଦ୍ର ରଥ—ବସ୍ତୁ ବୋଧକ, କବିତାକଳାପ (୧୮୭୮), କବିତା କୁସୁମ, ନୀତିରତ୍ନସାର, ଛନ୍ଦମାଳା, ନୀତିମାଳା, ଭୂଗୋଳସାର, ଓଡ଼ିଶାଭୂଗୋଳ ।

କପିଳେଶ୍ୱର ବିଦ୍ୟାଭୂଷଣ—ରାମବିଳାସ (୧୮୭୫) ।
ବିଚ୍ଛନ୍ଦ ପଟ୍ଟନାୟକ—ଶକୁନ୍ତଳା ଉପାଖ୍ୟାନ—ଇତ୍ୟାଦି ।
ଜଗମୋହନ ଲାଲ—ଭ୍ରମଭଞ୍ଜନ (୧୮୬୮) ।
ଚନ୍ଦ୍ରନାଥ ରାୟ—ଆଖ୍ୟାନ ମଞ୍ଜରୀ (୧୮୭୬)
ରମାନାଥ ରାୟ—କ୍ଷେତ୍ର ପରିମାଣ ।
ସୀତାନାଥ ରାୟ—ପ୍ରଥମ, ଦ୍ୱିତୀୟ, ତୃତୀୟ ଓ ଚତୁର୍ଥ ପାଠ, ସରଳଭୂଗୋଳ ଉତ୍କଳଭୂଗୋଳ, ସରଳ ପରିମିତି, ପାଠମାଳା, ଉତ୍କଳ ଇତିବୃତ୍ତ, ଗଣିତ ପ୍ରବେଶ, ମାନସାଙ୍କ ଓ ବଜାର ହିସାବ ।
ଦ୍ୱାରିକାନାଥ ରାୟ—ସରଳ ଭୂଗୋଳ, ଓଡ଼ିଶା ଭୂଗୋଳ, କ୍ଷେତ୍ରପରିମାଣ (୧୮୭୦), ଜଡବିଜ୍ଞାନ (୧୮୭୦) ।
ଶିବନାରାୟଣ ନାୟକ- ଭାରତବର୍ଷର ବୃହତ୍ ଇତିହାସ (୧୮୭୭)' ସଂକ୍ଷିପ୍ତ ଇତିହାସ (୧୮୭୧),
ପଦ୍ୟ କୌମୁଦୀ (୧୮୭୮)— ଇତ୍ୟାଦି ବହୁ ଲେଖକ ଓ ସେମାନଙ୍କର ପାଠ୍ୟ-ପୁସ୍ତକ ରଚନା ।

ହୃଦୟରେ ସ୍ଥାନ ଦେବାକୁ ପ୍ରବୃତ୍ତି ହେଉନାହିଁ।'' † ବାସ୍ତବିକ ଉଗ୍ର ମାନସିକତାର ଦାରୁଣ ପ୍ରଭାବ ଯେ କେତେ ମାତ୍ରାରେ କବିଙ୍କୁ ପଙ୍ଗୁ କରିଦେଉଥିଲା ତାହାର ଉପଲବ୍ଧି ଏଥିରୁ ସହଜ ହେବ। ଏପରି ଅସ୍ଥିରତା ଯେଉଁଠି, ସୃଷ୍ଟି ଫୁଲର ମୂଲ୍ୟ-ଚମତ୍କାରିତା ସେଠି ଆଶା କରିବା ବିଡ଼ମ୍ବନା ମାତ୍ର।

## ଦୃଷ୍ଟିର ପ୍ରଶାନ୍ତି ଓ ଅବରୋହ

ଏହି ସମୟରୁ (୧୮୯୫-୧୯୦୮) ବସ୍ତୁତଃ ଆରମ୍ଭ ହୁଏ ରାଧାନାଥୀ ପ୍ରତିଭାର ବିପର୍ଯ୍ୟୟ। ଏକ ତେଜୋଦୀପ୍ତ କବି ଜୀବନର ଅବରୋହଣ ମୋଟା-ବିସ୍ତାରରେ ହୁଏତ କଷ୍ଟ ହୋଇ ନପାରେ, ମାତ୍ର ତାଠାରୁ ସାରସ୍ୱତ ବିଭବ ଓ ବିଳାସ ପାଇଁ ନିଶ୍ଚୟ କ୍ଷତିକାରକ। ତଥାପି ଏଇ କାଳର କିଞ୍ଚିତ୍ ପୂର୍ବରୁ ଓ ପରେ କବି ଯେଉଁ କେତୋଟି ରଚନାରେ ଶକ୍ତି ବିନିଯୋଗ କରିଛନ୍ତି ସେଥି ମଧ୍ୟରୁ ଯାଯାତି କେଶରୀ (୧୮୯୪) ଏବଂ ଦରବାର (୧୮୯୪) ତାଙ୍କ କବି-ପ୍ରତିଭାକୁ ଅଦ୍ଭୁତଗୁଣିତ କରିନାହାନ୍ତି କିମ୍ବା ପ୍ରତିଭା ବିକାଶର ନମୁନା ହୋଇ ନାହାନ୍ତି। ବରଂ ପୂର୍ବ-ଶକ୍ତିର ସୋତରେ ସେଚିତ ହୋଇ ସେମାନେ ରାଧାନାଥଙ୍କ ଉଗ୍ର ମନସ୍ତତ୍ତ୍ୱର ଉପଶମରେ ଯତ୍କିଞ୍ଚିତ୍ ଉଦ୍ୟମ କରିଛନ୍ତି। ବରଂ ଏକଥା କୁହାଯାଇପାରେ ଯେ, ମହାଯାତ୍ରା ରଚନାପରେ ଉଚ୍ଚ ସାହିତ୍ୟର ସୃଷ୍ଟି ସୋପାନରେ କବି-ପ୍ରତିଭା ଉପରକୁ ଉପରକୁ ଆଉ ଉଠିପାରି ନାହିଁ; ପୁନରପି ଉଷା, ନନ୍ଦକେଶରୀ କାବ୍ୟଧୂଳି ରୋମାଣ୍ଟିକ ପ୍ରେମ-ଜିଜ୍ଞାସାରେ ମଜ୍ଜିବାର ଉଦ୍ୟମ କରିଛି। ତେଣୁ ରାଧାନାଥୀ ପ୍ରତିଭା ଯଯାତିକେଶରୀ ପରି ଏକ ଆତ୍ମହତ୍ୟାତ୍ମକ କାବ୍ୟର ସୃଷ୍ଟି-କର୍ମରେ ଆତ୍ମନିୟୋଗ କରିଛି। ଏହା ଅଗ୍ରଗତିର ପଦକ୍ଷେପ ନୁହେଁ; ପାଶ୍ଚାଦ୍ ଗମନର ଉପକ୍ରମ କିମ୍ବା ପୂର୍ବତନ ରଚନା କଳାର ପୁନରାବୃତ୍ତି ମାତ୍ର।

ସୁତରାଂ ରାଧାନାଥୀ ପ୍ରତିଭାର ପ୍ରଶାନ୍ତି ଓ ଅବରୋହର ପ୍ରସ୍ତୁତ-ପର୍ବ **ଯଯାତିକେଶରୀ** (୧୮୯୪) ପ୍ରକାଶନ ଠାରୁ ଆରମ୍ଭ ହୋଇଯାଇଥିଲା ବୋଲି କୁହାଯାଇପାରେ। ରାଧାନାଥଙ୍କର କବି-ଶକ୍ତି ହଠାତ୍ ତଳକୁ ଖସିପଡ଼ିଲା, ଏକଥା ନୁହେଁ। ଯେଉଁ ଭୂମିକା ଉପରେ ପାଦରଖି ତାଙ୍କ କବି-ଶକ୍ତି ଆଗେଇ ଥିଲା ସେଇ ଭୂମିକାକୁ ଛୁଇଁ ତାହା ହ୍ରାସ ପାଇଲା।

---

† ଡକ୍ଟର ଦେବୀପ୍ରସନ୍ନ ପଟ୍ଟନାୟକ—କବିଲିପି ପୃଷ୍ଠା—୭୦—୭୧, ବିଶୁବମିଳନ ୧୯୬୭; ପତ୍ରର ତାରିଖ ୧୮-୩-୧୮୯୫।

ଯଯାତିକେଶରୀ ହେଉଛି ଏଇ ପଞ୍ଚପରିବର୍ତ୍ତନର ଉପଜୀବନିକା । ତେଣୁ ଏହା ଯେ ରାଧାନାଥୀ ପ୍ରତିଭା ବିପର୍ଯ୍ୟୟର ଏକ ସ୍ୱସ୍ୱ ସଂପୂର୍ଣ୍ଣ ଦୃଷ୍ଟାନ୍ତ, କେମିତି କହିବା ?

ଯଯାତିକେଶରୀ କାବ୍ୟର କଥାବସ୍ତୁ ପରିକଳ୍ପନାରେ କବି ଯେଉଁ କୌଶଳର ଅବଲମ୍ବନ ଗ୍ରହଣ କରିଛନ୍ତି ତାହା ଉପଭୋକ୍ତା ଆଣିନାହିଁ । ଯଯାତି ବିମଳାକୁ ଉତ୍କଳରାଜନନ୍ଦିନୀ ଲଳିତାଙ୍କ ସହ ପରିଚିତ କରାଇ, ପରସ୍ପରଙ୍କ ଭିତରେ ଆକର୍ଷଣର ମୋହ ସୃଷ୍ଟି କରି ପୁଣି ରାଜକୁମାର ଯଯାତିଙ୍କୁ ନାରୀଛଦ୍ମ ବେଶରେ ଲଳିତାଙ୍କ ଅନ୍ତଃପୁରରେ ସ୍ଥାନ ଦେବା ପର୍ଯ୍ୟନ୍ତ କଥାନକର ଗତିରେ କୌତୂହଳ ପରିବୃଦ୍ଧିର କୌଣସି ନ୍ୟୂନତା ଘଟାଇ ନାହାନ୍ତି । ନାରୀ ବେଶରେ ଯଯାତି, ଲଳିତାଙ୍କ ଅନ୍ତଃପୁରରେ ବାସକରିବା ଘଟଣା ଏବଂ ନିଃସଂକୋଚରେ ସେମାନେ ଏକତ୍ର ଭୋଜନ, ଶୟନ କରିବା ଆଚରଣକୁ କବି ଖୁବ୍ ସତର୍କତାର ସହିତ ଉଲ୍ଲେଖ କରିଛନ୍ତି । ଏମାନଙ୍କ ପ୍ରଣୟ ବ୍ୟାପାରରେ ମୁକ୍ତ ଆଦିରସ ବ୍ୟଞ୍ଜନାର ସମ୍ଭାବନା ଥିଲେ ମଧ୍ୟ ତାହାକୁ ଯଥାସମ୍ଭବ ସଂଯତ ଓ ସୁରୁଚି ଅନୁମୋଦିତ କରି ପ୍ରକାଶ କରିଛନ୍ତି । ଏଥିଯୋଗୁ ଏହି କାବ୍ୟର ଆଦ୍ୟ ସମୀକ୍ଷକ 'ସମ୍ବଲପୁର ହିତୈଷିଣୀ' ହୁଏତ ମନ୍ତବ୍ୟ ଦେଇ କହିଥିଲେ, "ଆଦିରସାତ୍ମକ କବିତା ଲେଖିଲେ ଏହିପରି ଲେଖିବାକୁ ହୁଏ; ଏଥିରେ ପର୍ଯ୍ୟଙ୍କ ଭଂଜନ ନାହିଁ, ନୀବିମୋକ୍ଷଣ ନାହିଁ, ଜାନୁ ଗୁଳ୍ପିତ କାଷ୍ଠ ଦୋହଲ ନାହିଁ, ମାର ସଦନ ଚମକ ନାହିଁ; ଅଥଚ ଶଂସିତ କାବ୍ୟ ପାଠ କଲେ ହୃଦୟରେ ଅଭୂତପୂର୍ବ ଆନନ୍ଦ ସଂଗ୍ରହ ହୁଏ । ଯଦି ଆଦିରସାତ୍ମକ କାବ୍ୟ ଲେଖିବାକୁ ହୁଏ, ଏହିପରି ଲେଖିବା ଉଚିତ ।" *

ଏହି କାବ୍ୟର ପ୍ରକୃତ ଅନୁଶୀଳନରୁ କେହି କେହି ହୁଏତ ବିଶ୍ୱାସ କରୁଥିବେ ଯେ, ଭଂଜଙ୍କ ଅନୁକାରୀ ବୋଲି ଘୋଷିତ ରାଧାନାଥଙ୍କର ଅଭିମତଟିକୁ ଅଧିକ ସ୍ପଷ୍ଟ ଓ ପ୍ରମାଣ ଯୋଗ୍ୟ କରି ଦେବା ପାଇଁ ଯଯାତି କେଶରୀ ରଚନା ପ୍ରକାଶିତ ହୋଇଥିଲା । କିନ୍ତୁ ଯଥାର୍ଥତଃ ଦେଖିବାକୁ ଗଲେ ଯଯାତି କେଶରୀ ରଚନା ଭଞ୍ଜ-ରାଧାନାଥ ବିରୋଧ-ଆନ୍ଦୋଳନ ( ୧୮୯୬ ) ବେଳକୁ ଯେ ରଚିତ ହୋଇଥିଲା ତା ନୁହେଁ । ବହୁପୂର୍ବରୁ କବି ଏହାକୁ ରଚନା କରିଥିଲେ ( ୧୮୮୧-୮୨ ) କିନ୍ତୁ ପ୍ରକାଶ ପାଇଁ ଯତ୍ନ କରି ନଥିଲେ ବୋଲି କୁହାଯାଏ । ସେ ଯାହା ହେଉନା କାହିଁକି, ଏହାର ପ୍ରକାଶନ କାଳ ହିଁ ଆଲୋଚକ ମାନଙ୍କ

---

* ସମ୍ବଲପୁର ହିତୈଷିଣୀ—୧୮୯୪, ଅଗଷ୍ଟ ତା ୨୯ରିଖ ସଂଖ୍ୟା

ପାଇଁ ପ୍ରାମାଣିକ ସିଦ୍ଧାନ୍ତ । ଏଇ ପ୍ରକାଶ କାଳର ଅବଲମ୍ବନରେ କାବ୍ୟର କଥାବସ୍ତୁ ଓ ବର୍ଣ୍ଣନାଧାରାକୁ ଅନୁଧ୍ୟାନ କରି କୁହାଯାଇ ପାରେ ଯେ ରାଧାନାଥ ଆତ୍ମମୁଖ୍ୟ ଭକ୍ତ-ବିରାଗୀ ନୁହେଁ;—ଏହାର ପ୍ରମାଣ ଯଯାତିକେଶରୀ ପ୍ରଦାନ କରିଛି । କୁହାଯାଇଥାଏ ଯେ ଏହି ଆଦିରସାତ୍ମକ କାବ୍ୟ ବାହାରିବା ସଙ୍ଗେ ସଙ୍ଗେ ଅଗ୍ନିରେ ପାଣି ଢାଳିବା ଭଳି ସାହିତ୍ୟିକ ଯୁଦ୍ଧର ଅବସାନ ହେଲା । ଭକ୍ତ ଭକ୍ତବର୍ଗ ରାଧାନାଥଙ୍କୁ ଉପଯୁକ୍ତ ପରିମାଣରେ ସ୍ୱଦଳର ମତାବଲମ୍ବୀ ହେବାର ଦେଖି 'ଇନ୍ଦ୍ରଧନୁ' ବନ୍ଦ କରିଦେଲେ । ଏହି 'ଯଯାତି କେଶରୀ' କାବ୍ୟ 'ଉତ୍କଳ ପ୍ରଭା'ରେ ପ୍ରଥମେ ପ୍ରକାଶିତ ହେଲାବେଳେ (୧୮୯୪) ଲେଖକଙ୍କର ନାମ ସଂଯୁକ୍ତ ନ ହୋଇ ବାହାରିଥିଲା । ପରେ ବାମଣ୍ଡା ଜଗନ୍ନାଥବଲ୍ଲଭ ପ୍ରେସରୁ ନାମ ସମ୍ବଳିତ ପୁସ୍ତକ ହୋଇ ବାହାରିଥିଲା ।" †

ଏହି କାବ୍ୟ ବାବଦରେ ସେତେବେଳେ ଏକ ମତ ପ୍ରକାଶ ପାଇଥିଲା ଯେ, "ଯଯାତିକେଶରୀ ନୂତନ ଧରଣର ଖଣ୍ଡିଏ କାବ୍ୟ । ଏଥିରେ ନୂତନଭାବ ଓ ଭାଷାର ଅଭାବ ନାହିଁ । ବର୍ଣ୍ଣନା ଅତି ସରସ ହୋଇ ମନୋମୁଗ୍ଧକର ହୋଇଅଛି । ଏହା ଉତ୍କଳ ସାହିତ୍ୟ ଭଣ୍ଡାରରେ ଖଣ୍ଡିଏ ମୂଲ୍ୟବାନ ରତ୍ନ ସ୍ୱରୂପ । ଜଣେ ସୁରୁଚି ବ୍ୟକ୍ତି ଉକ୍ତ କବିତା ପାଠକରି ଯଥେଷ୍ଟ ସନ୍ତୋଷ ପ୍ରକାଶ କରି କହି ଅଛନ୍ତି ଯେ, ଉକ୍ତ କବିତାର ପ୍ରାଚୀନ ରସିକତା ଏବଂ ନବ୍ୟ ସମୀଚୀନତା ଏକତ୍ର ସମବେତ ହୋଇଅଛି ।" ✻

ଏହି ଆଦିରସାତ୍ମକ କାବ୍ୟଟିର ଗଠନ କଳାରେ ଅନୁସରଣର ଦୃଷ୍ଟାନ୍ତ ଯେ ନାହିଁ, ତା ନୁହେଁ । ରାଧାନାଥ, କେତେକାଂଶରେ ସେକ୍‌ସପିୟରଙ୍କର ସିମ୍ବେଲିନ ନାଟକ ଏବଂ ବଙ୍ଗଳା କବି ଭାରତଚନ୍ଦ୍ରଙ୍କ 'ବିଦ୍ୟାସୁନ୍ଦର' କାବ୍ୟ ଦ୍ୱାରା ପ୍ରଭାବିତ ହୋଇଥିବା ମନେହୁଏ । ମାତ୍ର ଏଠାରେ ପ୍ରଭାବର ପରିମାଣ ସେତେ ବେଶୀ ନୁହେଁ ।

ସେହିପରି ରାଧାନାଥଙ୍କର ଦରବାର (୧୮୯୩) ବା ବଦ୍ଧ୍ୟାସିକା ବାଣୀ ଏକ ସ୍ୱତନ୍ତ୍ରଧାରାର ରଚନା । ସାହିତ୍ୟର ପରିକଳ୍ପନାରେ ଏହା ନୂତନ । ସମଗ୍ର ସମାଜ ଏହାର ଆଖ୍ୟାନ ବସ୍ତୁ । ସମାଜ ଭୂମିରେ ପ୍ରତିପାଳିତ ମଣିଷଙ୍କ ଅନ୍ତର୍ଜୀବନର ଦୋଷ ଦୁର୍ବଳତା ଓ ଅସାର ଆତ୍ମପ୍ରଶଂସା ପ୍ରତି ଏଥିରେ ଏକ ବ୍ୟଙ୍ଗାତ୍ମକ ଦୃଷ୍ଟି

---

† ଶ୍ରୀ ଦୁର୍ଗାଚରଣ ରାୟ—ରାଧାନାଥ ଜୀବନୀ—ପୃଷ୍ଠା ୧୯୫, ୧୯୪୧

✻ ଶ୍ରୀ ବନମାଳୀ ନାୟକ—ସମ୍ବଲପୁରହିତୈଷିଣୀ, ୨୧ ଅଗଷ୍ଟ ୧୮୯୪

କହନ୍ତି । ସମାଜ ସ୍ତରରେ ପ୍ରତିପତ୍ତି ସଂପନ୍ନ ରାଜନ୍ୟବର୍ଗଙ୍କ ଶୁଷ୍କ ଅଭିଜାତ୍ୟ, ସେମାନଙ୍କ ଅନ୍ତଃସାର ଲାଳସା, ବିଳାସପ୍ରିୟତା, ଶାସକଙ୍କୁ ଅଯଥା ତୋଷାମୋଦ ଏବଂ ପୁଲିସ ଡ଼ିପୋର୍ଟି ଇତ୍ୟାଦି କର୍ମଚାରୀମାନଙ୍କର ଲୋକ-ଜୀବନ ଉପରେ ଆଧିପତ୍ୟ ବିସ୍ତାର ପ୍ରଭୃତି ଅନ୍ତଃସାରଶୂନ୍ୟ ମନୋବୃତ୍ତିକୁ ଲକ୍ଷ୍ୟକରି ଏଥିରେ ସମାଲୋଚନାର ସ୍ୱର ଉଦ୍‌ବେଳିତ ହୋଇଛି । ତାହା ସହିତ ମଧ୍ୟ ସୁଜନ ଓ ପ୍ରତିଭାଧରଙ୍କ ପ୍ରଶସ୍ତିରେ ଏହା ମୁଖରିତ ହୋଇ ଉଠିଛି । କାବ୍ୟଟିର କହିବା ଉଦ୍ଦେଶ୍ୟ ହେଉଛି,—ଅନାବିଳ ମାନବତାର ଅବଲମ୍ବନ ପାଇଁ ସମସ୍ତଙ୍କୁ ଚେତେଇ ଦେବା । କାବ୍ୟର ବର୍ଣ୍ଣନା କ୍ରମରେ କବି-ଅନୁଭବ ବିବିଧ ଛନ୍ଦରେ ପରିସ୍ଫୁଟିତ ହୋଇ ଏହି ଧାରଣାକୁ ସ୍ପଷ୍ଟ କରିଛି ।

'ଦରବାର'ର ଅନୁଷ୍ଠାନ ସ୍ଥଳ ହେଉଛି ବାରବାଟୀ ଦୁର୍ଗ । ଏଠାରେ ୨୯, ଅଗଷ୍ଟ ୧୮୯୮ ଦିନ ଗୋଟିଏ ଦରବାର, ସାମନ୍ତ ଚନ୍ଦ୍ରଶେଖର ଓ ଜମିଦାର ଗୋବିନ୍ଦବଲ୍ଲଭଙ୍କୁ ଉପାଧି ପ୍ରଦାନ ଲାଗି, ଅନୁଷ୍ଠିତ ହୋଇଥିଲା । ଗୋବିନ୍ଦବଲ୍ଲଭ ରାୟ ହେଉଛନ୍ତି ରାଧାନାଥଙ୍କର ଭଗିନୀପତି । ତାଙ୍କୁ ରାୟବାହାଦୁର ଏବଂ ସାମନ୍ତ ଚନ୍ଦ୍ରଶେଖରଙ୍କୁ ମହାମହୋପାଧ୍ୟାୟ ଉପାଧି ପ୍ରଦାନ ହେଉଛି ଏହାର ଲକ୍ଷ୍ୟ । ଦେଶର ଗୁଣୀ ଓ ପ୍ରତିଭାବାନ ବ୍ୟକ୍ତିଙ୍କୁ ଏପରି ଉପାଧି ଦାନ, ତାଙ୍କ ପ୍ରତି ଯଥା-ଯୋଗ୍ୟ ସମ୍ମାନ ପ୍ରଦର୍ଶନର ମୌଳିକ ଅବଲମ୍ବନ ନୁହେଁ । ରାଜକୀୟ ତୋଷାମୋଦ ଓ ସରକାରୀ ସୁସଂପର୍କର ମୂଲ୍ୟାୟନରୁ ଉପାଧି ପ୍ରାପ୍ତିର ଯୋଗ୍ୟତା ସ୍ଥିର କରାଯାଏ; ପ୍ରକୃତ ଯୋଗ୍ୟ ଓ ଗୁଣୀ ଲୋକଙ୍କୁ ଯଦି ସମ୍ମାନିତ କରାଯାଉଥା'ନ୍ତା, ସାମନ୍ତ ଚନ୍ଦ୍ରଶେଖର ଅଭାବର କଷଣ ଓ ମର୍ଯ୍ୟାଦାହାନିର ଗ୍ଲାନି ଭୋଗି ନ ଥାନ୍ତେ । ଏଇ ଘଟଣା କବି ରାଧାନାଥଙ୍କୁ ବିଚଳିତ କରିଥିଲା । ନିର୍ଦ୍ଧାରିତ ଦିନରେ ଗୋବିନ୍ଦ ବଲ୍ଲଭ ବାରବାଟୀ ଦରବାରରୁ ଉପାଧି ଗ୍ରହଣ କଲେ । ସେ ଦିନ କିନ୍ତୁ ସାମନ୍ତ ଚନ୍ଦ୍ରଶେଖର ଉପସ୍ଥିତ ହୋଇପାରିଲେ ନାହିଁ; ପରେ କମିଶନର କୁକ୍ ସାହେବ, ଗୋଟିଏ ଅତିରିକ୍ତ ଦରବାର ଡ଼କାଇ ତାଙ୍କ କୋଠିରେ ସାମନ୍ତଙ୍କୁ ଉପାଧି ପ୍ରଦାନ କରିଥିଲେ ।

କେବଳ ଉପାଧି ଦାନ ସାମନ୍ତ ଚନ୍ଦ୍ରଶେଖରଙ୍କ ପ୍ରତି ଯଥାର୍ଥ ସମ୍ମାନ ନୁହେଁ । ପ୍ରତିଭାବାନ ବ୍ୟକ୍ତିଙ୍କୁ ଯେଉଁ ସମ୍ମାନ, ସାଧାରଣ ଜମିଦାର / ରାଜାଙ୍କୁ ସେଇ ସମ୍ମାନ ! ଏହା ଉପଯୁକ୍ତ ବିଚାର ନୁହେଁ—ପ୍ରତିଭା, ଉପାଧିରେ ବଶ୍ୟ ନୁହେଁ ।

ସରକାରୀ ସ୍ତରରେ ଯେଉଁ ମାନଦଣ୍ଡରୁ ଏ ସବୁର ବିଚାର ହୁଏ, କବି ତାହାକୁ ଯୋଗ୍ୟ ମଣି ନାହାଁନ୍ତି । ସମାଜରେ ଥିବା ବିଭିନ୍ନ ମହଲର କାର୍ଯ୍ୟାବଳୀ

କପଟ ଅସାର ଏବଂ ଆତ୍ମବଞ୍ଚନାରେ ପରିପୂର୍ଣ୍ଣ ତାର ସୂଚନା ଦେଇଛନ୍ତି । ସମାଜରେ ନିରଭିମାନୀ ବ୍ୟକ୍ତିତ୍ୱର ଦୃଷ୍ଟାନ୍ତ ବିରଳ । ପ୍ରତିଭାର ପ୍ରତିପୋଷକ ଅପେକ୍ଷା ପ୍ରତିଦ୍ୱନ୍ଦ୍ୱୀମାନଙ୍କର ସଂଖ୍ୟା ଏଠି ବେଶୀ । ଆପଣା ଜୀବନରୁ କବି ଏହାକୁ ହିଁ ଏବ ଉପଲବ୍ଧି କରିଛନ୍ତି । ତାଙ୍କୁ କେନ୍ଦ୍ରକରି ଯେଉଁ ମସୀଯୁଦ୍ଧ ହେଲା, ତାର ପ୍ରଭାବ ତାଙ୍କୁ ଖୁବ୍ ପ୍ରତିକ୍ରିୟାପରାୟଣ କରିଥିଲା । ଅନ୍ତଃକରଣରେ ତା'ର ଦହନ କବି ଅନୁଭବ କରୁଥିଲେ ; କାବ୍ୟରେ ଘଟିଲା ତାର ପ୍ରତିଫଳନ ।

ଦରବାରରେ କବିତାଂଶ ଖୁବ୍ କମ୍; ସମାଜ ଓ ଚଳନ୍ତି ଜୀବନର ଆଚରଣ ସଂକ୍ରାନ୍ତରେ ବକ୍ତବ୍ୟଧର୍ମୀ ଅଭିବ୍ୟକ୍ତିରେ ଏହା ପୂର୍ଣ୍ଣ । କବିଙ୍କର ମତ ମଧ୍ୟ ଭିନ୍ନ ନୁହେଁ । ଗଙ୍ଗାଧରଙ୍କୁ ଲିଖିତ ଏକ ପତ୍ରରେ ରାଧାନାଥ ସୂଚନା ଦେଇଥିଲେ ଯେ, 'ଦରବାର ପଦ୍ୟରେ କବିତାଂଶ ଅତ୍ୟଳ୍ପ ମାତ୍ର ଅଛି । ପ୍ରକୃତ ପକ୍ଷରେ ତାହା କବିତା ନୁହେ, ଉପଦେଶ ଅଟେ ।'* କବିଙ୍କର ଏହି ଅନୁଶୀଳନ ସତ୍ୟ-ବିରୋଧୀ ନୁହେଁ । ତାଙ୍କ ସାରସ୍ୱତ ଜୀବନରେ ଘଟିଥିବା ବିବିଧ ଘଟଣାର ଏକ ସତ୍ୟଲିପି ହେଉଛି, ଏହି ଦରବାର କବିତା । ଏଥିରେ କବି ନିଜକୁ ପ୍ରକଟ କରିଛନ୍ତି, ସମାଜର ଅନ୍ତ-ରୂପକୁ ଚିହ୍ନଟ କରି ଦେଇଛନ୍ତି । ଏହା କବିତା ହୋଇପାରି ନାହିଁ, କାରଣ ଆବେଗ ଅପେକ୍ଷା ଅଭିଜ୍ଞାନର ମାତ୍ରା ଏଠି ବେଶୀ । ପୁଣି କବି-ଶକ୍ତିର ଅବରୋହଣ କାଳରେ ଏହାର ସୃଷ୍ଟି । ଏହି କାବ୍ୟରୁ ଭଗ୍ନମନସ୍କ ରାଧାନାଥଙ୍କୁ ଅଧ୍ୟୟନ କରିହୁଏ, କବି-ଗୌରବରେ ଗରୀୟାନ ରାଧାନାଥଙ୍କର ସ୍ୱ ସତ୍ତା ଖୋଜିପାଇବା ଏଠି କଷ୍ଟ । ତଥାପି କବି-ଜୀବନର ବିପର୍ଯ୍ୟୟ କାଳର ସୃଷ୍ଟି ହିସାବରେ ଏହା ମୂଲ୍ୟହୀନ ନୁହେଁ ।

**ତୁଳସୀ ସ୍ତବକ** (୧୮୯୪, ଜୁଲାଇ) ରାଧାନାଥଙ୍କର ଏକ ଅନୁବାଦ କବିତା । କବି ମନ ଯେତେବେଳେ ଅଶାନ୍ତ ଓ ସମସାମୟିକ ନାନା କାରଣରୁ ବିକ୍ଷୋଭିତ, ସେତେବେଳେ ଏହାର ପ୍ରକାଶନ ଘଟେ । ଏଥିରେ ପ୍ରାପ୍ୟ ସାଧାରଣ ସତ୍ୟର ପ୍ରତିପାଦ୍ୟକୁ ବିଶେଷ ସତ୍ୟ ସହିତ ତୁଳନା କରାଯାଇ ଆଦର୍ଶ ଉପଦେଶାବଳୀ ପ୍ରଦାନ କରାଯାଇଛି । ଏହା ଅନୁବାଦ-କବିତା ହିସାବରେ ଯେମିତି ମୂଳ କବିତା ପ୍ରତି ବିଶ୍ୱସ୍ତ ହୋଇ ପାରିଛି, ଠାଏ ଠାଏ ସ୍ୱକୀୟତାର ପରିସ୍ଫୁଟନରେ ସେମିତି ଅନ୍ତରଙ୍ଗ ହୋଇ ଉଠିଛି । ଅଧ୍ୟୟନରୁ ମନେହୁଏ,

---

* ଡକ୍ଟର ଦେବୀପ୍ରସନ୍ନ ପଟ୍ଟନାୟକ—କବି ଲିପି— ପୃଷ୍ଠା ୬୮, ବିଶ୍ୱଭାରତୀ ୧୯୫୬

କବିମନର ଅଶାନ୍ତ ଅନୁମାନ ଏଥିରେ ଉଚ୍ଚାରିତ ହୋଇଛି । କୌଣସି ସ୍ତରୀ- ଦୃଷ୍ଟାନ୍ତ କଥନ ଅନ୍ତରାଳରେ ସେ ଅପଣାର ପ୍ରତିପକ୍ଷମାନଙ୍କୁ ଆକ୍ଷେପ କରିଛନ୍ତି । †

ଉର୍ବଶୀ (୧୮୯୫, ମାର୍ଚ୍ଚ) କବିଙ୍କର ଅନ୍ୟତମ ଅସଂପୂର୍ଣ୍ଣ କାବ୍ୟ । ଏହାର ଗୋଟିଏ ମାତ୍ର ସର୍ଗ ପଦ୍ୟରେ ଲିଖିତ । କାବ୍ୟ-କଥାର ପ୍ରାରମ୍ଭିକ ଅବତାରଣା ବଂଶୀତ ଅଧିକ ବକ୍ତବ୍ୟର ମଧ୍ୟ ସୁଯୋଗ ନାହିଁ । ଋତୁ ବର୍ଣ୍ଣନାର ଅଭାବ ଭିତରେ କାବ୍ୟଟି ଆରମ୍ଭ ହୋଇଛି । ଶୀତ ସମୁଦାୟ ଯାଇ ନାହିଁ— ବସନ୍ତ ଆସି ନାହିଁ— ମେଦ୍ଦୁର ଏଇ ବେଳେରେ ଏକ ପୁଳକ ସଂକ୍ଷିପ୍ତ ଘଟଣାର ଉନ୍ମୋଚନ କରିଛନ୍ତି କବି । ଅଶୋକର ଏକ ଶ୍ୟାମାଞ୍ଚଳରେ ସଂଜ୍ଞାହୀନ ଉର୍ବଶୀଙ୍କ ସହ ମୃଗୟୁ ପୁରୁରବାଙ୍କର ଘଟିଛି ପ୍ରଥମ ଦର୍ଶନ । ଏଇ ଘଟଣା ଉର୍ବଶୀଙ୍କ ପ୍ରତି ପୁରୁରବାଙ୍କୁ ଆକର୍ଷଣ-ଲୁବ୍ଧ କରିଛି । ସଖୀ ଚିତ୍ରଲେଖା ଠାରୁ ରାଜା ପୁରୁରବା ଉର୍ବଶୀଙ୍କର ଏପରି ଅବସ୍ଥାର କାରଣ ଜାଣିଛନ୍ତି । ଜଣେ ଅପହରଣକାରୀ ଦାନବର ଭୟରେ ଉର୍ବଶୀ ସଂଜ୍ଞାହୀନ, ନିକଟତମ ଜଳାଶୟରୁ ରାଜା ଜଳ ଆଣି ଦେଇଛନ୍ତି, ଚିତ୍ରଲେଖା, ଉର୍ବଶୀଙ୍କ ମୁଖରେ ଜଳ ସିଞ୍ଚନ କରି ତାଙ୍କ ସଂଜ୍ଞା ଫେରାଇ ଆଣିଛି; ଉର୍ବଶୀ ପୁରୁରବାଙ୍କୁ ସଚେତ ଅବସ୍ଥାରେ ଦେଖି ତାଙ୍କ ପ୍ରତି ଆକୃଷ୍ଟ ହୋଇ ପଡ଼ିଛି । ରାଜା, ଚିତ୍ରଲେଖା ଓ ଉର୍ବଶୀଙ୍କୁ ହେମକୂଟ ଗିରିକୁ ନେଇ ଯାଇଛନ୍ତି । ରଥରେ ଗମନ କଲାବେଳେ ଉର୍ବଶୀଙ୍କ ଶରୀର ରାଜାଙ୍କ ଶରୀରକୁ ସ୍ପର୍ଶ କଲାମାତ୍ରେ ଅପୂର୍ବ ଶିହରଣର ଅନୁଭୂତ ଦୁହେଁ ଲାଭ କରିଛନ୍ତି । ହେମକୂଟ ଗିରିରେ ରାଜା ସେମାନଙ୍କୁ ବିଦାୟ ଦେଇ ଫେରି ଆସିଛନ୍ତି ।

ଏତିକ ମାତ୍ର ପଦ୍ୟରେ ବର୍ଣ୍ଣିତ । ପ୍ରଥମ ସର୍ଗ ଏଠାରେ ସମାପ୍ତ । ଗଦ୍ୟା- କାରରେ ଅନ୍ୟ ପାଞ୍ଚୋଟି ସର୍ଗର କଥା-ବସ୍ତୁ ଲିପିବଦ୍ଧ । ତାହା ପଦ୍ୟ ରୂପ ଲାଭ କରିନାହିଁ; ଏଥିରେ ଉଲ୍ଲେଖ ରହିଛି ଯେ, ପ୍ରୟାଗରେ ପୁରୁରବା ଉର୍ବଶୀଙ୍କ ଚିନ୍ତାରେ ମଗ୍ନ ରହିଲେ, ଚିତ୍ରଲେଖା ଓ ଉର୍ବଶୀ ବିମାନରେ ସ୍ୱର୍ଗରୁ ପ୍ରୟାଗ ଅଭିମୁଖେ ଗମନ କଲେ । ପୁରୁରବା ଓ ଉର୍ବଶୀଙ୍କର ସାକ୍ଷାତକାର ଘଟିଲା । ସ୍ୱର୍ଗରୁ

---

† ଦୁଃସହ ହେଲା ଖରରଶ୍ମି କିରଣ / ଦୁଃସହ ଗୁଣୀଯଶ ଝଲେ ଯେସନ
ବିମ୍ବା—ସହନ୍ତି ଧାରା ପାତ ଶଇଳ ଗଣ / ଖଳ ବଚନ ଯଥା ସହେ ସୁଜନ
( ରାଧାନାଥ ଗ୍ରନ୍ଥାବଳୀ—ନୂତନ ସଂସ୍କରଣ—୧୯୭୫, ବ୍ରହ୍ମପୁର— ତୁଳସୀଗ୍ରନ୍ଥବଳ ପୃଷ୍ଠା-୨୪୧ )

ଉର୍ବଶୀ ଭାବରୁ ପାଇଲେ—ଲକ୍ଷ୍ମୀ ସ୍ୱୟମ୍ବର ନାଟକରେ ଲକ୍ଷ୍ମୀ ଭୂମି ଗ୍ରହଣ-ଅଭିନୟ କରିବେ ବୋଲି। କାହାକୁ ବରଣ କରିବେ ବୋଲି ଯେତେବେଳେ ଉର୍ବଶୀଙ୍କୁ ମେନକା ପ୍ରଶ୍ନ କଲେ, ସେତେବେଳେ ଅସାବଧାନତା ବଶତଃ ଉର୍ବଶୀ ପୁରୁରବାଙ୍କ ନାମ ଉଚ୍ଚାରଣ କରିଦେଲେ। ଭରତ ମହର୍ଷି ଅଭିଶାପ ଦେଲେ ଉର୍ବଶୀଙ୍କର ମର୍ତ୍ତ୍ୟ ଅବତରଣ ପାଇଁ; ପୁରୁରବାଙ୍କ ସହ ପ୍ରଣୟ ସଂପର୍କରେ ଆବଦ୍ଧ ହୋଇ ପୁତ୍ର ମୁଖ ଦର୍ଶନ ପର୍ଯ୍ୟନ୍ତ ଉର୍ବଶୀ ମର୍ତ୍ତ୍ୟ ନିବାସ କରି ରହିବେ ବୋଲି ନିର୍ଦ୍ଦେଶ ରହିଲା। ପୁରୁରବା-ଉର୍ବଶୀଙ୍କର ପରିଣୟ ସଂଘଟିତ ହେଲା; କିଛିକାଳ ଉତ୍ତାରୁ ଉର୍ବଶୀଙ୍କର ଅଦୃଶ୍ୟ ଗର୍ଭୋଦୟ ହେଲା, ସେ ପୁରୁରବାଙ୍କର ଅନୁମତି ନେଇ ନୈମିଷାରଣ୍ୟ ଗଲେ, ସେଠାରୁ କିଛିଦିନ ଉତ୍ତାରୁ ଫେରି ଆସିଲେ।

ଏକଦା ବର୍ଷା ଋତୁରେ ରାଜା ଉର୍ବଶୀଙ୍କ ସାଥିରେ ନୈମିଷାରଣ୍ୟ ନିକଟବର୍ତ୍ତୀ ହ୍ରଦ କାନ୍ତାରରେ ପାରିଧିରେ ଥିଲାବେଳେ, ପୁରୁରବା ସ୍ନାନରତା କେତେ ଯକ୍ଷ ଯୁବତୀଙ୍କୁ ଅନୁରାଗୀ ଦୃଷ୍ଟିରେ ଚାହିଁବାରୁ ଉର୍ବଶୀ କ୍ରୋଧ କରି ତାଙ୍କ ଠାରୁ ଚାଲିଗଲେ। ଏଠାରେ ଘଟିଲା ଉର୍ବଶୀଙ୍କ ସହ ରାଜାଙ୍କର ବିଚ୍ଛେଦ। ଏହି ବିଚ୍ଛେଦ ଅବସ୍ଥାରେ ରାଜା ପର୍ବତ କନ୍ଦରାରୁ ଖଣ୍ଡେ ଲାଲ ମଣି ପାଇଲେ। ଜଣେ ଯୋଗୀଙ୍କ ପରାମର୍ଶ ଅନୁସାରେ ସେ ତାକୁ ଗ୍ରହଣ କରି ଅରଣ୍ୟ ବିଚରଣ କରୁଥିବା ବେଳେ ହଠାତ୍ ଗୋଟିଏ ଲତା ନିକଟରେ ଅଟକି ଗଲେ ଏବଂ ମଣିଟି ସେହି ଲତାକୁ ଛୁଇଁ ଦେଲାକ୍ଷଣି ଲତାଟି ଉର୍ବଶୀ ଶରୀର ଧାରଣ କଲା। ଉର୍ବଶୀ ରାଜାଙ୍କୁ ଜଣାଇଲେ ଯେ ଏହି ବନ କାର୍ତ୍ତିକେୟଙ୍କର ଏବଂ ଏଠାରେ ନାରୀ ପ୍ରବେଶ କଲାକ୍ଷଣି ଲତାରେ ପରିଣତ ହୋଇଯାଏ। ଏଠି ଉର୍ବଶୀ-ପୁରୁରବାଙ୍କର ପୁନର୍ମିଳନ ହେଲା।

ମିଳନ ଉତ୍ତାରୁ ସେମାନେ ବ୍ୟାସତୀର୍ଥକୁ ସ୍ନାନ ନିମନ୍ତେ ବାହାରିଲେ। ସ୍ନାନ କାଳରେ ମଣିଟି ତଟରେ ଥୋଇ ଦେଇଥିଲେ। ପକ୍ଷୀଟିଏ ତାକୁ ନେଇ କାହିଁ କୁଆଡ଼େ ଉଡ଼ିଗଲା। ହଠାତ୍ ପକ୍ଷୀଟି ଶରଘାତ ପାଇ ତଳେ ପଡ଼ିଗଲା—ପୁରୁରବା ପକ୍ଷୀ ଦେହରୁ ଶର ବାହାରକରି ଦେଖିଲେ ଯେ ଶର ମୂନରେ ତାଙ୍କ ପୁତ୍ରର ଆୟୁଷ ଲେଖା ହୋଇଅଛି। ଅତି ବିସ୍ମୟକର ଘଟଣା। ଏହି ସମୟରେ ଜଣେ ବୃଦ୍ଧା ତପସ୍ୱିନୀ ଧନୁଶରଧାରୀ ବାଳକକୁ ଆଣି ପହଞ୍ଚାଇ ଦେଲେ। ଉର୍ବଶୀ ସବୁକଥା ଜଣାଇ ଦେଲେ—ନୈମିଷାରଣ୍ୟରେ ସେ ପୁତ୍ର ଜନ୍ମକରି ତାକୁ ମୁନି ଆଶ୍ରମରେ ଛାଡ଼ି ଆସିଥିଲେ। ଏବେ ପୁତ୍ର ମୁଖ ଦର୍ଶନ ହେବାରୁ ତାଙ୍କର ଅଭିଶାପ ପୂର୍ଣ୍ଣ ହେଲା—ଉର୍ବଶୀ ମର୍ତ୍ତ୍ୟ ଲୋକ ତ୍ୟାଗକରି ଚାଲିଗଲେ। ପୁରୁରବା ହେଲେ ବାନପ୍ରସ୍ଥୀ।

କାବ୍ୟଟିର କଥାବସ୍ତୁ ଯେପରି ପରିଗଠିତ ତାହା ପୂର୍ଣ୍ଣତଃ କାବ୍ୟ-ରୂପ ପେନିଥିଲେ କବି ମାନସର ମୂଲ୍ୟାଙ୍କନ ଭିନ୍ନ ପ୍ରକାର ହୋଇଥା'ନ୍ତା । କବି-ଶକ୍ତିର ଅବକ୍ଷୟ କାଳରେ ଏହାର ସୃଷ୍ଟି; ତେଣୁ ଏହି ଅବକ୍ଷୟର ମୁଦ୍ରାଂକ ଏଥିରେ ନିହିତ । ସେହିପରି କବିଙ୍କର ଅନ୍ୟାନ୍ୟ ରଚନା ମଧ୍ୟରୁ ଘନବିଛ୍‌ (୧୮୯୮) ଦଶରଥ ବିୟୋଗ (୧୯୦୧), କାଳିଦାସ ସ୍ମୃତ୍ୟୁଃ (୧୯୦୨), ଭାରତ ଗୀତିକା (୧୯୦୩), ଧବଳେଶ୍ୱର ପ୍ରୋଦ୍‌ଗମ (୧୯୦୩), ବାଣହରଣ (୧୯୦୪), ଦୁର୍ଯ୍ୟୋଧନର ରକ୍ତନଦୀ ସନ୍ତରଣ (୧୯୦୪), ଶମ୍ଶାନ ଦୃଶ୍ୟ (୧୯୦୪), ଏକାଗ୍ରତା (୧୯୦୪) ସାବିତ୍ରୀ ଚରିତ (୧୯୦୬), ଏବଂ ରାଧାନାଥଙ୍କର ସ୍ୱୀକାରୋକ୍ତି (୧୯୦୭) ପ୍ରଭୃତି ବିଶେଷ ମୂଲ୍ୟବାନ ସାହିତ୍ୟ କୃତି ନୁହେଁ । ଏଥିଭିତରୁ ଅଧିକାଂଶ ଦେଶୀ କଥା-ବସ୍ତୁ ଏବଂ ରାମାୟଣ ମହାଭାରତ ଉପାଖ୍ୟାନ ଅବଲମ୍ବନରେ ଲିଖିତ । ଦଶରଥ ବିୟୋଗ, ସାବିତ୍ରୀ ଚରିତ, ବାଣହରଣ, ଦୁର୍ଯ୍ୟୋଧନଙ୍କର ରକ୍ତନଦୀ ସନ୍ତରଣଇତ୍ୟାଦି ରାମାୟଣ ମହାଭାରତର ଉପାଖ୍ୟାନ ଉପରେ ଆଧାରିତ ।

ଦଶରଥ ବିୟୋଗ ଏବଂ ଦୁର୍ଯ୍ୟୋଧନଙ୍କର ରକ୍ତନଦୀ ସନ୍ତରଣ କବିତା ଦୁଇଟି କାରୁଣ୍ୟଭରା କବି-ଅଭିବ୍ୟକ୍ତିରେ ପରିପୁଷ୍ଟ । କବିଙ୍କ ଅନ୍ତର ଆତ୍ମାର କାରୁଣ୍ୟ ବିଷୋଭିତ ଧ୍ୱନି ଏହି କବିତାଗୁଡ଼ିକରୁ ହିଁ ଶୁଣା ଯାଇଥାଏ । ଦୁର୍ଯ୍ୟୋଧନଙ୍କର ରକ୍ତନଦୀ ସନ୍ତରଣରେ ମହାମାନୀ ଦୁର୍ଯ୍ୟୋଧନଙ୍କ ବ୍ୟକ୍ତିତ୍ୱର ଅସହାୟତା ଏବଂ ଅନ୍ତିମ କାଳରେ ତାଙ୍କ ଶୋକ ବିକ୍ଷୁବ୍ଧ ଚିତ୍ତର ଆର୍ତ୍ତନାଦ ପ୍ରକାଶ ପାଇଛି । ଦୁର୍ଯ୍ୟୋଧନଙ୍କ ଜୀବନରେ ଯେଉଁମାନେ ସକଳ ସାମର୍ଥ୍ୟ ଓ ପ୍ରତିପତ୍ତିର କାରଣଥିଲେ ଶେଷ ଜୀବନରେ ସେମାନେ ଦୁର୍ଯ୍ୟୋଧନଙ୍କର ସହାୟ ହୋଇପାରି ନାହାଁନ୍ତି । ଦୁଃଶାସନ, କର୍ଣ୍ଣ, ଦ୍ରୋଣ, ଶକୁନି ଇତ୍ୟାଦି କ୍ଷତ୍ରୀୟ ବୀରଗଣ ଦୁର୍ଯ୍ୟୋଧନଙ୍କୁ ଶୋଣିତ-ସ୍ରୋତ ଅତିକ୍ରମ କରି ଇପାରିନାହାନ୍ତି । ବ୍ୟାସ ସରୋବର ନିକଟରେ ତାଙ୍କୁ ପହଞ୍ଚାଇ ଦେଇ ପାରିନାହାଁନ୍ତି କେବଳ ଲକ୍ଷଣ କୁମାର ହିଁ ତାଙ୍କର ସହାୟ ହୋଇଛନ୍ତି । ତାର ଶବକୁ ଭେଳା କରି ଦୁର୍ଯ୍ୟୋଧନ ରକ୍ତନଦୀ ସନ୍ତରଣ କରି ପାରିଛନ୍ତି । ସେତେବେଳେ ଏହି ଅଚାନ୍ଥା ଶବପ୍ରତି ଦୁର୍ଯ୍ୟୋଧନଙ୍କ ମୁଖରୁ ଯେଉଁ କୃତଜ୍ଞତାର ଭାଷା ଉଚ୍ଚାରିତ ହୋଇଛି

ତାହା ଖୁବ୍ ଅନୁଭେଦ୍ୟ † । ଅନୁଭୂତର ବିଶ୍ୱସ୍ତ ପରିପାଟୀରେ ଏହା ପରିପୂର୍ଣ୍ଣ । ଦୁର୍ଯ୍ୟୋଧନଙ୍କ ବିଳପନ ଓ ଆର୍ତ୍ତନାଦରୁ ଏହି ଅନୁଭୂତର ଗମ୍ଭୀରତା ଅନୁମେୟ । ପୁତ୍ର ନିକଟରେ ହିଁ ତାଙ୍କ କୃତକର୍ମର ଅନୁଶୋଚନା ସେ ପ୍ରକାଶ କରିଛନ୍ତି । ※ ଏଇ ଉପଲବ୍ଧିରେ ସେ ପହଞ୍ଚିଛନ୍ତି ଯେ, 'କେବେହେଁ ନ ହେଉ ମୋହପରି ପିତା / ତୋ ପରି ପୁତ୍ର ହେଉ ଜନମେ ଜନମେ' ।

ଅନୁଭୂତର ଅନ୍ତରଙ୍ଗତା ନ ଥିଲେ ଏପରି ଅଭିବ୍ୟକ୍ତିର ସ୍ଫୁରଣ ସହଜ ନୁହେଁ । ଅନୁଭୂତର ଗମ୍ଭୀରତା ଲାଗି କବିତାଟି ମର୍ମସ୍ପର୍ଶୀ ହୋଇପାରିଛି ।

---

† ବୋଇଲେ ସେ ଶବପ୍ରତି 'ଦୁଃଶାକର୍ଣ୍ଣ ଆଦି
ଯୋଗେ ଯା ନୋହିଲ, ସାଧିହେଲା ତୋହିଯୋଗେ
କିଏ ତୁ ମହାତ୍ମା ? ମୃତ ହୋଇ ଉପକାରୀ
ହେଲୁ ଏଡ଼େ ତୁ ମୋହର ଏ ଆତଙ୍କ ବେଳେ ?
ବୁଲାଇ ସେ ଶବମୁଖ ନିରେଖନ୍ତେ ପୁଣି
ଚିହ୍ନିଲେ ସଙ୍କେତେ ରାଜା କୁମାର ଲକ୍ଷଣେ
ଶୋକେ ଅସମ୍ଭାଳ ହୋଇ ବାହୁନି ବାହୁନି
ଶବକୁ ନିରେଖି ତହୁଁ କହିଲେ ଆରତେ
ଏକମାତ୍ର କୁଳାଙ୍କୁର ଏହି କୁରୁକୁଳେ
କୁମାର ଲକ୍ଷ୍ମଣ ତୁହିଥିଲୁ ଯେଣୁ କରି
ତୋର ରକ୍ଷା ଲାଗି ତୋତେ ରଣସ୍ଥଳୁଁ ମୁହିଁ
ପେଷିଲଇଁ ଗୁପ୍ତପଥେ କୌରବ ଶିବିରେ
ଆହା ତୋ ଠାରେ କିଏ କଲା ଏ ଅନୀତି !
( ରାଧାନାଥ ଗ୍ରନ୍ଥାବଳୀ—( ଦୁର୍ଯ୍ୟୋଧନଙ୍କର ରକ୍ତନଦୀ ସନ୍ତରଣ )—
ନୂତନ ସଂସ୍କରଣ ପୃ ୩୯୭ )

※ ବେଦପଢ଼ା ଦେବାଲାଗି ତୁମେ କଲ ଅଳି
ବିନା ଯୁଦ୍ଧେ ସୂଚୀମୂନ ଦେବିନାହିଁ କ୍ଷିତି ।
କର୍ଣ୍ଣ ଶକୁନିଙ୍କ ସଙ୍ଗେ ପାଞ୍ଚି ମନ୍ତ୍ରଣା
ପ୍ରତିଫଳ ତାର ବାବୁ ପାଇଲି ମୁଁ ଏବେ
ଏଡ଼େ ବଡ ସମ୍ପଦ ମୁଁ ହେଳେ ବୁଡ଼ାଇଲି ।
( ରାଧାନାଥ ଗ୍ରନ୍ଥାବଳୀ — ନୂତନ ସଂସ୍କରଣ; ୧୯୭୬—ବ୍ରହ୍ମପୁର
ପୃ ୩୯୮ )

କବିପ୍ରତିଭାର ବିକାଶକାଳରେ ଏହାର ସୃଷ୍ଟି ଘଟିଥିଲେ ମଧ୍ୟ ଏହା ସେତେ ଅନାଦରଣୀୟ ହୋଇ ନାହିଁ ।

କବିଙ୍କର 'ଶ୍ମଶାନ ଦୃଶ୍ୟ' କବିତାଟି ସଂସ୍କୃତ ଚଣ୍ଡକୌଶିକ ନାଟକର ଛାୟାରେ ଲିଖିତ । ଶ୍ମଶାନରେ ରାଜା ହରିଶ୍ଚନ୍ଦ୍ରଙ୍କର ଭୃତ୍ୟ ଜୀବନଯାପନ ଅବସରରେ ଏହାର ଦୃଶ୍ୟ ଏଥିରେ ବର୍ଣ୍ଣିତ । ପରିବେଶର ଏକ ବର୍ଣ୍ଣନାତ୍ମକ ବିବରଣୀ ଭିତରେ କବିଙ୍କର ସ୍ୱଭାବବାଦୀ ଆତ୍ମାର ପ୍ରକାଶ ଏଠି ଘଟିଛି ।

ବାଲ୍ୟ ଜୀବନରେ କବି ଶ୍ମଶାନଠାରୁ ଯେଉଁ ଅନୁଭୂତ ଲାଭ କରିଥିଲେ କିମ୍ବା ତାର ବିକଟ ଓ ପ୍ରଶାନ୍ତ ପରିବେଶର ପ୍ରଭାବ ତାଙ୍କ ମନକୁ ଯେପରି ସ୍ୱଭାବାକୁଳ କରୁଥିଲା ତାହାର ପୁନରାବୃତ୍ତି ଏହି କବିତାରେ ପରିଲକ୍ଷିତ ହୁଏ । ଏକାଗ୍ରତା କବିତାଟି ସେହିପରି ଦ୍ରୌପଦୀଙ୍କ ବସ୍ତ୍ରହରଣ ବୃତ୍ତାନ୍ତ ଉପରେ ଆଧାରିତ । ଏହା ଘଟଣା-ବାଖ୍ୟାନମୂଳକ ନୁହେଁ ବରଂ ଭାବପରିଚୟାତ୍ମକ । ଅସାଦାୟ୍ୟା ଦ୍ରୌପଦୀ-ଙ୍କର କୃଷ୍ଣ-ପ୍ରୀତିରେ ଆର୍ତ୍ତି ଆକୁତିର ଗମ୍ଭୀରତା କଳନା କରିବା ହିଁ ଉଚ୍ଚ କବିଙ୍କ ପ୍ରଧାନ କଥା । ଏକାଗ୍ରତା ଥିଲେ ଭକ୍ତର ମୂଲ୍ୟ ମିଳେ; ଭଗବାନ ଭକ୍ତର ସମୀପବର୍ତ୍ତୀ ହୁଅନ୍ତି । ଏହି ଚେତନାର ପ୍ରତିପାଦକ ହେଉଛି ଏକାଗ୍ରତା କବିତା । 'ମହେନ୍ଦ୍ରଗିରି' ହେଉଛି କବିଙ୍କର ଏକ କାଳ୍ପନିକ କାବ୍ୟ । ମହେନ୍ଦ୍ରଗିରି ସହିତ ସଂପୃକ୍ତ ବିଭିନ୍ନ କମ୍ବଦନ୍ତୀର କାବ୍ୟାୟନ ଏଥିରେ ପରିଲକ୍ଷିତ । ପ୍ରକୃତ ବର୍ଣ୍ଣନା ହେଉଛି ଏହାର ପ୍ରଧାନ ବସ୍ତୁ ।

'ସତୀ ପ୍ରତି ସତୀଦ୍ରୋହୀ ପତିର ଉକ୍ତି' କବିତାଟି ଆତ୍ମାନୁଶୋଚନାରେ ପରିପୂର୍ଣ୍ଣ । ରାଧାନାଥଙ୍କ ଶେଷ ଜୀବନରେ ଘଟିଥିବା ପ୍ରଣୟ ବ୍ୟାପାରର ପ୍ରତିକ୍ରିୟା ଏଥିରେ ପ୍ରତିଫଳିତ । ନଗେନ୍ଦ୍ରବାଳାଙ୍କ ପ୍ରତି କବିଙ୍କର ପ୍ରଣୟାସକ୍ତି ତାଙ୍କୁ କିଛିକାଳ (୧୯୦୦–୧୯୦୮) ପାଇଁ ବଶୀଭୂତ କରି ଦେଇଥିଲା । ଜୀବନରେ ଏପରି ଘଟଣାକୁ ସହଜ ଆଖିରେ କବି ଦେଖି ପାରି ନଥିଲେ । ଅପଣାର ଆଦର୍ଶ ଦୀପ୍ତ ବ୍ୟକ୍ତିତ୍ୱ ବିପର୍ଯ୍ୟସ୍ତ ହୋଇଯାଇଥିଲା । ତାହାରି ଅନୁଶୋଚନାର କେତୋଟି ଅକ୍ଷର ହେଉଛି, ତାଙ୍କର ଏଇ କବିତା; ପତ୍ନୀ ପରଶମଣି ଦେବୀଙ୍କ ପ୍ରତି ଉଦ୍ଦିଷ୍ଟ । କବି ହେଲେ ଚରିତ୍ର ଭ୍ରଷ୍ଟ ଓ ପତ୍ନୀ ଶ୍ରେଷ୍ଠ; ଯାହାକି ତାଙ୍କ ଜୀବନ ଓ ଆଦର୍ଶ ପକ୍ଷରେ ଏକ ବ୍ୟତିକ୍ରମ । ଦେହଜ ଦୁର୍ବଳତାର ଶିକାର ହେଲେ ସେ; ଆଦର୍ଶର ବିଚ୍ୟୁତି ଘଟିଲା । ଅଜ୍ଞାତ ପଥର ପଥିକ ହେବା ଫଳରେ ଆତ୍ମ ଦହନ ଓ ବିବେକର ବୃଶ୍ଚିକ ଦଂଶନ ଭିତରେ ସେ ଜୀବନ ବିତାଉଥିଲେ ।

ଅପଣା ଅନ୍ତଃବେଦନାର ଏକ ମୁକ୍ତ ଅଭିବ୍ୟକ୍ତି କବି ପ୍ରକାଶ କରିଛନ୍ତି— ଏଇ 'ଦଗ୍ଧ ପ୍ରତି ବଗ୍ଧ ଦ୍ରୋହୀ ପତିର ଉକ୍ତି' କବିତାରେ * । ପାପ ପ୍ରଣୟର କବଳରେ କଳ୍ପିତ ନବ-ହୃଦୟ ପତ୍ନୀଙ୍କ ଉଦ୍ଦେଶ୍ୟରେ ଆପଣାର ଅନ୍ତଃସ୍ପୃହତାକୁ ନିଃସଂକୋଚରେ ଉନ୍ମୋଚିତ କରି ଦେଇଛନ୍ତି । ବିବେକର ବେତ୍ରାଘାତରେ ତାଙ୍କର ପଥଭ୍ରଷ୍ଟ ମନ ଯେତେବେଳେ ଚଳପଥକୁ ଫେରି ଆସିଛି, ସେତେବେଳେ କବି ଆପଣା ଉପରୁ ସଂପୂର୍ଣ୍ଣ ରୂପେ ବିଶ୍ୱାସ ହରାଇ ଦେଇଛନ୍ତି । ପତ୍ନୀ ନିକଟରେ ମଧ୍ୟ ହୋଇଛନ୍ତି ବିଶ୍ୱାସ ଦ୍ରୋହୀ । ଯେତେ ଯେପରି ନିଃସ୍ୱ ଓ ମିଥ୍ୟାଚାରର ଜୀବନର ଅଖଣ୍ଡ ଶୂନ୍ୟତା ତାଙ୍କୁ ଘେରି ରହିଛି— ବେଳେବେଳେ ଅଦ୍ଭୁତ ସମ୍ଭାବନା ତାଙ୍କ ମନକୁ ଚୁଇଁଛି । କବି ଭାବିଛନ୍ତି— ଏପରି କେଉଁ ସମର୍ଥ ଶକ୍ତି

---

* ଚରିତ୍ରକୁ ଲକ୍ଷ୍ୟ ମୋର ଥିଲା ସବୁକାଳେ
କି ଯୁବା କି ପ୍ରୌଢ଼ କାଳେ, କି ବୃଦ୍ଧ ବୟସେ
ରହିବି ଜୀବନେ ଏକ ପତ୍ନୀ ବ୍ରତୀ ହୋଇ
ଏହାହିଁ ମୋହର ଲକ୍ଷ ଥିଲା ସବୁଦିନେ
ଆଦରଣ ସୁଚରିତ୍ରେ ହେବାକୁ ସମାଜେ
ପୋଷିଥିଲି ଆଶା, ଦେବି ହୃଦୟେ ନିରତେ
ଲକ୍ଷ୍ୟ ଅନୁରୂପେ ଥିଲି ରତ ଅନୁଷ୍ଠାନେ
କୁକ୍ଷଣେ ବିଦେଶେ ଯାଇ ତୋ ସଙ୍ଗ ହରାଇ
ପଡ଼ିଲି କୁଭାଗ୍ୟ ଚକ୍ରେ ରାକ୍ଷସୀ ହାବୋଡ଼େ
ଖସିଗଲା ଏ ପାଦ ଅନ୍ଧାରର ପଥେ
କୁଟିଳ ପିଚ୍ଛିଳ ପୁଣି ପାପର କର୍ଦ୍ଦମେ
ଫେରି ଆସିବାକୁ ଚେଷ୍ଟା କରିଥିଲି କେତେ
ବିଫଳ ପ୍ରୟାସ ହେଲା ସେ ରାକ୍ଷସୀ କୂଟେ
ହୃଦୟ ଦୌର୍ବଲ୍ୟ ମୋର ଯୋଗ ଦେଲା ତହିଁ
ସ୍ୱାର୍ଥ ସିଦ୍ଧି ଲାଗି ମୋତେ ସେହି ପାପୀୟସୀ
ଦେଖାଇଣ ବିଭୀଷିକା ରଖିଲା ଆକଟେ
ଦୁର୍ବଳ ମୁଁ ଯେଣୁ ସଦା କି ମନେ ଶଙ୍କରେ
ମାୟାବିନୀ-ମାୟାଜାଲ ନ ପାରିଲି ଛେଦି ।

( ରାଧାନାଥ ଗ୍ରନ୍ଥାବଳୀ—ନୂତନ ସଂସ୍କରଣ, ବ୍ରହ୍ମପୁର—୧ ୬୫, ପୃଷ୍ଠା ୩୯୧ )

ଜଣ ନାହିଁ, ଯିଏ କି ତାଙ୍କର ରତ୍ନୋତ୍ତମ ଚରିତ୍ର ଓ ପୂର୍ବର ନିଷ୍ପାପତା ଫେରାଇ ଆଣି ପାରିବ ? †

ନାହିଁ ସେଇ ସମ୍ଭାବନା ? ମନର ଚତୁଷ୍କୋଣରେ ଖାଲି ଶୂନ୍ୟତାର ଭୈରବୀ ଗର୍ଜନ । ମର୍ମଭେଦୀ ଅନୁତାପ ଜ୍ୱାଳାରେ ଜର୍ଜରିତ ରାଧାନାଥ, ନିରନ୍ତର ଚେଷ୍ଟା କରୁଥିଲେ ଆତ୍ମବିଶୋଧନ ପାଇଁ, ଆତ୍ମଦହନ ଓ ଅନୁଶୋଚନାରୁ ମୁକ୍ତି ପାଇଁ । ମନେ ମନେ ଉପାୟ ଖୋଜୁଥିଲେ । କବିଙ୍କର ହୃଦବୋଧ ହେଲା ଯେ, ସତ୍ୟ ପ୍ରକାଶରେ କେବଳ ଆତ୍ମଶୁଦ୍ଧି ସମ୍ଭବ । ଏଥିରେ ଏକାନ୍ତଭାବେ ବିଶ୍ୱାସ ଥାପି ରାଧାନାଥ, ଅପଣା ଅର୍ଜିତ ଗୌରବ, ପଦ ମର୍ଯ୍ୟାଦା, ଉପାଧି, ଧନ ସଂପତ୍ତି, ସମ୍ମାନ ଓ ପରିଜନ ଇତ୍ୟାଦିକୁ ମଧ୍ୟ ଆବଶ୍ୟକ ପଡ଼ିଲେ ପରିତ୍ୟାଗ କରିବାକୁ କୁଣ୍ଠାବୋଧ କରିନଥିଲେ ।

ପାପ ପ୍ରଣୟର ଅନୁଚିନ୍ତାରେ ରାଧାନାଥଙ୍କର ମାନସିକ ଯନ୍ତ୍ରଣା ୧୯୦୪—୧୯୦୭ ପର୍ଯ୍ୟନ୍ତ ଏଇ ତିନିବର୍ଷ ଏପରି ଉତ୍କଟ ହୋଇ ଉଠିଥିଲା ଯେ ସେ ପ୍ରାୟ ସବୁବେଳେ ଅଶାନ୍ତ ଘୂର୍ଣ୍ଣିଝଡ଼ ଅସ୍ଥିରତା ପ୍ରକାଶ କରୁଥିଲେ । ଶଶିଭୂଷଣ, ତାଙ୍କ ପାଖେ ପାଖେ ଥାଇ କବିଙ୍କ ମନକୁ ପୁଷ୍ଟ ଓ ଶାନ୍ତ୍ୱନାରେ ବଶ କରାଇବାକୁ ଉଦ୍ୟମ କରୁଥିଲେ । ରାଧାନାଥଙ୍କ ତରଫରୁ ମଧ୍ୟ କୌଣସି ଉଦ୍ୟମର ଅଭାବ ନଥିଲା । ପ୍ରତ୍ୟହ ସକାଳୁ ଦୁଇଘଣ୍ଟା ସେ ମଧୁସୂଦନ ନାମ ସହସ୍ରଥର ଲେଖୁଥିଲେ । ଦିନକୁ ଦୁଇ ତିନିଥର କାଠଯୋଡ଼ୀ ନଦୀରେ ସ୍ନାନ କରୁଥିଲେ, କିନ୍ତୁ ଏହାର ପ୍ରଭାବ ଘଣ୍ଟାଏ ଦୁଇଘଣ୍ଟାରୁ ଅଧିକ ରହୁନଥିଲା । ଏହି ଚରି

---

† ଏ ସଂସାରେ ଏ ଗହଳ ଲୋକ କୋଲାହଳେ
ନିଜକୁ ମୁଁ ଜଣେ ବୋଲି ମଣୁ ନାହିଁ ଆଉ,
କେହି କି ଜଗତେ ନାହିଁ ସକ୍ଷମ ଦେବାକୁ
ଫେରାଇ ମୋହର ସେହି ପୂର୍ଣ୍ଣ ନିଷ୍ପାପତା,
ସେ ସ୍ୱର୍ଗୀୟ ରତ୍ନ ମୋର-ରତ୍ନୋତ୍ତମ ଭବେ
ସକ୍ଷମ କି ଏ ଜଗତେ ଜଣେ କେହି ନାହିଁ
ଧୋଇବାକୁ ମୋର ଏହି ହୃଦୟର କାଳି ?
କିଏ ଦୟାବହି ମୋତେ ଢାଳି ଶାନ୍ତିବାରି
ସରସ ପ୍ରଫୁଲ୍ଲ କରିଦେବ ପୂର୍ବପରି
ଏକମାତ୍ର ଆଶା ମୋର ଅଛି ପ୍ରଭୁ ପାଦେ ।
( ରାଧାନାଥ ଗ୍ରନ୍ଥାବଳୀ— ନୂତନ ସଂସ୍କରଣ; ପୃଷ୍ଠା ୩୬୦, ବ୍ରହ୍ମପୁର ୧୯୬୫ )

ବିକ୍ଷୋଭ କାଳରେ ସେ ଆତ୍ମବିଶ୍ଳେଷଣ କରିଛନ୍ତି, କୃତକର୍ମର ଅନୁଶୀଳନ ଲାଗି ଯତ୍ନ କରିଛନ୍ତି । ଆପଣାର ପଶ୍ଚାତାପ ଓ ଅନୁଶୋଚନାକୁ 'ଆତ୍ମକଥା'ରେ ଲିପିବଦ୍ଧ କରିଯାଇଛନ୍ତି ।

'ଆତ୍ମକଥା'ର ଲିଖିତାଂଶ ହେଉଛି କବିଙ୍କର ଅନୁତାପର ଏକ ପ୍ରାମାଣିକ ନିଦର୍ଶନ । ଏହାକୁ ବିଶ୍ଳେଷଣ କଲେ ରାଧାନାଥଙ୍କ ବିଷୟରେ ଅନେକ କିଛି ଜାଣିବାର ସୁଯୋଗ ମିଳେ । କବି ମନର ଭୟଙ୍କର ପୀଡ଼ା, କଳୁଷିତ ବିବେକର ଜ୍ୱଳନ ଏବଂ ପାପ-ବୋଧ ପ୍ରତି ତାଙ୍କର ଦୃଷ୍ଟିକୋଣ ସଂପର୍କରେ ଏଥିରୁ ଯଥେଷ୍ଟ ଉପାଦାନ ମିଳିଥାଏ । *

ବିବେକର ଦଂଶନରେ ଅତ୍ୟନ୍ତ କାତର ହୋଇ ପଡ଼ିଛନ୍ତି କବି । ସେ ଅନୁଭବ କରିଛନ୍ତି, 'କଳୁଷିତ ବିବେକ ଭଳି ତୀବ୍ର ଯନ୍ତ୍ରଣାପ୍ରଦ ବିଷୟ ବୋଧହୁଏ ଜଗତରେ ଆଉ କିଛି ହିଁ ନାହିଁ । ହୃଦୟ ସର୍ବଦା ଜଳୁଥାଏ ଏବଂ କ୍ରମଶଃ ଶରୀର ମଧ୍ୟ ଯନ୍ତ୍ରଣାରେ ଅଭିଭୂତ ହୋଇ ଯେପରି ତୁଷାନଳରେ ଦହ୍ୟମାନ ହେଉଥାଏ । ବର୍ତ୍ତମାନ ମୋହୋର ଶାରୀରିକ ଯନ୍ତ୍ରଣା ଅତି ତୀବ୍ର ।' † ଶରୀର ଓ ମନ ଉଭୟ ସ୍ତରରେ କବି ଭୋଗୁଥିଲେ ଯନ୍ତ୍ରଣାର ଦାଉ । କେବଳ ପାପ-ବୋଧର ଦୁଃଛେଦ୍ୟ ସ୍ମୃତି ହିଁ ତାଙ୍କୁ ଖୁବ୍ ବିଚଳିତ କରିପକାଉ ଥିଲା । ସମାଜରେ ଆପଣାର ଭୂମିକା କଥା ଭାବିଲାବେଳକୁ ବିବେକ ତାଙ୍କୁ ବାଧା

* "ମୋହର ଯେ ରୂପ ଯନ୍ତ୍ରଣା ଭୋଗ ହେଉଅଛି, ଏ ରୂପ ଯନ୍ତ୍ରଣା ଜୀବନରେ ଭୋଗ ହୋଇ ପାରେ, କଳ୍ପନାରେ ତାହା ମନେ କରିନାହିଁ । ଯନ୍ତ୍ରଣା ମାନସିକ ଓ ଶାରୀରିକ । ନରକ ଯନ୍ତ୍ରଣା ରଚନାର କିରୂପ, ତାହା ମୁଁ ଇହଲୋକରେ ଭୋଗ କରୁଅଛି । ଅନ୍ୟର କଥା ନୁହେଁ, ମୋହର ନିଜର ରଚନା ଯେତେବେଳେ ମୁଁ ମନେ କରେ ଯେ ମୁଁ ତୁଳସୀ ସ୍ତବକ, ଦରବାର ମହାଯାତ୍ରା ପ୍ରଭୃତିର ରଚୟିତା, ସେତେବେଳେ ଲଜ୍ଜାରେ ମ୍ରିୟମାଣ ହୋଇଥାଏ । ଭଗବାନଙ୍କର ଅପର ନାମ ବିଧି; ଜଗତର ପ୍ରତ୍ୟେକ ଅଣୁ ପରମାଣୁ ବିଧି ଦ୍ୱାରା ଗୃହୀତ ଏବଂ ନିୟନ୍ତ୍ରିତ । ସେହି ବିଧି ମୁଁ ଜାଣିକି ଲଙ୍ଘନ କଲି, ଏହାର କେଉଁ ପ୍ରତିକାର କରିବି ଏହା ଭାବି ଅସ୍ଥିର ହୁଏ ।"

(ଶ୍ରୀ ଦୁର୍ଗାଚରଣ ରାୟ — ରାଧାନାଥ ଜୀବନୀ — ପୃଷ୍ଠା ୪୬୭, କଟକ ୧୯୪୧, ଆତ୍ମକଥାର କିୟଦଂଶ)

† ଶ୍ରୀ ଦୁର୍ଗାଚରଣ ରାୟ — ରାଧାନାଥ ଜୀବନୀ (୧୯୪୧) ପୃଷ୍ଠା ୪୬୮, କଟକ ।

ଦେଉଥିଲା, ଲୋକରେ ଆପଣାକୁ ଚର୍ଚ୍ଚିତ କରିବାକୁ ଗଲାବେଳେ ବିବେକ ମଧ୍ୟ ସେଠି ପଛରୁ ଦେଉଥିଲା ତଣ୍ଟିଆ ପ୍ରହର । †

ପାପର ଧାରଣା ମଧ୍ୟ ରାଧାନାଥଙ୍କର ମନ ଓ ଶରୀର ଅସହ୍ୟ ବେଦନାରେ ଥରି ଉଠୁଥିଲା ! କି ଭୟଙ୍କର ସେ ପାପର ରୂପ ! ଚତୁର୍ଦ୍ଦିଗରେ ଏହି ପାପର ନୃତ୍ୟରତ । ପ୍ରତି ମୁହୂର୍ତ୍ତରେ ପ୍ରଜ୍ୱଳିତ ଏହି ପାପର ହୁତାଶନ । ଏହା ଏତେ ସଂକ୍ରାମକ ଓ ସର୍ବଗ୍ରାସୀ ପଣରେ ଏମିତି ଜଣେ ବିଶ୍ୱାସୀ ଯେ ଥରେ ଏହାଙ୍କ ସହିତ ସାକ୍ଷାତ ହେଲେ ତାଙ୍କ କର୍ତ୍ତୃତ୍ୱରୁ ମୁକୁଳିବା ମୁସ୍କିଲ ।*

କବି ବିଶ୍ୱାସ କରୁଥିଲେ ଯେ ସାହିତ୍ୟ ଜରିଆରେ ପାପ ତାଙ୍କ ଅମଳିନ ଆତ୍ମାକୁ ଗ୍ରାସକଲା । ତାଙ୍କର ଏ ଅନୁଭୂତିକି ସେ, 'ଆତ୍ମଜୀବନୀର ଉଦ୍ଧୃତାଂଶ'ରେ

---

† ଚାହେଁ ମୁହିଁ ଯେବେ ଟେକିବାକୁ ମଥା
ବିବେକ ପଛରୁ ଲଗାଏ ଗଳଥା
ଲୋକ ଆଗେ ମୁହିଁ ହୁଏ ଯେବେ ଠିଆ
ବିବେକ ପଛରୁ ଲଗାଏ ତଣ୍ଟିଆ ।
( ରାଧାନାଥ ଗ୍ରନ୍ଥାବଳୀ (ନିବେଦନ)—ପୃଷ୍ଠା ୩୨୩, ନୂତନସଂସ୍କରଣ, ବ୍ରହ୍ମପୁର, ୧୯୭୫, )

* କି ବିଭୀଷିକା ମୁଁ ଦେଖୁଅଛି ଏବେ
ନାଚନ୍ତି ଚୌଦିଗେ ପାପ ଉପଦେବେ ।
ପାପର ତାଣ୍ଡବ ଦେଖି ପ୍ରାଣ ଥରେ
ଯେଣେ ଚାହେଁ କିବା ବାହାରେ ଭିତରେ ।
ଦୋହଲଏ ହୃଦ ସେହୁ ଅନୁକ୍ଷଣ
ମହାବେଗେ କିବା ଜାଗ୍ରତେ ସ୍ୱପନେ ।
ଅନୁକ୍ଷଣ ହୃଦେ ପାପ ବହ୍ନି ଜଳେ
ବାଡ଼ବ ଯେସନେ ମହାସିନ୍ଧୁ ଜଳେ,
ବିଦାରି ହୃଦକୁ କରେ ଧୂନା ଧୂନା
ଦଶଦିଗ୍-ପାପମୂର୍ତ୍ତି ଏକ ମୁନା ।
ଯହିଁ ଯାଏଁ ଯାଏ ସଙ୍ଗେ ସେ ଗୋଡ଼ାଇ,
ନିଜଠାରୁ ପଳାଇବା ଉପା କାହିଁ ?
ଯେତେବେଳେ କରେ ଯା' ସଙ୍ଗେ ଆଳାପ,
ଚିରସଙ୍ଗୀପ୍ରାୟେ ସଙ୍ଗେରହେ ପାପ !!
( ରାଧାନାଥ ଗ୍ରନ୍ଥାବଳୀ ( ନିବେଦନ )—ପୃଷ୍ଠା ୩୨୩ ନୂତନ ସଂସ୍କରଣ, ବ୍ରହ୍ମପୁର ୧୯୭୫ )

ସୁସ୍ପଷ୍ଟଭାବେ ଉଲ୍ଲେଖ କରିଛନ୍ତି । † କବିଙ୍କର ବକ୍ତବ୍ୟ ଜଣାଉଛି ଯେ, ସାହିତ୍ୟ ବା କବିତାର ପରିଚ୍ଛଦରେ ପାପ ତାଙ୍କୁ ମୁଗ୍‌ଧ ଓ ପ୍ରଲୋଭିତ କରିଥିଲା । ଏଠି ଗୋଟିଏ ପ୍ରଶ୍ନ ମନକୁ ଆସୁଛି । ପ୍ରଶ୍ନଟି ହେଲା; ଏଇ ଯେଉଁ ସାହିତ୍ୟର ପରିଚ୍ଛଦ’—ତାହା କବିଙ୍କର ସାରସ୍ୱତକୃତିକୁ ସୂଚିତ କରୁଛି ନା ସାରସ୍ୱତ ସଂପର୍କକୁ ଉଲ୍ଲେଖ କରୁଛି ?

କବି ଜୀବନରେ ପାପପ୍ରଣୟ ଜନିତ ଘଟଣାଟିର ସୂତ୍ରପାତ ଯାହାଙ୍କୁ କେନ୍ଦ୍ର କରି ହୋଇଥିଲା, ସେ ଥିଲେ ଜଣେ ସାହିତ୍ୟିକା । ବଙ୍ଗଳା ଲେଖିକା ନଗେନ୍ଦ୍ରବାଳାଙ୍କ ସହ କବିଙ୍କର ସଂପର୍କ ଆରମ୍ଭ ହୋଇଥିଲା ସାହିତ୍ୟକୁ ଆଳକରି । ରାଧାନାଥ ବର୍ଦ୍ଧମାନ ଶିକ୍ଷା ସର୍କଲକୁ ଇନ୍‌ସପେକ୍ଟର ରୂପେ ବଦଳି ହୋଇ ଆସିଲାପରେ (୧୯୦୦), ହୁଗୁଳିର ଜଣେ ବଙ୍ଗୀୟ-ମହିଳାଙ୍କ ସହିତ ତାଙ୍କର ପ୍ରୀତିପୂର୍ଣ୍ଣ ସଂପର୍କ ସ୍ଥାପିତ ହୋଇଥିଲା । ଏଇ ପ୍ରୀତିବତୀ ମହିଳାଙ୍କର ଅସାଧାରଣ ମାଧୁର୍ଯ୍ୟ ନର୍ମ ଓ ରଚନା ପରିପାଟୀରେ ଆକୃଷ୍ଟ ହୋଇ କବି ତାଙ୍କ ସହିତ ସୌହାର୍ଦ୍ଦ୍ୟ ବଢ଼ାଇ ଦେଇଥିଲେ । ଏସବୁ ସାରସ୍ୱତ ଗୁଣ ସତ୍ତ୍ୱେ ତାଙ୍କର ଚରିତ୍ର ଅତ୍ୟନ୍ତ ବିକୃତ ଥିଲା ; କବି ଏକଥା ପୂର୍ବରୁ ଜାଣି ନଥିଲେ । ଏହିପରି ଏକ ବିକୃତ ଚରିତ୍ରର ପ୍ରଭାବରେ ଆସି ରାଧାନାଥ ଚରିସଂଯମ ବ୍ରତ ନଷ୍ଟ ହେଲା । ଏହା କବି, ଆଦୌ ସଂକୋଚ ନକରି ସ୍ୱୀକାର କରି ଯାଇଛନ୍ତି । ✻

---

† "ପ୍ରଥମରୁ ପାପ ସାହିତ୍ୟର ପରିଚ୍ଛଦରେ ମୋତେ ପ୍ରଲୋଭିତ କଲା । ସେତେବେଳେ ତାହାର ମୂର୍ତ୍ତି ଦେଖି ସୁଦ୍ଧା ଭଲରୂପେ ଦେଖି ନାହିଁ । ବର୍ତ୍ତମାନ ତାହାର ବିକଟମୂର୍ତ୍ତି ପ୍ରତିକ୍ଷଣରେ ଗୃହଆଡେ ଦେଖୁଅଛି । ଯାହା ଦେଖେ, ଶୁଣେ ଏବଂ ପଢ଼େ, ସମସ୍ତହିଁ ଯେପରି ଏହି ପାପର ମୂର୍ତ୍ତିକୁ ଚକ୍ଷୁର ପୁରୋବର୍ତ୍ତୀ କରିଦିଏ । ପାପର କି ଭୟାବହ ଦଣ୍ଡ ! ବାହାରେ କିଛିନାହିଁ, ଅଥଚ ହୃଦୟ ଓ ଶରୀର ମଧ୍ୟରେ ସର୍ବକ୍ଷଣ ଭୟଙ୍କର ଝିଟିକା ଭୟଙ୍କର ଭୂକଂପ ଅନୁଭୂତ ହେଉଛି……ପାପ କବିତାର ପରିଚ୍ଛଦରେ ଆସି ମୋତେ ମୁଗ୍‌ଧ କଲା ଏବଂ ଶେଷରେ ମୋହର ଚରିତ୍ର ଭ୍ରଷ୍ଟ ଘଟିଲା ।"

(ରାଧାନାଥ ଜୀବନୀ—ଆତ୍ମକଥାର କ୍ଷୁଦ୍ରାଂଶ—ପୃଷ୍ଠା ୪୬୮-୬୯
(କଟକ-୧୯୪୧)

✻ ଶ୍ରୀ ଦୁର୍ଗାଚରଣ ରାୟ—ରାଧାନାଥ ଜୀବନୀ (୧୯୪୧) ପୃଷ୍ଠା—୪୬୧ ।

ସୁତରାଂ କବିଙ୍କର ନିଜକଥାରୁ ବୁଝାଯାଉଛି ଯେ, ତାଙ୍କ ଜୀବନରେ ଯେଉଁ ପାପ-ପ୍ରଣୟ-ସଙ୍ଗ ବ୍ୟାପାରଟିର ଉଦ୍‌ଘାଟନ ଶେଷକାଳକୁ ଘଟିଥିଲା—ତାହାର ଘଟଣାସୂତ୍ର ହେଉଛି ସାହିତ୍ୟ । କାରଣ ନଗେନ୍ଦ୍ରବାଳା ଯଦି ଜଣେ ସାହିତ୍ୟିକା ହୋଇ ନଥାନ୍ତେ ତାହା ହେଲେ ପରସ୍ପରଙ୍କ ଭିତରେ ସଂପର୍କ ଏପରି ଦୃଢ଼ ହେବା ହୁଏତ ଏକ ଅନିଶ୍ଚିତ କାରଣ ହୋଇଥାନ୍ତା । ସାହିତ୍ୟ ଜରିଆରେ ରାଧାନାଥ, ନଗେନ୍ଦ୍ରବାଳାଙ୍କୁ ଚିହ୍ନିଲେ ଏବଂ କ୍ରମେ ପାପ-ପ୍ରଣୟରେ ବାନ୍ଧି ହୋଇଗଲେ । ଜଣାଯାଏ ଯେ, କବି ଦଶରଥ ବିୟୋଗ ଭଳି ନୀତିପୂର୍ଣ୍ଣ କବିତା ଲେଖିବାର ୫।୬ ମାସ ଉତ୍ତାରୁ ଏପରି ବନ୍ଧନରେ ପଡ଼ିଗଲେ । † କବିଙ୍କର ନୀତିବାଦୀ ମନ ପୁତ୍ର ଶଶିଭୂଷଣଙ୍କର ବିବାହ (୧୯୦୧, ମାର୍ଚ୍ଚ) ଉପଲକ୍ଷେ, ବନ୍ଧୁ ସମ୍ଭ୍ରାନ୍ତ ଲୋକଙ୍କର ପରାମର୍ଶ ସତ୍ତ୍ୱେ ନୃତ୍ୟଲାଗି ନର୍ତ୍ତକୀର ବନ୍ଦୋବସ୍ତ କରିବାକୁ ସମ୍ମତ ହୋଇ ନଥିଲା । ସେହି ମନ ପୁଣି ନାରୀର ପାପ-ପ୍ରଣୟରେ ବଶୀଭୂତ ହୋଇଗଲା । ଏହା ରାଧାନାଥଙ୍କର କବି-ଜୀବନରେ ଭାଗ୍ୟର ଆଇରନି ବା ଉପହାସ ନୁହେଁ କି ?

ଅନ୍ୟ ଦିଗରୁ ବିଚାରକଲେ ମନେ ହୁଏ ଯେ, ସାହିତ୍ୟର ପରିଚ୍ଛଦରେ ପାପର ଅନୁଭୂତି, କବିଙ୍କର ବନ୍ଧୁପରିଚନ, '୮୮୫ – ୧୮୯୫, ଏହି ସମୟସୀମା ଭିତରେ କବିଙ୍କର ସାଧନା ପୂର୍ଣ୍ଣସିଦ୍ଧିମଣ୍ଡିତ ହୋଇଛି । ଯାହା ସୃଷ୍ଟି କରିଛନ୍ତି ସେଥିରେ ସେ ନିଜେ ବି ନିମଜ୍ଜିତ ହୋଇଛନ୍ତି । ଆପଣାର ଭାବନା ସାହିତ୍ୟରେ ପ୍ରତିଫଳିତ ହୋଇଛି । ଅନ୍ୟ କଥାରେ କହିଲେ, କବିଙ୍କର ବ୍ୟକ୍ତି-ସତ୍ତା କାବ୍ୟ-ସତ୍ତାକୁ ରୂପାୟିତ କରିଛି । ପାର୍ବତୀ, ଉଷା, ଯଯାତି, ଚନ୍ଦ୍ରଭାଗା, ନନ୍ଦିକେଶ୍ୱରୀ, କେଦାରଗୌରୀ ଏପରି କୌଣସି କାବ୍ୟ ନାହିଁ, ଏପରି କୌଣସି ଚରିତ୍ର ନାହିଁ; ଯାହାକି ପ୍ରେମର ଉଷ୍ମତା ଅନୁଭବ କରିନାହିଁ । ପ୍ରେମର ପ୍ରାଧାନ୍ୟ ତାଙ୍କ କାବ୍ୟରେ ସର୍ବତ୍ର । ଏହି ପ୍ରେମ ପରିକଳ୍ପନାର ପର୍ଯ୍ୟାପ୍ତ ପରିବେଷଣ ହେତୁ ତାଙ୍କ ମନ ସୃଷ୍ଟିର ଆଦ୍ୟ ପର୍ଯ୍ୟାୟରେ ରୋମାଣ୍ଟିକ ଓ ଭାବପ୍ରବଣ ହୋଇଥିଲା । ବୟସର ପରିପକ୍ୱତା ଓ ଅନୁଭୂତିର ବ୍ୟାପକତା ଫଳରେ କ୍ରମେ ତାଙ୍କୁ ନୀତି ପ୍ରଲୋଭିତ କରିଥିଲା । ମହାଯାତ୍ରା, ତୁଳସୀସ୍ତବକ, ଦରବାର ଇତ୍ୟାଦି ରଚନାରେ କବି ମୁଖ୍ୟତଃ ଜଣେ ନୀତିବାଦୀର ଆସନ ଅଧିକାର କରିଥିଲେ ।

---

† ଶ୍ରୀ ଦୁର୍ଗାଚରଣ ରାୟ—ରାଧାନାଥ ଜୀବନୀ (୧୯୪୧) ପୃଷ୍ଠା—୪୭୦, କଟକ ।

ତେଣୁ କୁହାଯାଇ ପାରେ ଯେ, ପ୍ରେମ ପ୍ରତି ଆସକ୍ତି; କବିଙ୍କର ବିସ୍ତୃତ ପ୍ରେମ ପରିଚର୍ଯ୍ୟାର ପରିଣତି ମାତ୍ର । କିନ୍ତୁ କବି ଯେ ଆଦର୍ଶ ଅନୁଧ୍ୟାନରୁ ମୁକ୍ତ ତାହା ନୁହେଁ । ଆଦର୍ଶର ଅଙ୍ଗୀକାର ସେ କରିଛନ୍ତି । ସାହିତ୍ୟରେ ତଦନୁଯାୟୀ ଆଦର୍ଶ ଭାବନାର ଉନ୍ମୀଳନକୁ ସେ ମୂଲ୍ୟ ଦେଇଛନ୍ତି । ପ୍ରତ୍ୟେକ କାବ୍ୟରେ ଊଣା ଅଧିକେ ଆଦର୍ଶର ଇଙ୍ଗିତ ଦେବାକୁ କବି ଭୁଲି ନାହାନ୍ତି । ମାତ୍ର ୧୯୦୧ ପରବର୍ତ୍ତୀ କାଳରୁ ମୃତ୍ୟୁ ପର୍ଯ୍ୟନ୍ତ କବିଙ୍କ ସାହିତ୍ୟରେ ଆଦର୍ଶ-ଭାବନାର ପ୍ରକାଶ୍ୟ ଅଭିବ୍ୟକ୍ତି ପର୍ଯ୍ୟାପ୍ତ ଭାବେ ଲକ୍ଷଣୀୟ । ଏପରିକି ମୃତ୍ୟୁର କିୟତ୍‌କ୍ଷଣ ପୂର୍ବରୁ ମଧ୍ୟ ରାଧାନାଥ ଆପଣାକୁ ଆଦର୍ଶ-ଜିଜ୍ଞାସାରେ ମଗ୍ନ କରି ରଖିଥିଲେ । ତାଙ୍କର ମୃତ୍ୟୁ ଶଯ୍ୟାରୁ **Ideal Suggestion** ନାମକ ଗୋଟିଏ ପୁସ୍ତକ ଆବିଷ୍କୃତ ହୋଇଥିଲା, ଯେଉଁଥିରେ କି ଗୋଟିଏ ଅଧ୍ୟାୟ ମୃତ୍ୟୁର ଶେଷ ମୁହୂର୍ତ୍ତ ପୂର୍ବରୁ ଉନ୍ମୋଚିତ ହୋଇ ରହିଥିବା ଦେଖାଗଲା--*Look upwards* !

ଊର୍ଦ୍ଧ୍ୱ ଜଗତ ପ୍ରତି ଆକର୍ଷଣ ରାଧାନାଥଙ୍କର ଅତି ପ୍ରାଚୀନ କହିଲେ ଚଳେ । ଉପରକୁ ଚାହିଁ ଭାବନାମଗ୍ନ ହେବାର ଅଭ୍ୟାସ ବହୁ ପୂର୍ବରୁ ତାଙ୍କର ଥିଲା । ନିର୍ଜନ ମୁହୂର୍ତ୍ତ ଏବଂ ବିବିକ୍ତ ସ୍ଥଳୀରେ ବିଶ୍ରାମର ସୁବିଧା ମିଳିଲେ ସେ ପ୍ରାୟ ଆକାଶକୁ ଚାହିଁ ଚାହିଁ ଭାବ ସମୁଦ୍ରରେ ବୁଡ଼ି ରହନ୍ତି । କବିଙ୍କଠାରେ ଏମିତି ଏକ ଅଭ୍ୟାସ ଥିବାର ପ୍ରତ୍ୟକ୍ଷ ପ୍ରମାଣ ଭୂଦେବ ବାବୁ ଥରେ ପାଇଥିଲେ । ରାଜା ବୈକୁଣ୍ଠନାଥ ଦେଙ୍କର ଉଦ୍ୟାନ ବାଟିକାରେ ରାଧାନାଥ ଭୂଦେବବାବୁଙ୍କ ସହିତ ବିଶ୍ରାମ ନେଉଥିବା ବେଳେ ଏହି ଆଚରଣର ପରିଚୟ ମିଳିଲା । ଭୂଦେବବାବୁଙ୍କ ଅଦୂରରେ ବସି ରାଧାନାଥ ତାରାମଣ୍ଡିତ ଆକାଶକୁ ଭାବ-ମଗ୍ନ ଆଖିରେ ଦେଖିଥାନ୍ତି । ଭୂଦେବ ବାବୁ ଏହାକୁ ଲକ୍ଷ୍ୟକରି କଥା ପ୍ରସଙ୍ଗରେ କହିଲେ, "ଦେଖ ! ତୁମେ ଏତେ ନିମଗ୍ନ ହୋଇ ଆକାଶ ଆଡ଼କୁ ଚାହିଁ ରହିଥିଲ କାହିଁକି ? ସର୍ବଦା ଏପରି କରିବା ଭଲ ନୁହେଁ । ଏଥିରେ ନିଜର ଅକିଞ୍ଚିତ୍କରତା ନିତାନ୍ତ ପରିସ୍ଫୁଟ ହୋଇଥାଏ; ଅନ୍ତର୍ଦ୍ଦୃଷ୍ଟି ପ୍ରାୟ ଲୁପ୍ତ ହୋଇଥାଏ; କର୍ମ କ୍ଷେତ୍ରରେ ଲୋକେ ଉଦାସୀନ ହୋଇଯାଆନ୍ତି । ଈଶ୍ୱରଙ୍କର ଧ୍ୟାନ ଯୋଗୀ ପକ୍ଷରେ ଶୋଭନୀୟ ।" ※

ଏହି ଅଭ୍ୟାସ ତ ଏଇଠି ମଉଳି ଯାଇ ନଥିଲା; ଏହାର ଗତିବିଧି କବି-ଜୀବନରେ ଗଭୀରରୁ ଗଭୀରତର ହେଉଥିଲା । କବିଙ୍କ ରହସ୍ୟଘନ ଭାବାବେଶରେ

---

※ ଶ୍ରୀ ଦୁର୍ଗାଚରଣ ରାୟ—ରାଧାନାଥ ଜୀବନୀ ( ୧୯୪୧ ), ପୃଷ୍ଠା—୧୦୩-୧୦୪, କଟକ ।

ନମଜ୍ଜିତ କରୁଥିଲା । ଜୀବନର ଶେଷ ପ୍ରହରକୁ ଏଇ ଅଭ୍ୟାସର ଗୁଣ ଆଚ୍ଛାଦିତ କରିରଖିଥିଲା । ଫଳତଃ କବି, ଶେଷନିଃଶ୍ୱାସ ତ୍ୟାଗର କିଛି ପୂର୍ବରୁ ମଧ୍ୟ ଊର୍ଦ୍ଧ୍ୱ ସ୍ପନ୍ଦନର ଅନୁଚିନ୍ତାରେ ନିମଗ୍ନ ଥିଲେ କିମ୍ବା କୁହାଯାଇପାରେ ଯେ, ସେ ଏଇ ଊର୍ଦ୍ଧ୍ୱ ଜଗତରେ ହିଁ ବିଚରଣ କରୁଥିଲେ । ଶେଷ ଜୀବନର ଅନ୍ତିମ ପ୍ରହର ପର୍ଯ୍ୟନ୍ତ ମୁଦ୍ଧା ସେ ଊର୍ଦ୍ଧ୍ୱ ଚିନ୍ତନରେ ବିଳାସୀ ହୋଇ ରହିଥିଲେ । ଏହାରି ବୋଧ ଓ ବିଶ୍ୱାସ ( *Look upwards* ) ଭିତରେ ଉଡ଼ିଗଲା ରାଧାନାଥଙ୍କର ଶେଷନିଃଶ୍ୱାସ ( ୧୯୦୮, ଏପ୍ରିଲ ୧୭ ରାତ—ଚୈତ୍ରପୂର୍ଣ୍ଣିମା ) ।

ଦୀର୍ଘ ଷ୍ଟଳିଶ ବର୍ଷର ( ୧୮୬୮-୧୯୦୮ ) ସାଧନାମୟ କବି ଜୀବନର ଅବସାନ ଘଟିଲା । କେତେ ନିନ୍ଦା, କେତେ ପ୍ରଶଂସାର କଣ୍ଟା ଓ ଫୁଲମାଳ ଉପହାର ଯେଉଁ କବି-ପୁରୁଷ ଗ୍ରହଣ କଲେ, ରହିଗଲା ତାଙ୍କର ଅକ୍ଷୟକୀର୍ତ୍ତି ଓଡ଼ିଆ ଜାତିର ସାରସ୍ୱତ ତପୋବନରେ । କାହିଁ ନିନ୍ଦାର ଧକ୍କା ତ ସେଇ କୀର୍ତ୍ତିର କଳାଶ୍ରୀ ମୁଖକୁ ଲୁଚେଇ ଦେଇ ପାରିଲା ନାହିଁ ? ଜାତି-ଅଜାତିର କୁତ୍ସା କୁଢ଼ ପ୍ରସ୍ତାବ ଓ ପ୍ରତିବାଦ ତ କାହିଁ କବିର କାବ୍ୟ-କୃତିକୁ ପୋଡ଼ି ପାରିଲା ନାହିଁ ?

ଜୀବନ ଅପେକ୍ଷା ଶିଳ୍ପୀର ଶିଳ୍ପ କେତେ ବଡ଼ ! ଏଇ ଶିଳ୍ପ ପାଇଁ ଶିଳ୍ପୀ ହୁଏ ବଡ଼, ତା ସାହିତ୍ୟ ଲାଗି ସେ ସମ୍ମାନିତ । କିନ୍ତୁ ବଞ୍ଚି ପାଇଁ କି ବ୍ୟକ୍ତିଗତ ପ୍ରବୃତ୍ତି ପାଇଁ ନୁହେଁ । ରାଧାନାଥ ଯେଉଁ କାବ୍ୟକୋଣାର୍କ ଗଢ଼ିଗଲେ ତାହାହିଁ ହେଲା ତାଙ୍କ ଜୀବନର କୀର୍ତ୍ତିସ୍ତୂପ । ସେଇ କୀର୍ତ୍ତିସ୍ତୂପର ଅଂଗବେଦୀରେ ଦୁଇଟି ଭାବସତ୍ତାର ଅମ୍ଳାନ ଅକ୍ଷର ଆକଳ୍ପ ଓ ଶୁଦ୍ଧତାର ପରି ମୂର୍ତ୍ତିମାନ । ଗୋଟିଏ ଦିଗରେ ଆଦର୍ଶ ବୋଧରେ ବିଶ୍ୱାସ ଓ ଅନ୍ୟଦିଗରେ ରୋମାଣ୍ଟିକ ଚେତନାରେ ବିକାଶ । ତେଣୁ କୁହାଯାଇପାରେ ରାଧାନାଥଙ୍କର କାବ୍ୟ ଓ ଜୀବନ ହେଉଛି ରୋମାନ୍ସ ଓ ଆଦର୍ଶବୋଧର ଏକ ଅଖଣ୍ଡ ସମନ୍ୱୟ । ଏହାରି ଭିତରେ ରାଧାନାଥଙ୍କର କବିପୁରୁଷ ହିଁ ମୂର୍ତ୍ତିମାନ । ତେଣୁ ହେ ରାଧାନାଥ—'ତୁମର ସେ ପ୍ରେମଠାରୁ ତୁମେ ବଡ଼ / ତେଣୁ ପାଏ ତାର, ତୁମର ହୋଇନ ମୃତ୍ୟୁ ।'

ତୁମେ ଆଜି ବର୍ତ୍ତମାନ ସମୟରେ କବିତାର ପ୍ରତିଟି ଅକ୍ଷରେ । ତୁମର ଏ କାବ୍ୟ କୀର୍ତ୍ତି ଆଜିବି ସୁରୁଛିଥାଏ, ଜୀବନର ଗୌରବ ଓ ଅବସାଦୀ ଅଭିଳାଷର ଅନେକ କାହାଣୀ । ତେଣୁ ହେ କବି ! ତୁମର ଚିତ୍ତ ହିଁ ତୁମ କବି-ଶକ୍ତିର ନିର୍ଭୁଲ ନିଦର୍ଶନ । ତୁମ ଜୀବନର ଆତ୍ମମୁକ୍ତି ଓ ଅଭିଳାଷର ଅଧ୍ୟୟନ ହିଁ ତୁମ କବିଶକ୍ତିର ଏକମାତ୍ର ମାପକାଠି ।

### କବିଙ୍କର ଅନ୍ତିମ ଅଭିଳାଷ

କବିଙ୍କର ଅଭିଳାଷ ଥିଲା, ପେନସନ ନେଇ ଅବସର ମତେ ଓଡ଼ିଆ ଭାଷାର ସେବା କରିଥାନ୍ତେ, ଧର୍ମ ଓ ନୀତି ବିଷୟରେ ସଂସ୍କୃତରେ କବିତା ଲେଖିଥା'ନ୍ତେ । ମାତ୍ର ତାହା ସଫଳ ହେଲା ନାହିଁ । ※ କାରଣ କବି ଅବସର ନେଲାବେଳକୁ ତାଙ୍କର ମାନସିକ ଅବସ୍ଥିତି ଏପରି ଉଦ୍ବେଗବହୁଳ ହୋଇ ଉଠିଥିଲା ଯେ ତାର ପ୍ରକୋପରୁ ସେ ନିଜକୁ ଅଧିକ ବଞ୍ଚାଇପାରି ନଥିଲେ । ଏଥିରେ ସେ ସୁଚିନ୍ତିତ ଭାବେ କୀର୍ତ୍ତିଶାଳୀ ସାହିତ୍ୟ ଲେଖିବେ କଣ ?

ରାଧାନାଥ ୫୮ ବର୍ଷ ବୟସରେ ଅବସର ଗ୍ରହଣ କଲେ, ୧୯୦୩ ସାଲ ସେପଟେମ୍ବର ମାସରେ । ଏଥିପୂର୍ବରୁ ନଗେନ୍ଦ୍ରବାଳାଙ୍କ ସହିତ ତାଙ୍କର ପ୍ରଣୟ ସଂପର୍କ ସ୍ଥାପିତ ହୋଇ ସାରିଥିଲା ( ୧୯୦୦ ) । ଅବସର କାଳକୁ ଏଇ ପ୍ରଣୟ ସଂପର୍କ ଗଭୀର ହୋଇ ଆସୁଥିଲା । ସୁତରାଂ ଅବସର ପରେ ଏଇ ପ୍ରଣୟ ବ୍ୟାପାରର ଜଟିଳତା ଖୁବ୍ ତୀବ୍ର ହୋଇ ଉଠିଲା ଏବଂ ତାହାର ପ୍ରତିକ୍ରିୟାରେ କବିଙ୍କର ମାନସିକସ୍ଥିତି ଅତ୍ୟନ୍ତ ଅସ୍ଥିର ହୋଇ ପଡ଼ିଲା ।

ଅସ୍ଥିରତା ଭିତରେ ସାହିତ୍ୟ ସାଧନାରେ ରାଧାନାଥ ତୃପ୍ତି ପାଇ-ପାରୁନଥିଲେ । ତାଙ୍କର ଧାରଣାଥିଲା ଯେ "କାବ୍ୟ ରଚନା ଅବକାଶ ଓ ନିଶ୍ଚିନ୍ତତା ସାପେକ୍ଷ ।" † ତେଣୁ ସେ ଯେଉଁ ସମୟରେ ଖୁବ୍ ଦୁଃଶ୍ଚିନ୍ତା ପୀଡ଼ିତ

---

※ "ମନେ କରିଥିଲି, ପେନସନ ନେଇ ଅବସରମତେ ମାତୃଭାଷାର ( ଓଡ଼ିଆ ଭାଷାର ) ସେବା କରିବି । ଧର୍ମ ଓ ନୀତି ସମ୍ବନ୍ଧରେ ସଂସ୍କୃତରେ କବିତା ଲେଖିବି । ମୋହର ଆଶା କେବଳ ଆଶାରେ ହିଁ ପରିଣତ ହେଲା । ହାୟ ! ମୋହର ପ୍ରାଣର ପ୍ରିୟତମ ଉତ୍କଳ ଭାଷା, ମନେ କରିଥିଲି ପେନସନ ନେଇ ତୁମ୍ଭର ସେବା ଓ ଧର୍ମର ସେବାରେ ମନଃପ୍ରାଣ ଢାଳି ଦେବି । କୁହୁକରେ ପଡ଼ି ମୁଁ ଏ ସୁଖରୁ ବଞ୍ଚିତ ହେଲି ।"
( ଦୁର୍ଗାଚରଣ ରାୟ—ରାଧାନାଥ ଜୀବନୀ—ଆତ୍ମକଥାର କିୟଦଂଶ-ପୃ ୪୭୦ )

† ମୋ ବିବେଚନାରେ ଯେଉଁମାନଙ୍କୁ ନିଜର ଜୀବିକା ସକାଶେ ପରିଶ୍ରମ କରିବାକୁ ହୁଏ ସେପରି ଲୋକଙ୍କର କାବ୍ୟ ରଚନାରେ ପ୍ରବୃତ୍ତ ହେବା ଉଚିତ ନୁହେଁ । କାବ୍ୟ ରଚନା ଅବକାଶ ଓ ନିଶ୍ଚିନ୍ତତା ସାପେକ୍ଷ । ଆମ୍ଭମାନଙ୍କ ପରି ଲୋକଙ୍କର ସେ ବିଷୟରେ ମନ ବଳାଇବା ବାତୁଳତା ମାତ୍ର ।
(ଶିକ୍ଷକ ବିଶ୍ୱନାଥ କରଙ୍କୁ ରାଧାନାଥଙ୍କର ଲିଖିତ ପତ୍ର (ତା'୭'୫'୧୮୯୩)- ରାଧାନାଥ ଜୀବନୀ ପୃ ୬୮ )

ସେତେବେଳେ ତାଙ୍କ ଲେଖନୀରୁ ସାହିତ୍ୟ ସର୍ଜନାର ଶୁଭଫଳ ମିଳିବା ସମ୍ଭାବନା ମାତ୍ର । ଅତଏବ ସାହିତ୍ୟ ସେବା ବାବଦରେ କବିଙ୍କର ଅନ୍ତିମ ଅଭିଳାଷର ବ୍ୟର୍ଥତା ଯେ ତାଙ୍କ ଜୀବନର ଏକ ସ୍ମରଣୀୟ ପରାଜୟ, ଏଥିରେ କୌଣସି ସନ୍ଦେହ ନାହିଁ ।

କବିଙ୍କର ଇଚ୍ଛାଥିଲା, ଆପଣାର ଅଭିଜ୍ଞତାକୁ ଲିପିବଦ୍ଧ କରନ୍ତେ । ପ୍ରତି ମୁହୂର୍ତ୍ତରେ ମଣିଷ ମନରେ ଯେଉଁ ସବୁ ଭାବନାର ଉଦ୍‌ଭବ ହେଉଛି ସେଗୁଡ଼ିକୁ ଆପଣା ଅନୁଭବ ଭିତରୁ ପାଇଲେ, ତାକୁ ସଜାଇ ଲେଖିରଖିବାର ଅଭିଳାଷ ମଧ୍ୟ କବିଙ୍କର ଥିଲା । ଆତ୍ମଗ୍ଲାନି ଓ ପାପପୀଡ଼ାରୁ ଯେଉଁ ମାନସିକ ବିକ୍ଷୋଭ ମଣିଷ ଭୋଗକରେ ତାହାର ବାସ୍ତବ ରୂପରେଖ, ଜଣେ ଭୁକ୍ତଭୋଗୀ ହିସାବରେ ଆଙ୍କିତ ଦେବା ପାଇଁ କବିଙ୍କର ବାସନା ଥିଲା । ରାଧାନାଥଙ୍କର ବକ୍ତବ୍ୟରୁ ଜଣାଯାଏ, ଏପରି ଶିକ୍ଷାପ୍ରଦ ଗ୍ରନ୍ଥ ସେ ଜୀବନରେ କେବେ ପଢ଼ି ନ ଥିଲେ । ଏହାର ନୈତିକ ଓ ସାମାଜିକ ମୂଲ୍ୟ ପ୍ରତି ସେ ସଚେତନ ଥିଲେ, ତେଣୁ ଅଭିଳାଷ ପୋଷିଥିଲେ, ଆପଣାର ଅଭିଜ୍ଞତା ଓ ପାପପୀଡ଼ାର ପ୍ରତିକ୍ରିୟାକୁ ଲିପିବଦ୍ଧ କରି ସଂସାର ଲାଗି ପୁସ୍ତକ ଆକାରରେ ପରିବେଷଣ କରିଥାନ୍ତେ । ✲

କବିଙ୍କର ଏଇ ଅଭିଳାଷର ଭାବ-ରୂପକୁ ଯଦି ବିଶ୍ଳେଷଣ କରାଯାଏ, ଦୁଇଟି ସାରସ୍ୱତ ଫଳ ଲାଭରୁ ଆମ ସାହିତ୍ୟ ବଂଚିତ ହୋଇଥିବା ଆମେ ଅନୁମାନ କରୁ । ଗୋଟିଏ ହେଉଛି; କବିଙ୍କ ଆତ୍ମଚରିତ ଏବଂ ଅନ୍ୟଟି ହେଉଛି,

---

✲ (କ) ପ୍ରତି ମୁହୂର୍ତ୍ତରେ କେତେ ଚିନ୍ତା ମୋହୋର ମନରେ ଉଠୁଅଛି, ତାହାର ଇୟତ୍ତା ନାହିଁ । ଏ ଗୁଡ଼ିକ ସଜାଇ ଲେଖିବାର ଶକ୍ତି ନାହିଁ । ଆତ୍ମ ଗ୍ଲାନି ଓ ଆତଙ୍କରେ ମନର ଓ ଶରୀରର ଯନ୍ତ୍ରଣାହୋଇ ମନୁଷ୍ୟର ଶନୈ ଶନୈ କିପରି ପରିବର୍ତ୍ତନ ହେଉଥାଏ, ଏ ସମ୍ବନ୍ଧରେ ଭୁକ୍ତଭୋଗୀ ହିଁ ଲେଖିପାରେ । ଏ ରୂପ ଗ୍ରନ୍ଥ ମୁଁ ଆଜି ପର୍ଯ୍ୟନ୍ତ ପଢ଼ିନାହିଁ । ହାୟ, ଅନ୍ତତଃ ମୁଁ ଏପରି ଖଣ୍ଡିଏ ଗ୍ରନ୍ଥ ସଂସାରର ହିତ ସକାଶେ ଲେଖି ଥାଆନ୍ତି !

(ଖ) ହାୟ ! ଯେବେ ମୁଁ ପୁଣି ସୁସ୍ଥ ହୋଇ ପାରନ୍ତି ଏବଂ ମୋହର ଅଭିଜ୍ଞତା ରୀତିମତ ଲିପିବଦ୍ଧ କରିପାରନ୍ତି, ତାହା ଖଣ୍ଡିଏ ବୃହତ୍ ଶିକ୍ଷାପ୍ରଦ ଗ୍ରନ୍ଥ ହୁଅନ୍ତା ।

(ଦୁର୍ଗାଚରଣ ରାୟ—ରାଧାନାଥ ଜୀବନୀ (୧୯୪୧)—ଆତ୍ମକଥାର କିୟଦଂଶ- ପୃ ୪୭୬—୭୭)

ପାପ-ପୁଣ୍ୟର ମିଶ୍ରଣରେ ଅନୁଲିପ୍ତ ଜଣେ ସଂସାରୀର ନୈତିକ ଅଭିଜ୍ଞାନ । ଏଇ ଦୁଇଟିଗ୍ରନ୍ଥ ଯଦି ବାସ୍ତବରୂପ ନେଇ ଥା'ଆନ୍ତା, ତାହାଲେ ସେଥିରୁ ସ୍ୱାଧୀନ କବି-ଆତ୍ମାର ମନନଧାରା ବେଶ୍ ଅନୁଭବ କରାଯାଇ ପାରିଥା'ନ୍ତା ! କବିଜୀବନ ପକ୍ଷରେ ଏହା ଯେପରି ଏକ ବ୍ୟର୍ଥତା, ଓଡ଼ିଆ ସାହିତ୍ୟ ଲାଗି ସେହିପରି ଏକ କ୍ଷତି ।

ପୁନଶ୍ଚ ଜଣାଯାଏ ଯେ, କବିଙ୍କର ଆଶା ଥିଲା 'ଅନୁତାପ ଓ ପ୍ରତ୍ୟୟ' ବିଷୟରେ ଗୋଟିଏ ପୁସ୍ତକ ରଚନା କରି ସମାଜକୁ ଆଦର୍ଶ ଓ ନୀତିର ବାର୍ତ୍ତା ପରିବେଷଣ କରିଥାନ୍ତେ । ତାହା କେବଳ କଳ୍ପନାରେ ହିଁ ରହିଗଲା । *

ରାଧାନାଥ ଥିଲେ ନିର୍ଜନସ୍ଥାନ ବିଳାସୀ । ବନାଞ୍ଚଳର ମୋହ ତାଙ୍କୁ ଏମିତି ଉନ୍ମାଦିତ କରୁଥିଲା ଯେ ସେ ଅବସର ପାଇଲେ କୌଣସି ନିରୋଳା ସ୍ଥାନକୁ ଫେରିଯିବା ପାଇଁ ଇଚ୍ଛା କରୁଥିଲେ । ବନ୍ଧୁମାନଙ୍କର ସମାବେଶଠାରୁ ବନସ୍ଥଳୀର ବନ୍ଧୁତ୍ୱ ତାଙ୍କୁ ସୁଖକର ବୋଧ ହେଉଥିଲା । କେତେବେଳେ ନଦୀକୂଳରେ ତ କେତେବେଳେ ବୃକ୍ଷମୂଳରେ ବସି ସଂସାର ଭାବନାଶୂନ୍ୟ ହୋଇ ସେ ଅଧ୍ୟୟନରେ ସମୟ ବିତାଉଥିଲେ । ଏଇ ନିର୍ଜନପ୍ରିୟତାରୁ ଭାବୁକତା ଏବଂ ଭାବୁକତାରୁ କବିତ୍ୱର ଅଭ୍ୟୁଦୟ ତାଙ୍କଠାରେ ସମ୍ଭବ ହୋଇଥିଲା । ଏଇ ନିର୍ଜନତା-ପ୍ରୀତିରୁ ମଧ୍ୟ କବିମନରେ ସୌନ୍ଦର୍ଯ୍ୟ ପିପାସା ଉଜ୍ଜୀବିତ ହୋଇଥିଲା । କବିଙ୍କର କାମନା ଥିଲା ଚିଲିକାର ରମଣୀୟ ପରିମଣ୍ଡଳରେ ଶେଷଜୀବନ ବିତାଇଥାନ୍ତେ । ଏଇ ଚିଲିକାପୀଠ ସ୍ୱାଭାବିକ ସୌନ୍ଦର୍ଯ୍ୟର ଲୀଳାଭୂମି; ତେଣୁ ବନାପ୍ରସ୍ଥାସରେ ସୌନ୍ଦର୍ଯ୍ୟର ତୃଷା ମେଣ୍ଟାଇବାର ନିର୍ବାଧ ସମ୍ଭାବନା ଏଠି ରହିଥିବା କବି ଜାଣିଥିଲେ । ଏଥିଲାଗି ସେ ଇଚ୍ଛା କରିଥିଲେ, "କୁଟୀର ବିରଚି ଜଟିଆ ଚରଣେ / କାଟନ୍ତିଥା'ନ୍ତି ଆୟୁ ଶେଷ-ବନାଞ୍ଚଳେ/ ମାତ୍ର ପରିଣାମେ ସ୍ରଷ୍ଟା ବାଜିବତ / ଆଶାରେ ସେ ଆଶା ହେଲା ପରିଣତ "।

କବିଙ୍କର ଆଶା'ପୋତ ବ୍ୟର୍ଥତାର ଅଶ୍ରୁ ତରଙ୍ଗରେ ବୁଡ଼ିଗଲା । ନିଜ ଇଚ୍ଛାର ଭବ-ରୂପକୁ ପ୍ରତ୍ୟକ୍ଷ ଅନୁଭବ କରିବାର ସୁଯୋଗ ସେ ପାଇଲେ ନାହିଁ । ସେହିପରି ଯେଉଁମାନେ ତାଙ୍କର ଲେଖାଅଲେଖା ମାନସିକ ଲାଳସାକୁ ବୁଝିଥିଲେ, ସେମାନଙ୍କ ଚେଷ୍ଟାର ଫଳ ମଧ୍ୟ ରାଧାନାଥ ଭୋଗ କରିପାରିଲେ ନାହିଁ ।

---

* ଶ୍ରୀ କ୍ଷେତ୍ରବାସୀ ନାୟକ—ସାହିତ୍ୟିକ ଶିକ୍ଷା ଓ ଦୀକ୍ଷା (୧୯୭୦)— ପୃଷ୍ଠା ୮୧, କଟକ ।

ଶଶିଭୂଷଣ, ରାଧାନାଥଙ୍କର ଅଜାଣତରେ ଧବଳେଶ୍ୱରରେ **ନିଭୃତ ନିଳୟ** ନାମକ ଗୋଟିଏ ବଙ୍ଗଳା ନିର୍ମାଣ କରିଥିଲେ (୧୯୦୧) । ଉଦ୍ଦେଶ୍ୟ ଥିଲା, ରାଧାନାଥ ଅବସର ଗ୍ରହଣ କଲାପରେ ଏହି ନିକାଞ୍ଚନ ସ୍ଥାନରେ ବିଶ୍ରାମ ନେବେ । ରାଧାନାଥ, ଦୁର୍ଗୁଳିରୁ ଫେରି ଯେତେବେଳେ ଶଶିଭୂଷଣଙ୍କର ଏହି କାର୍ଯ୍ୟ ଦେଖିବାର ସୁବିଧା ପାଇଲେ, ସେତେବେଳେ ସେ ଆନନ୍ଦରେ ଅଧୀର ହୋଇ ପଡ଼ିଥିଲେ । ତାଙ୍କ ମନ ଅନୁସାରେ ଏତେଦିନେ କାର୍ଯ୍ୟଟିଏ ହେଲା ବୋଲି ରାଧାନାଥ କହି ପକାଇଥିଲେ । ମାତ୍ର ଭାଗ୍ୟର ଉପହାସ ଏମିତି ଯେ ଅବସର ଉତ୍ତାରୁ ସେ ନିଭୃତ ନିଳୟରେ ୧୫ । ୨୦ ଦିନରୁ ଅଧିକ କାଳ ଅବସ୍ଥାନ କରିପାରିଲେ ନାହିଁ । ମାନସିକ ଦୁଃଶ୍ଚିନ୍ତା ଓ ଅସ୍ଥିରତା ଏଥିର ପ୍ରଧାନ କାରଣ ହେଲା । ଏହି ସ୍ଥାନଟି ଏପରି ଚିତ୍ତାକର୍ଷକ ବୋଧ ହେଉଥିଲା ଯେ କେହି କେହି ଏହାକୁ 'କବିତାକୁଟୀର' ବୋଲି ମଧ୍ୟ ଆଖ୍ୟାୟିତ କରିଥିଲେ । ନିଭୃତ ନିଳୟକୁ ଆସୁଥିବା ବାଣୀ ସାଧକ ଓ ସେ କାଳର ପରିଦର୍ଶକମାନେ ଏହାର ପ୍ରଶଂସାରେ ମୁଖର ହୋଇ ଉଠିଥିଲେ । ଚନ୍ଦ୍ରମୋହନ ମହାରଣା ଅନୁଭବ କରିଥିଲେ ଯେ, 'ହୃଦୟ ମଧ୍ୟରେ କବିତାର ବୀଜ ନିହିତ ଥିଲେ, ତାହା ଏଠାରେ ଅଙ୍କୁରିତ ହେବ ଓ ବିଶିଷ୍ଟ ଭାବବାହୀନ ଲୋକର ମନରେ ପ୍ରସାଦ ଓ ଶାନ୍ତି ଜନ୍ମିବ । ଚିନ୍ତାପରିପ୍ଲୁତ ବ୍ୟକ୍ତିର ଏଠାରେ ଆଗମ ଅବଶ୍ୟମ୍ଭାବୀ ।' * ସେହିପରି ମୃତ୍ୟୁଞ୍ଜୟ ରଥ, ଏହାର ସ୍ରଷ୍ଟାଙ୍କ ପ୍ରତି ପ୍ରଶସ୍ତି ଶୁଣାଇ ଆନନ୍ଦରେ ଶିହରି ଉଠିଥିଲେ—'ନିସର୍ଗର ଶିଷ୍ୟ ହେ ଶଶିଭୂଷଣ / ତୁମ୍ଭେ ଏକା ଏହି ସୁଖର ସୃଜନ/ତୁମ୍ଭେ ଗଢ଼ିଥିଲ 'ନିଭୃତ ନିଳୟ' / ଏ ଭଙ୍ଗୁର ଭବେ ନ ଭଜ ବିଳୟ / ଘୋଷୁଥିବ ଯଶ ଥିବ ଏ ଯାବତ / ତୁମ୍ଭର ନିସର୍ଗ ପ୍ରୀତି ଶାଶ୍ୱତ' । †

ଏଇ ପରିବେଶଟି ଥିଲା ରାଧାନାଥଙ୍କର ମନ ଅନୁକୂଳ ସ୍ଥାନ, କାବ୍ୟୋପମ ପରିବେଶ; ମାତ୍ର ଏଠାରେ ରାଧାନାଥ କେବଳ 'ଧବଳେଶ୍ୱର ସ୍ତୋତ୍ର' ବ୍ୟତୀତ ଆଉ କିଛି କବିତା ଲେଖି ନଥିଲେ । ଏଠି ରାଧାନାଥଙ୍କର ଅକାଳ ପ୍ରେମିକା ନଗେନ୍ଦ୍ରବାଳା କିଛିକାଳ ଅବସ୍ଥାନ କରିଥିଲେ, ଅବଶ୍ୟ ପରିଣମଣି ଦାସୀଙ୍କର ନିମନ୍ତ୍ରଣ ପାଇ ସେ ଏଠାରେ କିଛିଦିନ ରହିଥିଲେ ( ୧୯୦୨ ) । ଏହାର ଫଳସ୍ୱରୂପ ସେ ଧବଳେଶ୍ୱର କାବ୍ୟ ( ବଙ୍ଗଳା ) ନାମକ ଗୋଟିଏ ବର୍ଣ୍ଣନାତ୍ମକ କବିତା

---

* ଶ୍ରୀ ଚନ୍ଦ୍ରମୋହନ ମହାରଣାଙ୍କର ଟିପ୍ପଣୀ—ରାଧାନାଥ ଜୀବନୀ—ପୃ ୩୯୧

† ଶ୍ରୀ ମୃତ୍ୟୁଞ୍ଜୟ ରଥଙ୍କର କବିତା 'ନିଭୃତନିଳୟ'—ରାଧାନାଥ ଜୀବନୀ—ପୃ-୩୯୨

ରଚନା କରିଥିଲେ ଏବଂ ତାକୁ ପରଶମଣି ଦାସୀଙ୍କ ନାମରେ ଉତ୍ସର୍ଗ କରିଥିଲେ । ମାତ୍ର ରାଧାନାଥଙ୍କର ଜୀବନରେ ଏଇ ନକାଞ୍ଚନ ସ୍ଥଳୀରୁ କାବ୍ୟ-କବିତା ସୃଷ୍ଟିର ବହୁଳତା ସମ୍ଭବ ହୋଇନଥିଲା ।

ସାହିତ୍ୟ ପ୍ରତି ରାଧାନାଥଙ୍କର ଅକପଟ ଅନୁରାଗ ଏବଂ ଅକୃତ୍ରିମ ଦୁର୍ବଳତା ତାଙ୍କର ଜୀବନଜିଜ୍ଞାସାକୁ ଏପରି ଭାବାଚ୍ଛନ୍ନ କରିରଖିଥିଲା ଯେ ସେ ସାହିତ୍ୟର ନିନ୍ଦା ଶୁଣିଲେ ବିବ୍ରତ ହୋଇ ପଡ଼ୁଥିଲେ । ଜୀବନରେ ପାପ ଓ ପୁଣ୍ୟର ଉପାର୍ଜନ ଯେତେ ତାହାରି ଶୋଭା ହେଉଛି ବ୍ୟକ୍ତି କିନ୍ତୁ ତାଙ୍କର କାବ୍ୟ କୃତି ନୁହେଁ । ଏହି ଦର୍ଶନର ପକ୍ଷପାତୀ ଥିଲେ କବି । ତେଣୁ ସେ ଜୀବନର ଅନ୍ତିମ ଅବସ୍ଥାରେ ସଂସାର-ଜନଙ୍କୁ ତାଙ୍କ ଅନ୍ତରର ନିବେଦନ ଜଣାଇ କହିଥିଲେ, "ସଂସାର ନିକଟରେ ମୋହୋର କରପୁଟରେ ନିବେଦନ, ମୋହୋର ଦୁଃଷ୍କର୍ମ ସକାଶେ ମୋହୋର ଲେଖାକୁ ଯେପରି କେହି ଦୋଷ ନ ଦିଅନ୍ତି । ମୁଁ ଯାହା ଲେଖିଥିଲି ସରଳ ମନରେ ଲେଖିଥିଲି, ପ୍ରକୃତ ପକ୍ଷେ ସେହି ସୁନାଠାରୁ ସହସ୍ର ଗୁଣ ଭକ୍ତି, ସହସ୍ର ଗୁଣ ପ୍ରକ୍ଷପାତୀ ମୁଁ ମହାପାପୀ ହେଲେହେଁ 'ଧର୍ମ ଏକା ପିନା ମହୀତ ପଣିଆ'—ଏହାହିଁ ମୋହିର ମନର କଥା" ※ ।

କବିଙ୍କ ମନର କଥା ତାଙ୍କ ଚରିତ୍ରର ନିର୍ମମ ସତ୍ୟଟିକୁ ପ୍ରକଟିତ କରିଛି । ସାହିତ୍ୟ ତାଙ୍କର କେତେ ପ୍ରିୟତମ, ଜୀବନଠାରୁ ବଳି । ଜୀବନର ଇମେଜ ଟିକିକ ପଛକେ ନାରଖାର ହୋଇଯାଉ, କିନ୍ତୁ ତାଙ୍କ ମାନସପ୍ରତିମା ସାହିତ୍ୟର ପ୍ରତିମୂର୍ତ୍ତି ନଷ୍ଟ ନ ହେଉ । ଏପରି ଭାବନାର ଭକ୍ତ କ୍ୱଚିତ୍ ମିଳନ୍ତି, ରାଧାନାଥ ତନ୍ମଧ୍ୟରୁ ଜଣେ ।

ସାରସ୍ୱତ ସ୍ୱପ୍ନ ତ ତାଙ୍କ ଜୀବନରେ ବଶିଷ୍ଟ ସ୍ୱପ୍ନ; ଏହାକୁ ଛାଡ଼ି ଆଉ ସ୍ୱପ୍ନ ବା କାହିଁ ? ତାଙ୍କଲାଗି ସଂସାର ତ ଲୀଳାଭୂମି ହୋଇପାରିଲା ନାହିଁ; ଉଦାସୀନତା ହେଲା ତାଙ୍କ ଚଳଣିର କାଇଦା । ତାଙ୍କର ସାଙ୍ଗସାଥୀ ମଧ୍ୟ ସଂସାରଙ୍କ ଗହଣରୁ ଜୁଟିଲେ ଖୁବ୍ କମ, ଯେଉଁମାନେ ତାଙ୍କର ଚଲାପଥର ସାଥୀହୋଇ ରହିଲେ ସେମାନେ ହେଲେ ସମସ୍ତେ ସାହିତ୍ୟିକ କିମ୍ବା ସାହିତ୍ୟର ପୃଷ୍ଠପୋଷକ । ରାଜାବୈକୁଣ୍ଠନାଥ ଦେ, ଫକୀରମୋହନ, ମଧୁସୂଦନ, ଇତ୍ୟାଦିଙ୍କଠାରୁ ଆରମ୍ଭକରି ସାର୍ ବାସୁଦେବ ସୁଢ଼ଳଦେବ, ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜଦେବ ପର୍ଯ୍ୟନ୍ତ ସମସ୍ତେ ତାଙ୍କର ସାରସ୍ୱତ ସାଥୀ । ଏଇମାନଙ୍କ ସହିତ ରାଧାନାଥଙ୍କର ଜୀବନରଥ । ତେଣୁ ସାହିତ୍ୟ ଏଠି ସର୍ବପ୍ରଭବ ନୁହେଁ କି ?

---

※ ରାଧାନାଥ ଜୀବନୀ ( ୧୯୪୧ ) ପୃ ୪୭୧, କଟକ ।

## କିମ୍ବଦନ୍ତୀ

ଏଇ ସାହିତ୍ୟ ଲାଗି କବିର କେତେ ଯାତନା, ଅପବାଦର କେତେ କଳଙ୍କ! କଷଣର ଅଗ୍ନିଭିଜା ଅକ୍ଷରରେ ଯାହାର ସାହିତ୍ୟ ଗଢ଼ା, ସେ କି କେବେ ଈର୍ଷାନଳର ଚିତାକୁଣ୍ଡରେ ଜଳିଯାଇପାରେ? କଷଣର ରକ୍ତରାଗରେ ପ୍ରତିଭା ଜଳେ ସିନା ଲିଭେ ନାହିଁ। ରାଧାନାଥ ତ ପ୍ରତିଭାର ଶକ୍ତିଧର ସନ୍ତାନ; ତାଙ୍କୁ ବା ଭସ୍ମ କରିବ କିଏ?

ତଥାପି ପ୍ରତିଭାର ଉନ୍ମେଷ ଓ ଉତ୍ତରଣ ସୋପାନରେ ଗତି କଲାବେଳେ ରାଧାନାଥଙ୍କୁ ବହୁ ଖାଲଢିପର ସମ୍ମୁଖୀନ ହେବାକୁ ପଡ଼ିଥିଲା। ବିବାଦ-ବିସମ୍ବାଦର କଣ୍ଟାବାଡ଼ ଯାତ୍ରାପଥର ମଝିରେ ମଝିରେ ଠିଆ ହୋଇ ଯାଇଥିଲା। କିମ୍ବଦନ୍ତୀର ଏକ ପ୍ରଶସ୍ତ ବାୟୁମଣ୍ଡଳ ଯେତେବେଳେ ଆମ ସାରସ୍ୱତ ସରହଦକୁ ଘେରି ରହିଥିଲା।

କିନ୍ତୁ ଏଇ କିମ୍ବଦନ୍ତୀର ଭୂମିକା ନିଏଁ ସ୍ୱୟଂ ରାଧାନାଥ—ଏମିତି ଧାରଣାର ସତ ଯେତେ ମିଛ ତାଠୁଁ ବେଶି। ମନେହୁଏ ଏଥିପାଇଁ ବ୍ୟକ୍ତିକୁ ଆଢ଼ୁଆଳରେ ରଖି କଳାର ସୂତ୍ରପାତ କରାଯାଇଛି। ମାତ୍ର ବ୍ୟକ୍ତିଠାରୁ କୃତି ବା ଆଭିମୁଖ୍ୟ ହେଉଛି ଏଇ କିମ୍ବଦନ୍ତୀର ମୂଳବୀଜ। ଅବଶ୍ୟ ପରିସ୍ଥିତି ଯେ ଏଥିଲାଗି କିଛି ଉପାଦାନ ଯୋଗାଇ ନାହିଁ; ତା ନୁହେଁ। ରାଧାନାଥଙ୍କର କବିପ୍ରସିଦ୍ଧି, ପାଠ୍ୟ-ପୁସ୍ତକ ରଚନା ଓ ସ୍କୁଲମାନଙ୍କରେ ତାହାର ପ୍ରବର୍ତ୍ତନ, ପତ୍ରପତ୍ରିକା-ମାନଙ୍କରେ ରାଧାନାଥଙ୍କର କବି-କର୍ମର ପ୍ରଶସ୍ତି ଏବଂ ରାଜନ୍ୟବର୍ଗଙ୍କର ପ୍ରୋତ୍ସାହନ ଇତ୍ୟାଦି ଗୋଟିଏ ପକ୍ଷରେ ରାଧାନାଥୀ ଗୋଷ୍ଠୀ ଠିଆ କଲାବେଳେ ଅନ୍ୟ ପକ୍ଷରେ ରାଧାନାଥୀ-ବିରୋଧୀ ସ୍ୱର ଉତ୍ତୋଳନ କରିଥିଲା।

ସାରସ୍ୱତ ସିଦ୍ଧିର ଅତିକ୍ରମଣ କିମ୍ବା ଅବଦମନ ହେଉଛି ସର୍ଜନା ବ୍ୟାପାରରେ ଏକ ଚିରନ୍ତନ ଅଘଟଣ। ଏହା କେତେବେଳେ ସହଜାତ ତ

କେବେ କେବେ ପୁଣି ସ୍ୱେଚ୍ଛାକୃତ । ଏମିତି ପରମ୍ପରକୁ ଟାଳି ଦେବାଲାଗି ହେଉଥିବା ପ୍ରୟନ୍ନ ଲେଖାଲେଖି କ୍ଷେତ୍ରରେ କବି-କଳିର ସୂତ୍ରପାତ କରିବ ନାହିଁ ତ ଆଉ କଣ ? ପୃଥିବୀର ସାରସ୍ୱତ ଇତିହାସରେ ଏପରି ଅପଘଟଣାର ଉଦାହରଣ ଦୁର୍ଲ୍ଲଭ ନୁହେଁ ।

ଦେଖାଯାଉଛି, କୌଣସି ଜାତିର ସାହିତ୍ୟ-ଇତିହାସରେ ଏଇ କବି-କଳି ସର୍ଜନା ଭଣ୍ଡାରକୁ କିଛି ସାରସ୍ୱତ-ଧନ ଦାନ କରିଛି । ପୂର୍ବରୁ କହିଛି, ଦ୍ୱୈତ ବା ଚେତନା ସଂଘର୍ଷ ହେଉଛି ଏପରି ସାରସ୍ୱତ କଳିର ମୂଳଦଣ୍ଡ । ଚେତନା ସଂଘର୍ଷ ହେଉଛି ପୁଣି ରେନାସାଁସ୍‌ର ଏକ ଶୁଭ ପ୍ରତିଷ୍ଠା । ନବୀନ ଓ ପ୍ରାଚୀନ ଚେତନାର ସମର୍ଥକମାନେ ହେଉଛନ୍ତି ଏହାର ଦୁଇଟି ପକ୍ଷ । ପ୍ରକାରାନ୍ତରରେ ଏହା ସ୍ଥିତିଶୀଳ ଓ ସଂସ୍କାରଶୀଳଙ୍କର ଏକ ସଂଘର୍ଷ । ଇଂଲଣ୍ଡ ରେନାସାଁସ ଆପଣା ଗତିକ୍ରମରେ ଏଇ କବି-କଳିର ସମ୍ମୁଖୀନ ହୋଇ ପାର୍ଶ୍ୱପରିଣାମରୁ ସାମାନ୍ୟ କିଛି Polemical Literature ବା ବିବାଦୀୟ ସାହିତ୍ୟ ସୃଷ୍ଟି କରିଥିଲା ଓଡ଼ିଆ ସାହିତ୍ୟ ମଧ୍ୟ କଣ୍ଟକିତ ସାହିତ୍ୟିକ ସର୍ଜନାର ମୁଖଦର୍ଶନ କରିଥିଲା । ମଧୀ ଯୁଦ୍ଧର ତିକ୍ତ ହାବ-ଭାବ ଓ ପ୍ରତିଦ୍ୱନ୍ଦ୍ୱିତାରୁ ଭକ୍ତକବି ମଧୁସୂଦନଙ୍କର 'ସାବାସ ସାହିତ୍ୟ ଚର୍ଚ୍ଚା ସାବାସ ସାବାସ', 'ଭଣ୍ଡରସାୟନ କାବ୍ୟ' ଆଦି କବିତାର ରଚନା ସମ୍ଭବ ହୋଇଥିଲା । ପୁଣି ଲାଲା ରାମନାରାୟଣ ରାୟ, ଚତୁର୍ଭୁଜ ପଟ୍ଟନାୟକ, ପ୍ୟାରୀମୋହନ ଆଚାର୍ଯ୍ୟ ( ୧୮୫୨-୧୮୮୧ ), ବିଶ୍ୱନାଥ କର ( ୧୮୬୪-୧୯୩୪); ଗୋବିନ୍ଦଚନ୍ଦ୍ର ପଟ୍ଟନାୟକ ( ସଂବାଦ ବାହିକା ସଂପାଦକ ), ନୀଳମଣି ବିଦ୍ୟାରତ୍ନ ( ୧୮୬୭, ଡିସେମ୍ବର ୧୪—୧୯୨୪, ଜୁଲାଇ ୨୭ ) ଏବଂ ଗୌରୀଶଙ୍କର ରାୟ ( ୧୮୩୮—୧୯୧୭ ) ଇତ୍ୟାଦି ସେକାଳର ବିଶିଷ୍ଟ ସାହିତ୍ୟିକ ଓ ସଂପାଦକମାନଙ୍କର ଆଲୋଚନା ଓ ଟୀକା ଟିପ୍ପଣି ଦ୍ୱାରା ଓଡ଼ିଆ ସମାଲୋଚନା ସାହିତ୍ୟର ଏକ ନୂତନ ଦିଗନ୍ତ ମଧ୍ୟ ଉନ୍ମୋଚିତ ହୋଇପାରିଥିଲା ।

ସୁତରାଂ କୁହାଯାଇପାରେ ଯେ, ଭଞ୍ଜ ଓ ରାଧାନାଥ ପକ୍ଷୀୟ ବାଦ-ବିସମ୍ବାଦରୁ ଜାତ ହୋଇଥିବା କଳହ; କେତେବେଳେ କେମିତି ତିକ୍ତ ବାତାବରଣ ଓ ଘୃଣ୍ୟ ଆବହାଓ୍ୱା ସୃଷ୍ଟି କରିଥିଲେ ମଧ୍ୟ ସ୍ଥୂଳତଃ କିଛି ସାହିତ୍ୟିକ ରଚନା-କୃତିର ଜନକ ହୋଇପାରିଥିଲା । ଏଇ କବିକଳିର ଅନ୍ତରାଳରେ ରାଧାନାଥଙ୍କର କବି-କର୍ମର ଭୂମିକା କଣ ଥିଲା କିମ୍ବା ତାହା ସେକାଳର ସାହିତ୍ୟିକ ପାଣିପାଗରେ କପରି ଦୋଳନ ସୃଷ୍ଟି କରିଥିଲା, ସେସବୁର ପୁଙ୍ଖାନୁପୁଙ୍ଖ ଆଲୋଚନା କବିଚରିତର ଉପଲବ୍ଧି ଓ ସେକାଳର ସାରସ୍ୱତ ପରିବେଶର ଯଥାର୍ଥ ବିବେଚନା ପାଇଁ ଉପଯୋଗୀ ।

ରାଧାନାଥ ଥିଲେ ଜଣେ ପ୍ରତିଭାଧର କବି ଏବଂ ଜଣେ ଉଚ୍ଚପଦସ୍ଥ ରାଜକର୍ମଚାରୀ । ଶିକ୍ଷାଧିକାରୀ ଥିବାରୁ ରାଧାନାଥ ଖୁବ୍ ସୁବିଧାଜନକ ଅବସ୍ଥାରେ ଆପଣାର ସାହିତ୍ୟିକ ରୁଚିବୋଧକୁ କାର୍ଯ୍ୟକାରୀ କରିବାଲାଗି ସୁଯୋଗ ପାଇ ପାରୁଥିଲେ । ଶିକ୍ଷା ବିଭାଗରେ ବନ୍ଧୁ,ବାନ୍ଧବ ଓ ଆତ୍ମୀୟ ସ୍ୱଜନଙ୍କର ନିଯୁକ୍ତି, ପାଠ୍ୟ-ପୁସ୍ତକ ପ୍ରଣୟନ ପାଇଁ ବ୍ୟକ୍ତିଗତ ଉଦ୍ୟମ ଏବଂ ଅନୁଗାମୀମାନଙ୍କୁ ପ୍ରୋତ୍ସାହନ ଦାନ କ୍ଷେତ୍ରରେ ରାଧାନାଥ ବେଶ୍ ତତ୍ପର ଥିଲେ । ଆପଣା ଲେଖକଙ୍କର ପାଠ୍ୟ-ପୁସ୍ତକକୁ ବିଦ୍ୟାଳୟମାନଙ୍କରେ ଚଳେଇବା ଲାଗି ସେ ମଧ୍ୟ ଯତ୍ନ କରିଥିଲେ । ସେ କାଳରେ ସ୍କୁଲମାନଙ୍କରେ ପ୍ରଚଳିତ ପାଠ୍ୟ-ପୁସ୍ତକର ରୂପରେଖ ଅନୁଧ୍ୟାନ କଲେ ଏହାର ସତ୍ୟତା ଉପଲବ୍ଧ ହେବ ।

ସେତେବେଳେ ରାଧାନାଥଙ୍କର ମେଘଦୂତ (୧୮୭୩) କଟକ ନର୍ମାଲ ସ୍କୁଲ ପାଇଁ ପାଠ୍ୟ-ପୁସ୍ତକ ରୂପେ, ଉତ୍କଳରଚନା (୧୮୭୬) ଭର୍ଣ୍ଣାକୁଲାର ବୃତ୍ତି ପରୀକ୍ଷା ନିମନ୍ତେ ପାଠ୍ୟ-ଗ୍ରନ୍ଥରୂପେ, ଏବଂ ଶିବନାରାୟଣ ନାୟକଙ୍କ ସହଯୋଗିତାରେ ରଚିତ କ୍ଷେତ୍ରତତ୍ତ୍ୱ (୧୮୭୬) ଛାତ୍ରବୃତ୍ତି, ମାଇନର, ଓ ମଧ୍ୟବର୍ତ୍ତୀ ପାଇଁ ପାଠ୍ୟ-ପୁସ୍ତକ ରୂପେ ବିବେଚିତ ହୋଇଥିଲା । ଏତଦ୍‌ଭିନ୍ନ ରାଧାନାଥ-ମଧୁସୂଦନଙ୍କର କବିତାବଳୀ-୧ମ (୧୮୭୬), ଆଦର୍ଶ ପ୍ରଶ୍ନାବଳୀ (ମାନସାଙ୍କ, ରାଧାନାଥ ରଚିତ-୧୮୭୬), ଭୂଗୋଳ ବ୍ୟବହାରିକ (ରାଧାନାଥ-ଶିବନାରାୟଣ-ରଚିତ-୧୮୭୭), ଭୂଗୋଳ ପ୍ରାକୃତିକ (୧୮୭। ), ସାହିତ୍ୟ ବିଷୟକ ଆଦର୍ଶ ପ୍ରଶ୍ନାବଳୀ (ରାଧାନାଥ-୧୮୭୯), ବ୍ୟାକରଣ (ରାଧାନାଥ-୧୮୮୧), କବିତାବଳୀ (୨ୟ-୧୮୮୦), ବ୍ୟାକରଣ ପ୍ରବେଶ ( ରାଧାନାଥ-୧୮୯୧) ଇତ୍ୟାଦି ସେ ସମୟରେ ପାଠ୍ୟ-ପୁସ୍ତକ ରୂପେ ସ୍କୁଲମାନଙ୍କରେ ପଢ଼ା ହେଉଥିଲା । ଅନ୍ୟାନ୍ୟଙ୍କ ମଧ୍ୟରେ ପଣ୍ଡିତ ଗୋବିନ୍ଦ ରଥଙ୍କର କବିତା କଳାପ (୧୮୭୮), ବୈକୁଣ୍ଠନାଥ ଦେଙ୍କର ଦଲିଲ ସଂଗ୍ରହ (୧୮୮୧), ମଧୁସୂଦନ ରାଓଙ୍କର ଅବଧାନବନ୍ଧୁ (୧୮୮୩), ଉମେଶ ଚନ୍ଦ୍ର ବସୁଙ୍କର ଉତ୍କଳ ପାଟୀଗଣିତ (୧୮୮୩), ସାର୍ ବାସୁଦେବ ସୁଢ଼ଳଦେବଙ୍କର ଅଳଙ୍କାର ବୋଧୋଦୟ (୧୮୮୬), ମଧୁସୂଦନ ରାଓଙ୍କର ଛନ୍ଦମାଳା, ଖଲ୍ଲିକୋଟ ରାଣୀ ଶ୍ରୀମତୀ କନକମଞ୍ଜରୀ ଦେବୀଙ୍କର ବାଳକା ପାଠ, କିଂବା ଜଗନ୍ମୋହନ ରାୟଙ୍କର ଭ୍ରମଭଞ୍ଜନ (୧୮୬୮) ପ୍ରଭୃତି ରାଧାନାଥଙ୍କର କର୍ମ-କାଳରେ ପାଠ୍ୟ-ପୁସ୍ତକ ହୋଇ ବିଦ୍ୟାଳୟମାନଙ୍କରେ ଚଳୁଥିଲା ।

ଏତଦ୍‌ଭିନ୍ନ ସେତେବେଳେ ରାଧାନାଥଙ୍କର ଅନୁଗାମୀ ଓ ସଂପର୍କୀୟ ଥିବା କେତେଜଣ ପ୍ରେସ୍ ମାଲିକ ପୁସ୍ତକ ପ୍ରକାଶନ ଓ ବିଦ୍ୟାଳୟମାନଙ୍କରେ ତାର

ପ୍ରଚଳନ କ୍ଷେତ୍ରରେ ରାଧାନାଥଙ୍କର ଉତ୍ସାହ ଲାଭ କରିଥିଲେ । ରାଧାନାଥଙ୍କର ସାନଭାଇ ସୀତାନାଥ ରାୟଙ୍କ ଦ୍ୱାରା ପରିଚାଳିତ ରାୟ ପ୍ରେସ୍, ମଧୁସୂଦନ ରାଓଙ୍କର ଭାଇ ଜଗନ୍ନାଥ ରାଓଙ୍କର ଭିକ୍ଟୋରିଆ ପ୍ରେସ୍, ଏବଂ କୁମାର ବୈକୁଣ୍ଠନାଥ ଦେଙ୍କର ଉତ୍କଳ ପ୍ରେସ୍, କିଂବା ଜଗନ୍ନାଥବଲ୍ଲଭ ପ୍ରେସ୍, ବାମଣ୍ଡା ପ୍ରଭୃତି ରାଧାନାଥଙ୍କର ଶୁଭଦୃଷ୍ଟିରେ ଥିଲେ । ସେଥିରୁ ପ୍ରକାଶ ପାଉଥିବା ବହିଗୁଡ଼ିକୁ ବିଭିନ୍ନ ପାଠ୍ୟ-କ୍ରମରେ ଚଳେଇ ନେବା ପାଇଁ ରାଧାନାଥ ମଧ୍ୟ ଯତ୍ନ କରିଥିଲେ ।

ଶିକ୍ଷକ ଓ ପ୍ରଶାସକ ରାଧାନାଥଙ୍କର ଏଇ କାର୍ଯ୍ୟକଳାପ କେତେକ ମହଲରେ ସେତେବେଳେ ବିରୋଧଭାବପୋଷଣର ଅବକାଶ ସୃଷ୍ଟି କରିଥିଲା । ତାହାର ଗୁଞ୍ଜରଣ ବିଭିନ୍ନ ପତ୍ରପତ୍ରିକାରେ ଶୁଣାଯାଉଥିଲା । * †

---

* The one thing Baboo Radhanath Ray seems to be in earnest about is to contrive crooked measures as to how the books printed in the De's Press can find the largest and readiest sale. If this can be effected then it does not matter much whether the world runs on to good or bad. If the writer of a book does not happen to be a de-worshiper his book is furnished into oblivion and if any book is printed in the De's press to Radhanath Ray it is the direct gift of Heaven a thin wholly miraculous stupenduous and divine though in reality it may be a strange, incredible, hideous. inextricable Jungle of Jargons snd absurdities.

( ବାଲେଶ୍ୱର ସମ୍ବାଦ ବାହିକା—୧୮୮୪ ସାଲ ନଭେମ୍ବର ୬ ତାରିଖ ସଂଖ୍ୟାରେ ପ୍ରକାଶିତ ଏକ ପତ୍ରର ବିବରଣୀରୁ ସଂଗୃହୀତ )

† When the Joint Inspector himself fixed the text books for the said examinations ( Orissa minor and vernacular examination ) appoints examiners who are mostly his subordinates or place hunters. When the Joint Inspector has a voice almost potential in the framing of question papers often times directing an examiner who happens to set a

କେବଳ ପାଠ୍ୟ-ପୁସ୍ତକ ବ୍ୟାପାର କାହିଁକି, କାବ୍ୟ-କବିତା ରଚନା କ୍ଷେତ୍ରରେ ମଧ୍ୟ ରାଧାନାଥଙ୍କ ବିରୁଦ୍ଧରେ ଏକ ଶୀତଳ ବିକ୍ଷୋଭ ବିଚ୍ଛିନ୍ନ ମଣ୍ଡଳରେ ପ୍ରକାଶ ପାଇଥିଲା । କେଦାରଗୌରୀ ପ୍ରକାଶପାଇଲା ଉତ୍ତାରୁ ସଂସ୍କାରକ ପତ୍ରିକାରେ ( ୮-୧୧-୧୮୮୬ ସଂଖ୍ୟା ) ନାରଦ ନାମରେ କେହି ସମାଲୋଚକ ଏହାର ଆଲୋଚନା କରିଥିଲେ । ଏହାକୁ ଠିକ୍ ଆଲୋଚନା ନୁହେଁ—ଆକ୍ଷେପ, ଆକ୍ଷେପ ହେଲା କବିଙ୍କର ମନ୍ତବ୍ୟ ଉପରେ । କବି ଜଣାଇଥିଲେ ଯେ ଭୁବନେଶ୍ୱର ନିକଟରେ ଯେଉଁ ନିର୍ଝର ଅଛି, ସେହି ନିର୍ଝରର ପୌରାଣିକ କଥା ଏହି କେଦାର-ଗୌରୀ କାବ୍ୟରେ ଲିପିବଦ୍ଧ । ଆକ୍ଷେପକାରୀ ନାରଦଙ୍କର ଯୁକ୍ତି ହେଲା; କେଦାରଗୌରୀ ଏକ ପୁରାଣ କଥା ବୋଲି ଭ୍ରାନ୍ତ ଧାରଣା ସୃଷ୍ଟି କରି ରାଧାନାଥ ସଚ୍ଚୋଟ କବି-ବୃତ୍ତିର ପରିଚୟ ଦେଇନାହାନ୍ତି । ଚନ୍ଦ୍ରମୋହନ ମହାରଣା ଏହି ନାରଦଙ୍କର ମନ୍ତବ୍ୟର ପ୍ରତିବାଦ କରିବାରୁ ତାଙ୍କୁ ଓଲଟା ଜବାବ ମଧ୍ୟ ମିଳିଥିଲା ।

ଚନ୍ଦ୍ରଭାଗା କାବ୍ୟ ସଂପର୍କରେ ମଧ୍ୟ ଏକ ମୃଦୁ ସମାଲୋଚନା ଶ୍ରୀ ପ୍ରଭାକର ଶର୍ମା ନାମକ ଜଣେ ଲେଖକଙ୍କ ଦ୍ୱାରା ଶିକ୍ଷାବନ୍ଧୁ ( ଅକ୍ଟୋବର—ଡିସେମ୍ବର ୧୮୮୬ ସଂଖ୍ୟା ) ପତ୍ରିକାରେ ପ୍ରକାଶ କରାଯାଇଥିଲା । କିନ୍ତୁ ନନ୍ଦକେଶରୀକାବ୍ୟ ସଂକ୍ରାନ୍ତରେ କଟୁ ସମାଲୋଚନାର ସ୍ୱର ନବସମ୍ବାଦ ( ତା ୧୬-୧୧-୧୮୮୬ ସଂଖ୍ୟା ) ପତ୍ରିକାରେ କେହି ସମାଲୋଚକଙ୍କଠାରୁ ଶୁଣାଯାଇଥିଲା । ତାଙ୍କର ଯୁକ୍ତି ହେଲା; "ଅନୁରାଗର ଛବି ଦୁଇଥରେ ର ( ଚନ୍ଦ୍ରଭାଗା ଓ କେଦାରଗୌରୀ ) ପ୍ରାୟ ଏକ ଜାତୀୟ ଅଟେ । ଏହା ଅସଙ୍ଗତ, ଅସମ୍ଭାଳ, ସ୍ୱାର୍ଥପରବଶ, କାମାନ୍ଧ ପ୍ରଣୟ ଅଟେ । ଅନୁରାଗର ଏପରି ଛବି ଏକାବେଳକେ ସୌନ୍ଦର୍ଯ୍ୟହୀନ ନୋହିଲେହେଁ ଉଚ୍ଚ ଶ୍ରେଣୀର ଛବି ନୁହେଁ ଏବଂ ଏପରି ଛବିର ବହୁଳତା ପଙ୍କିଳାନୁରାଗ

---

little too stiff or other than ordinay questions, to alter such questions according to his own fancy and occasionally exercising his best influence over the examiners to allow liberal marks to candidates and when the same Joint Inspector is said to have his own discreation in giving grace marks to candidates at the time of preparing result papers, that officer should not finally be entitled to any credit in showing up his own arbitrary doings.

( ଉତ୍କଳଦୀପିକା—ତା ୭-୧-୧୮୮୨ ରେ ପ୍ରକାଶିତ ଲେଖାର ଅଂଶ-ବିଶେଷ )

କଳୁଷିତ, କୁରୁଚିପ୍ଲାବିତ, ଉତ୍କଳ ସାହିତ୍ୟ ସଂସାରରେ ବାଞ୍ଛନୀୟ ନୁହେଁ । ଆମ୍ଭେମାନେ ଆଶାକରୁ, କବି ଭବିଷ୍ୟତରେ ପବିତ୍ରପ୍ରଣୟର ସ୍ୱର୍ଗୀୟ ଛବି ଦେଖାଇ ଆମ୍ଭମାନଙ୍କ ପିପାସୁ ହୃଦୟକୁ ନିର୍ମଳ ସୌନ୍ଦର୍ଯ୍ୟରସରେ ଅଭିଷିକ୍ତ କରିବେ ।" ※

କବି-କୃତ ସେନ ସମାଲୋଚନାର ଶେଷକିସ୍ତି ଯେ ଏଇଠି ସଂପନ୍ନ ହୋଇଗଲା ତା' ନୁହେଁ; ସଂସ୍କାରକ ନାମକ ଅନ୍ୟ ଏକ ପତ୍ରିକାର ତା ୧୫-୩-୧୮୮୮ ସଂଖ୍ୟାରେ ନନ୍ଦକାର କାବ୍ୟ-ବର୍ଣ୍ଣିତ ବ୍ୟକ୍ତିତ୍ୱ ସେନ ବିସମ୍ବାଦ ପ୍ରକାଶ ପାଇଥିଲା । ପାଠକେ ଅନୁଭବ କରିଥିଲେ ଯେ, ନନ୍ଦକେଶରୀ କାବ୍ୟ ଉତ୍କଳୀୟ ନାୟିକାକୁଳରେ ଚିରକଳଙ୍କ ତୁଲ୍ୟ । ଇତିହାସ ଯଦି ନନ୍ଦକାକୁ ମାନୁଥାନ୍ତା, ମହାନଦୀକୂଳରେ ନନ୍ଦକେଶରୀ ପଟାବୋଲି କୌଣସି ସ୍ଥାନର ବାସ୍ତବ ଭୌଗୋଳିକ ସ୍ଥିତି ଯଦି ଥା'ନ୍ତା, ତା'ହେଲେ କବିଙ୍କର କାବ୍ୟ ପ୍ରସଙ୍ଗ ଜାତୀୟତାବିରୋଧ ବୋଲି ଧରାଯାଆନ୍ତା ନାହିଁ । ମାତ୍ର ସେ ସବୁର କୌଣସି ଅସ୍ତିତ୍ୱ ନ ଥିବାରୁ ଏହା କବିଙ୍କର ଏକ ଅପକୀର୍ତ୍ତି ।

କବିଙ୍କର କଳ୍ପନା-ଶକ୍ତି ଏଥିପାଇଁ ଦାୟୀ । ଏଇ କଳ୍ପନାଶକ୍ତି, 'ଅଶ୍ରାବ୍ୟ, ଅପାଠ୍ୟ, ଜଘନ୍ୟ, ନୀଚ, ଓ କଦର୍ଯ୍ୟ ଆଖ୍ୟାୟିକାମାନଙ୍କର ଜନ୍ମଦାତ୍ରୀ ଅଟେ'—ଏକଥା ମଧ୍ୟ ଉତ୍କଳ ଦୀପିକା (ତା ୩୦-୧୦-୧୮୯୧) ସ୍ତମ୍ଭରେ ଦେଖିବାକୁ ମିଳିଥିଲା । ପାର୍ବତୀ ସଂକ୍ରାନ୍ତରେ ମଧ୍ୟ ଅନୁରୂପ ମନ୍ତବ୍ୟ ଉତ୍କଳ ଦୀପିକାର ଉକ୍ତ ସଂଖ୍ୟାରେ ପ୍ରକାଶ ପାଇଥିଲା ।

ରାଧାନାଥୀ ପ୍ରତିଭାକୁ ଅବଦମିତ କରିବାର ଉଦ୍ୟମ ଅତ୍ୟନ୍ତ ସ୍ପଷ୍ଟ ହୋଇ ଉଠିଥିଲା; ପତ୍ରପତ୍ରିକା ମାନଙ୍କରେ କବି-କଳିର ସ୍ୱର ଖୁବ୍ ଟାଣ ଜଣା ପଡ଼ୁଥିଲା । ଜାତୀୟ ଇତିହାସ ପ୍ରତି ରାଧାନାଥଙ୍କର ନିଷ୍ଠୁରତା ଏବଂ ଆମର ଚିରାଚରିତ ଚଳଣି କୁ ଓଲଟା ଦର୍ଶୁଥିବା ପ୍ରେମ ବ୍ୟାପାରର କାବ୍ୟାୟନକୁ କେନ୍ଦ୍ର କରି, ରାଧାନାଥଙ୍କ ପ୍ରତି ବିରୋଧର ସକଳ ପ୍ରସଙ୍ଗ ସଜଡ଼ା ହୋଇଥିଲା । ସମ୍ବାଦ ବାହିକା (ତା ୩-୮-୧୮୯୩ ସଂଖ୍ୟା, ପୃଷ୍ଠା—୧୨୪) ପତ୍ରିକାର ଗୋଟିଏ

---

※ ଡକ୍ଟର ନଟବର ସାମନ୍ତରାୟ—ଯୁଗପ୍ରବର୍ତ୍ତକ ସ୍ରଷ୍ଟା ରାଧାନାଥ (୧୯୬୦) ପୃଷ୍ଠା—୧୪୮ କଟକ ।

ଦୃଷ୍ଟାନ୍ତରୁ ଏହି ବିରୋଧ କେତେ ତୀବ୍ର ଓ ଘୃଣ୍ୟ ହୋଇଯାଇଥିଲା, ତାର କଳ୍ପନା କରିହୁଏ । †

ଏମିତି କେତେକ କାରଣରୁ ଆଳକରି ରାଧାନାଥଙ୍କର କାବ୍ୟ-କୃତି ସଂପର୍କରେ କ୍ରମଶଃ ଗଢ଼ି ଉଠିଥିବା ବିପକ୍ଷବାଦୀ ଜନମତ ସହିତେ ଶିକ୍ଷକ ଓ ପ୍ରଶାସକ ରାଧାନାଥଙ୍କର କାର୍ଯ୍ୟ-କଳାପ ବାବଦରେ ବିଦ୍ୱେଷ ଓ ସନ୍ଦେହଭାବ ମଧ୍ୟ ପ୍ରକାଶ ପାଇଥିଲା । ରାଧାନାଥ, ଶିକ୍ଷା ବିଭାଗରେ ଜଣେ ଉଚ୍ଚତମ କର୍ତ୍ତା ଥିବାରୁ ପାଠ୍ୟ-ପୁସ୍ତକ ନିର୍ବାଚନ ଓ ବିଦ୍ୟାଳୟମାନଙ୍କରେ ସେସବୁର ପ୍ରଚଳନ କ୍ଷେତ୍ରରେ ଯୋଗ୍ୟତା ଓ ପୁସ୍ତକର ମୂଲ୍ୟାମୂଲ୍ୟ ପ୍ରତି ଦୃଷ୍ଟି ନଦେଇ ଆତ୍ମୀୟ ସ୍ୱଜନ ବା ବନ୍ଧୁମାନଙ୍କର ପୁସ୍ତକକୁ ନିର୍ବିଚାରରେ ପାଠ୍ୟ-କ୍ରମରେ ଅନ୍ତର୍ଭୁକ୍ତ କରାଇ ନେଉଛନ୍ତି ବୋଲି ଗୁରୁତର ଅଭିଯୋଗ ଉଚ୍ଚ ସରକାରୀ କର୍ତ୍ତୃପକ୍ଷଙ୍କ ନିକଟରେ କରାଯାଇଥିଲା ।

ସରକାରଙ୍କ ନିର୍ଦ୍ଦେଶକ୍ରମେ ଇନସ୍ପେକ୍ଟର ଶ୍ରୀ ବ୍ରହ୍ମମୋହନ ମଲ୍ଲିକଙ୍କ ଦ୍ୱାରା ଏଥିର ଅନୁସନ୍ଧାନ (୧୮୯୦) କରାଗଲା । ସେ, ରାଧାନାଥଙ୍କୁ କୌଣସି ପ୍ରକାରେ ଅପରାଧୀ ବୋଲି ଘୋଷଣା କରିପାରିଲେ ନାହିଁ । ବ୍ରହ୍ମମୋହନ, ଅନୁସନ୍ଧାନ ଉପରୁ ରାଧାନାଥଙ୍କ ସପକ୍ଷରେ ରିପୋର୍ଟ ଦେଲେ । ଏହା ଫଳରେ ରାଧାନାଥଙ୍କ ବିରୋଧୀମାନେ ଉତ୍ତେଜିତ ହେବାରୁ ନିବୃତ୍ତ ହୋଇପାରିଲେ ନାହିଁ । ଶୀତଳ ବିଦ୍ୱେଷ ବହ୍ନି ଜ୍ୱଳିଲା । ଅପପ୍ରଚାର ହେଲା; ରାଧାନାଥ ଯେଉଁ

---

† କହନା କହନା ଆଉ ପ୍ରୀତିଆ କଥା / ଶୁଣିଲି ବେଳକୁ ଶିର ହେଉଛି ବ୍ୟଥା / ସଂମ୍ବାଦ କାଗଜ ଉଡ଼ି, ବେଜନ୍‌କଣ୍ଠେ ପଡ଼ି ପଡ଼ି / ସତାଇ ମଗଜ, ବିନ୍ଧ ହେଲଣି ମଥା / ପାର୍ବତୀ-ପର୍ଯ୍ୟଙ୍କ-ପାପ, ଉଦପାନେ କାମତାପ / ସରସ୍ୱତୀ ଲୀଳା ଭଙ୍ଗେ ବିନାଶ ଯଥା / ଶାର୍ଦ୍ଦୂଳର ଅଙ୍କରେ, ଜୀବଗତ ନର୍ମଦାରେ / କାମାତୁରା ରାଜବାଳା ଡ଼ାକିଲି ତଥା / କୁଳେ ଦେଇ ଜଳାଞ୍ଜଳି, ନିଶୀଥରେ ଗଲି ଚଳି / ନାୟକ ସମ୍ମୁଖେ ଥାଏ ମୋହନ ଯନ୍ତ୍ରା / ଗ୍ରେଭାଇଲା ରାଜମଣି, ଫୁଲବାଣେ ବାଳାମଣି / ପ୍ରୀତି ଆଜ ହେଲେ ଆଉ କଏ କହନ୍ତା / ଅମ୍ବୁନିଧି କୂଳେ ପୁଣି, ଚନ୍ଦ୍ରଗିରିଠେ ଅଛୁ ଶୁଣି / ନିରେଖି ଅବଳାବାଳା କ୍ରୀଡ଼ନରତା / ବୁଡ଼ାଇ ମାରିଲି ତାକୁ, ଗୋଡ଼ାଇ ପ୍ରେମଶୀଳାକୁ / ପ୍ରେମେ ଉନ୍ମତ୍ତ ଗ୍ରହରାଜ ଦେବତା / ଲାବଣ୍ୟବତୀକୁ ଦେଖି, ଶଲାକା ଦଣ୍ଡାକୁ ଟେକି / କଣ୍ଠଲାଗି କବିରାଜ ଭୂଷଣ ପ୍ରଥା / ମଧ୍ୟ ଆହରଣକାଳେ, ପଡ଼ି ତନୁ-ବାୟୁଜାଳେ / ଉଜ୍ଜ୍ୱଳ ସ୍ୱଭାବ ହେତୁ ପାଉଛୁ ବ୍ୟଥା / ଜାତି କୁଳ ଧର୍ମ ଧ୍ୱଂସ, ବିକାଶାଦ୍ଧ୍ୟା ପ୍ରେମେ ରସି / ସେ ପ୍ରେମୁଁ ଜନ୍ମାଉଅଛୁ କବିତାଳତା ।

ପାଠ୍ୟ-ପୁସ୍ତକଗୁଡ଼ିକ ବିଦ୍ୟାଳୟମାନଙ୍କରେ ବ୍ୟବହାର ପାଇଁ ନିର୍ବାଚନ କରୁଛନ୍ତି, ସେଗୁଡ଼ିକର ଭାଷା ଶୁଦ୍ଧ ଓଡ଼ିଆ ନୁହେଁ, ବିକୃତ ଓଡ଼ିଆ । ବଙ୍ଗୀୟମାନଙ୍କର ଏହା ଏକ ଓଡ଼ିଆବିରୋଧୀ ଚକ୍ରାନ୍ତ ।

ପରବର୍ତ୍ତୀ କାଳର କେତେକ ଘଟଣା ଏହି ବିଦ୍ୱେଷବୋଧକୁ ଉତ୍ତା-ଅଧିକେ ତେଜ ଦେଇଥିଲା । ପ୍ୟାରୀମୋହନ ସେନ ବିଦ୍ୟାଳୟମାନଙ୍କର ଡେପୁଟି ଇନସପେକ୍ଟର ଥିଲାବେଳେ (୧୮୯୬) ସେ ନିମ୍ନ ଓ ଉଚ୍ଚପ୍ରାଥମିକ ଛାତ୍ର-ଛାତ୍ରୀଙ୍କୁ ପୁରସ୍କାର ଦେବା ନିମନ୍ତେ କେତେଖଣ୍ଡ ଭଞ୍ଜୀୟ କାବ୍ୟ-ଗ୍ରନ୍ଥ ନିର୍ବାଚନ କଲେ ଏବଂ ଛାତ୍ର-ଛାତ୍ରୀଙ୍କୁ ତାହା ପୁରସ୍କାର ସ୍ୱରୂପ ବିତରଣ କଲେ । ଏହାର ପ୍ରତିବାଦ ହେଲା; ଭଞ୍ଜଙ୍କ ଲେଖା ଅଶ୍ଳୀଳତାପୂର୍ଣ୍ଣ, ତାହା ପୁରସ୍କାର-ଯୋଗ୍ୟ ନୁହେଁ ।

ରେଭେନ୍‌ସା ବାଳିକା ବିଦ୍ୟାଳୟର ହେଡ୍ ପଣ୍ଡିତ ଲାଲ ରାମନାରାୟଣ ରାୟ, ଭଞ୍ଜଙ୍କ କାବ୍ୟର ଶ୍ଳୀଳତା ଓ କାବ୍ୟତ୍ୱ ଉପରେ ଉଗ୍ରମତ ପୋଷଣ କରି ଆଲୋଚନାର ନୂତନ ଦିଗନ୍ତ ଫିଟାଇଲେ । ଉତ୍କଳ ପ୍ରଭା (୧୮୯୬) ରେ ରାମ ନାରାୟଣଙ୍କର ଲେଖା ପ୍ରକାଶ ପାଇଲା । 'ଉତ୍କଳ ପ୍ରଭା' ଏପରି ସମାଲୋଚନାକୁ ପ୍ରକାଶ କରିବାରେ କୌଣସି ଅବହେଳା ପ୍ରଦର୍ଶନ କରି ନ ଥିଲା । କାରଣ ଏପରି ଆଲୋଚନା, ପତ୍ରିକାଟିର ସଂପାଦନା ଆଦର୍ଶର ଅନୁକୂଳ ଥିଲା । ଏହାର ଲକ୍ଷ୍ୟ ଥିଲା, ଆଧୁନିକ ସାହିତ୍ୟର ପ୍ରଚାର ଓ ପ୍ରସାର । ପ୍ରାଚୀନ ସାହିତ୍ୟ ପ୍ରତି ଏକପ୍ରକାର ନିମ୍ନ ଦୃଷ୍ଟି ଏହି ପତ୍ରିକା ପୋଷଣ କରୁଥିଲା । ଉତ୍କଳ ପ୍ରଭାର ସଂପାଦକ ରାଜନାରାୟଣ ଦାସ ଓ ଲେଖକମାନେ ବିଶ୍ୱାସ କରୁଥିଲେ ଯେ, ପ୍ରାଚୀନ ଓଡ଼ିଆ ସାହିତ୍ୟରେ ସଂପଦ ବୋଲି ଯାହା ବିବେଚିତ ହେଉଛି, ତାହା ଗୋଟିଏ ଜାତିର ସମ୍ଭ୍ରାନ୍ତ ପରିଚୟ ପାଇଁ ଯଥେଷ୍ଟ ନୁହେଁ । ସାରଳା, ଉପେନ୍ଦ୍ର, ଓ ଜଗନ୍ନାଥ ଇତ୍ୟାଦିଙ୍କର ରାମାୟଣ, ମହାଭାରତ, କାବ୍ୟ ଓ ଭାଗବତ—ଉତ୍କଳୀୟ ସମାଜ ଓ ଜାତୀୟ ଜୀବନର ମାନସିକ ଉନ୍ନତିର ସହାୟକ ବୋଲି କୁହାଯାଏ । ମାତ୍ର ସାରଳା-ସାହିତ୍ୟ ଓ ଶ୍ରୀ ଜଗନ୍ନାଥ ଦାସଙ୍କର ଭାଗବତକୁ ବାଦଦେଲେ ମଧ୍ୟରେ ଯେଉଁ ଭଞ୍ଜ-ସାହିତ୍ୟ ରହିଗଲା, ତାହାକୁ ଆମର ସାରସ୍ୱତ ପୁଞ୍ଜି ବୋଲି ଭାବି, ଜାତୀୟ ଉନ୍ନତିର ସ୍ୱପ୍ନ ଦେଖିବା ବୃଥା । କାରଣ ଏହି ଭଞ୍ଜ-ସାହିତ୍ୟ ଜାତିର ସାମାଜିକ ଓ ନୈତିକ ଜୀବନର ବିକାଶ ଲାଗି ପ୍ରେରଣା ଦେବାକୁ ସମର୍ଥ ନୁହେଁ; ଯେହେତୁ ଏହା ଅଶ୍ଳୀଳତା ପରିପୂର୍ଣ୍ଣ । ବରଂ ଏହି କାଳର ଅନ୍ୟତମ କବି ଦୀନକୃଷ୍ଣ ଦାସଙ୍କର କାବ୍ୟ-ସାହିତ୍ୟ ସୁରୁଚିକର ଓ ରସଗର୍ଭା କବିତାର ସ୍ରଷ୍ଟା ରୂପେ ଜାତୀୟ-ସାହିତ୍ୟ ପକ୍ଷରେ ଶୁଭଙ୍କର ବିବେଚିତ ହେଉଥିଲା ।

ଏମିତି ବିସ୍ମୟର ଓ ବିଶ୍ୱାସର ପ୍ରେରଣାରେ ପରିଚାଳିତ ହୋଇଥିବାରୁ 'ଉତ୍କଳ ପ୍ରଭା,' ଲାଲ ରାମ ନାରାୟଣ ରାୟଙ୍କ ଠାରୁ ଭଞ୍ଜ-ସାହିତ୍ୟ ଆଲୋଚନାତ୍ମକ ଲେଖା ପାଇଲାକ୍ଷଣି ତାକୁ ପତ୍ରିକାରେ ସ୍ଥାନ ଦେଇ ତଦାନୀନ୍ତନ ସାହିତ୍ୟିକ ବାତାବରଣରେ କିଛି ଆନ୍ଦୋଳନ ସୃଷ୍ଟି କରିଥିଲା ।

ଗୌରୀ ଶଙ୍କର ରାୟ, ଏହାର ପ୍ରତିବାଦ କରି, 'ଉତ୍କଳ ଦୀପିକା' (୧୮୬୬) ରେ ଯୁକ୍ତିସମ୍ବଳିତ ମନ୍ତବ୍ୟମାନ ପ୍ରକାଶ କଲେ । ଉତ୍କଳ ଦୀପିକା, ଭଞ୍ଜ ସାହିତ୍ୟ ସମାଲୋଚକ ଲାଲା ରାମନାରାୟଣ ରାୟଙ୍କୁ 'ଜାତୀୟ ସାହିତ୍ୟର ଘୋର ଅନିଷ୍ଟକାରୀ' ବୋଲି ଘୋଷଣା କରିଥିଲେ ।

ଏଇ ଦୁଇଟି ପତ୍ରିକାର ସୀମା ଡେଇଁ କ୍ରମଶଃ ଭଞ୍ଜ-ରାଧାନାଥ ସାହିତ୍ୟ ଆଲୋଚନାର ଧାରା ଅନ୍ୟ ପତ୍ରପତ୍ରିକାମାନଙ୍କର ପରିହୃଦଆଡ଼କୁ ମାଡ଼ିଗଲା । ଉତ୍କଳ ମଧୁପ (୧୮୭୮) ରେ ପ୍ରାଚୀ ସାହିତ୍ୟର ଆଲୋଚନା ଓ ପ୍ରସାର ପ୍ରତି ଧ୍ୟାନ ଦେଇ ଲେଖାଲେଖି ପ୍ରକାଶ ପାଉଥିବା ଦେଖାଗଲା । ସେହିପରି ସମ୍ବଲପୁର ହିତୈଷିଣୀ (୧୮୮୯) ରେ ରାଧାନାଥ ବା ଆଧୁନିକ ସାହିତ୍ୟର ପକ୍ଷ ସମର୍ଥନ କରି ମନ୍ତବ୍ୟମାନ ପ୍ରକାଶ କରାଗଲା । ସଂବାଦ ବାହିକା (୧୮୭୮) ନିରପେକ୍ଷ ରହୁଥିଲେ ହେଁ ଆବଶ୍ୟକ ହେଲେ ଭଞ୍ଜ ସାହିତ୍ୟର ପକ୍ଷ ସମର୍ଥନ କରୁଥିଲେ ।

କବି-କଳି ସଂପର୍କୀୟ ଆଲୋଚନା ଓ ପ୍ରତି-ଆଲୋଚନା ଏତେ ତୀବ୍ର ହେଲା ଯେ ଏଥି ଲାଗି ସ୍ୱତନ୍ତ୍ର ରୂପେ ଦୁଇଟି ପତ୍ରିକା—ଇନ୍ଦ୍ରଧନୁ (୧୮୯୩, ଅଗଷ୍ଟ ୧୭—୧୮୯୭) ଏବଂ ବିଜୁଳି(୧୮୯୩, ସେପ୍ଟେମ୍ବର ୧୮୯୪, ସେପ୍ଟେମ୍ବର ୧୭) ଭଞ୍ଜ ଓ ରାଧାନାଥ ପକ୍ଷର ସମର୍ଥକ ଭାବେ ପ୍ରକାଶ ପାଇଲେ । ସମାଲୋଚନାର ଗତି ଧାରାକୁ ଏମାନେ ପ୍ରସାରିତ କଲେ; ପତ୍ରିକା ଦୁଇଟି ପାଇଁ ଲେଖକଗୋଷ୍ଠୀ ମଧ୍ୟ ତିଆରି ହୋଇଗଲେ । ଗୌରୀଙ୍କର ରାୟ, ଗୋପାଳ ବଲ୍ଲଭ ଦାସ, ଦାମୋଦର ପଟ୍ଟନାୟକ, ସୁଦାମଚରଣ ନାୟକ ପ୍ରଭୃତି ଲେଖକଗଣ ଇନ୍ଦ୍ରଧନୁରେ ଭଞ୍ଜ-ସାହିତ୍ୟର ସମର୍ଥକ ଭାବେ ଲେଖାଲେଖି କରୁଥିଲେ । ଲାଲା ରାମ ନାରାୟଣ ରାୟ; ନୀଳମଣି ବିଦ୍ୟାରତ୍ନ, ସାର୍ ବାସୁଦେବ ସୁଢ଼ଳଦେବ, ବିଶ୍ୱନାଥ କର ଚନ୍ଦ୍ରମୋହନ ମହାରଣା, ରାମକୃଷ୍ଣ ସାହୁ ଇତ୍ୟାଦି ସାହିତ୍ୟିକ ଗଣ ବିଜୁଳି ପତ୍ରିକାରେ ରାଧାନାଥୀ-ସାହିତ୍ୟର ପକ୍ଷ ସମର୍ଥନ କରି ଲେଖୁଥିଲେ । ଇନ୍ଦ୍ରଧନୁ ଉତ୍କଳ ଦୀପିକାର ପୃଷ୍ଠପୋଷକତାରେ ପ୍ରକାଶ ପାଉଥିଲା । ଏହାର ପ୍ରକାଶ ନିୟମିତ ନଥିଲା; ଯେବେ ଆବଶ୍ୟକ ହେଉଥିଲା ସେତେବେଳେ

ଏହା ପ୍ରକାଶ ପାଉଥିଲା । ପ୍ରକାଶନର ଆଦର୍ଶ ସଂକ୍ରାନ୍ତରେ ଏଥିରେ ଉଲ୍ଲେଖ ରହୁଥିଲା — "କିନ୍ତୁ ନିରୂପିତ କାଳେ ନ ଉଠିବ ନଭେ / କେଭେ ଏହି ଇନ୍ଦ୍ରଧନୁ, ନୁହେଁ ତାହା ଧର୍ମ / ଉଦ୍ଦିଷ୍ଟ-ଉପକରଣ ଯୋଗ ହେବ ଯେବେ / ବିଭାସିବ ନଭେ ତେବେ ଏହା କେବେ କେବେ /" ※ ସେହିପରି ପ୍ରକାଶ ପାଉଥିଲା ବିଜୁଳି, ବାମଣ୍ଡା ରାଜା ସାର୍ ବାସୁଦେବ ସୁଢ଼ଳ ଦେବଙ୍କର ପୃଷ୍ଠପୋଷକତାରେ । ଏହାର ସଂପାଦକ ଥିଲେ ଦାଶରଥି ରାଉତ ।

ଇନ୍ଦ୍ରଧନୁ ଓ ବିଜୁଳି ପତ୍ରିକାରେ ଦୁଇ କବି ପକ୍ଷର ଆଲୋଚନା ସମାଲୋଚନା ଏପରି ସ୍ୱରୂପ ଧାରଣ କଲା ଯେ ଏହା କ୍ରମେ ବ୍ୟକ୍ତିଗତ ଆକ୍ଷେପ ଓ ଆକ୍ରୋଶ ସ୍ତରକୁ ଖସି ଆସିଲା । ସମ୍ବାଦବାହିକା ଏମାନଙ୍କର ଗତିବିଧି ଅନୁଧ୍ୟାନ କରି ଆପଣାର ଏକ ନିରପେକ୍ଷ ମତ ଦେଇ କହିଥିଲା ଯେ, "ଭକ୍ତକବିଙ୍କ ବିପକ୍ଷମାନେ ବାବୁ ରାଧାନାଥ ରାୟଙ୍କର ପ୍ରଶଂସା ସହସ୍ରମୁଖରେ କରନ୍ତୁ ତହିଁରେ ଆମ୍ଭମାନଙ୍କର ସହାନୁଭୂତି ଅଛୁ । କାରଣ ବାବୁ ମହୋଦୟଙ୍କ ଠାରେ ଉତ୍କଳ ସାହିତ୍ୟ ଅନେକ ପ୍ରକାରେ ଋଣୀ ଅଟେ । କିନ୍ତୁ ଶତ ଶତ ବର୍ଷ ପୂର୍ବେ ମୃତ ଗୋଟିଏ ଚିର ସ୍ମରଣୀୟ କବିର ନିନ୍ଦନ ଦ୍ୱାରା ରାଧାନାଥ ବାବୁଙ୍କର ଗୌରବ କେଉଁ ପ୍ରକାରେ ବୃଦ୍ଧି ହେବ ତାହା ଆମ୍ଭମାନଙ୍କ କ୍ଷୁଦ୍ର ବୁଦ୍ଧିର ଅଗମ୍ୟ ।" †

ଦୋଷ-ଦର୍ଶନର ମନୋଭାବ ଏପରି ସାଧାରଣ ହୋଇଗଲା ଯେ, ବ୍ୟକ୍ତିଗତ ସ୍ତରରେ ରାଧାନାଥଙ୍କର ବିଭିନ୍ନ ସାରସ୍ୱତ କର୍ମକୁ ଅପର ପକ୍ଷର ଲୋକେ ସଦାବେଳେ ନିନ୍ଦାର ଆଖିନେଇ ତର୍ଜମା କରିବାକୁ ଲାଗିଲେ । କେତେକ କହିଲେ, ରାଧାନାଥ ଯେ ଉତ୍କଳପ୍ରଭାରେ ଲେଖାଲେଖି କରୁଛନ୍ତି ଏହା ମୂଳରେ ଏକ ବ୍ୟକ୍ତିଗତ ଲାଳସା ବିଦ୍ୟମାନ । ତାହା ହେଉଛି ପୁରସ୍କାର ଲାଭର ଲାଳସା । 'ଉତ୍କଳପ୍ରଭା'ର ସୃଷ୍ଟି ହୋଇଥିଲା ନୂତନ ଲେଖକ ନବସମାନଙ୍କୁ ଉତ୍ସାହିତ କରିବା ପାଇଁ । ଯେଉଁ ନବୀନ ଲେଖକଗଣ

---

※ ଇନ୍ଦ୍ରଧନୁ—୧ମ ଭାଗ / ୭ମ ସଂଖ୍ୟା—୧୮୯୨; ନଭେମ୍ବର ୨୯; ବୁଧବାର ।

† ସଂବାଦ ବାହିକା—୧୮୯୩, ପୃଷ୍ଠା ୧୩୮
( ସଂବାଦ ବାହିକାର ଏହି ଉଦ୍ଧୃତାଂଶ, ଡ଼କ୍ଟର ବଂଶୀଧର ମହାନ୍ତିଙ୍କର ସାହିତ୍ୟ ଓ ସଂସ୍କୃତି—( ୧୯୧୫ ) ଗ୍ରନ୍ଥର ୧୪୭ ପୃଷ୍ଠାରୁ ସଂଗୃହୀତ )

ପତ୍ରିକାର ଆଦର୍ଶ ଅନୁକୂଳ ଉତ୍କୃଷ୍ଟ ଲେଖା ଲେଖୁଥିଲେ ସେମାନଙ୍କୁ ପତ୍ରିକା ତରଫରୁ ପୁରସ୍କାର ଦିଆଯାଉଥିଲା । ରାଧାନାଥ, ଏଥିରେ ପ୍ରବେଶ କରିବା ଦ୍ୱାରା ଅନ୍ୟ ନବୀନ ଲେଖକମାନଙ୍କର ପୁରସ୍କାରପ୍ରାପ୍ତିର ଆଶା ବାଧା ପାଇଲା; ତେଣୁ ଏଥିପାଇଁ ମଧ୍ୟ ଦଳେ ରାଧାନାଥଙ୍କ ବିରୁଦ୍ଧରେ ଅସନ୍ତୋଷ ପ୍ରକାଶ କଲେ ।

ଇନ୍ଦ୍ରଧନୁ-ବିଜୁଳି ସଂଘର୍ଷ ଚାଲିଥାଏ; ଥରେ ରାଧାନାଥ ପୁରୀ ଜିଲ୍ଲା ସ୍କୁଲ ପରିଦର୍ଶନରେ ଯାଇଥାନ୍ତି । ସେତେବେଳେ ଗୋପବନ୍ଧୁ ଦାସ ଥା'ନ୍ତି ସେଇ ସ୍କୁଲର ଛାତ୍ର । ରାଧାନାଥ, ଛାତ୍ରମାନଙ୍କୁ ପ୍ରଶ୍ନ ପଚାରି ବୁଝିଲେ ଇନ୍ଦ୍ରଧନୁ-ବିଜୁଳି କେହି ପଢ଼ନ୍ତି କି କିମ୍ବା ଇନ୍ଦ୍ରଧନୁର କିଛି ପ୍ରବନ୍ଧ ଲେଖାଲେଖି କରନ୍ତି କି ? ଗୋପବନ୍ଧୁଙ୍କ ସମେତ ସମସ୍ତେ ପ୍ରକାଶ୍ୟରେ ତାହା ଅସ୍ୱୀକାର କଲେ । ମାତ୍ର ପରିଦର୍ଶନ ଉତ୍ତାରୁ ହେଡମାଷ୍ଟର ମହାଶୟ ଛାତ୍ରଙ୍କଠାରୁ ଗୁପ୍ତରେ ଜାଣିଲେ ଯେ, ଗୋପବନ୍ଧୁ ଇନ୍ଦ୍ରଧନୁରେ ପ୍ରବନ୍ଧ ଲେଖି ପୁଣି ମିଥ୍ୟା କହୁଛନ୍ତି । ଏଇ ମିଥ୍ୟା-କଥାର ଅପରାଧରୁ ତାଙ୍କୁ ସାନ୍ତଦନର ବୃତ୍ତି ଏବଂ ପାରଦର୍ଶିତା ପାଇଁ ପ୍ରାପ୍ୟ ପୁରସ୍କାରରୁ ବଞ୍ଚିତ କରାଯାଇଥିଲା ।

ଆତ୍ମପ୍ରତିଷ୍ଠା ଓ ସାହିତ୍ୟିକ ଖ୍ୟାତି ଅର୍ଜନ ଲାଗି ରାଧାନାଥ ଯେ କେତେ ଲାଳସୀ ଥିଲେ, ଏଇ ଘଟଣା ତାହାର ଏକ ନମୁନା ବୋଲି କୁହାଯାଏ । ଏମନ୍ତ ମନୋବୃତ୍ତି ଅନ୍ତରାଳରେ ଥିବା ରାଧାନାଥଙ୍କ ବ୍ୟକ୍ତିତ୍ୱର ଯେଉଁ ଦୁର୍ବଳ ଦିଗଟିର ସୂଚନା ମିଳୁଛି, ତାହା ପୂର୍ଣ୍ଣତଃ କବି-ସୁଲଭ । କବି, ତାଙ୍କର ମାନସ ସନ୍ତାନମାନଙ୍କ ପ୍ରତି ମମତାନ୍ଧ, ତେଣୁ ଦୁର୍ବଳ । ପ୍ରତ୍ୟେକ କବି, ଏଇ ମାନସିକତାର ଶିକାର ହୋଇଥାନ୍ତି । ରାଧାନାଥ କିଏ କେବେ ଇଚ୍ଛା କରନ୍ତେ ତାଙ୍କ ଆତ୍ମାର ଉଚ୍ଚାରଣ ଗୁଡ଼ିକ ସ୍ଥାନମାନ ଅବଜ୍ଞା ଭୋଗ କରନ୍ତୁ ! ତେଣୁ ଯେତେବେଳେ ତାଙ୍କ ସାହିତ୍ୟ-ସଂପଦ ପାଇଁ ବିଶ୍ୱଆଡ଼େ ନିଆଁ ଜଳୁଛି, ସେତେବେଳେ ସେ କାର୍ଯ୍ୟବଶତଃ ଯେଉଁଠିକି ଯାଇଛନ୍ତି ସେଠି ଏଇ ଅଗ୍ନି ସଞ୍ଚାରକମାନଙ୍କର ସନ୍ଧାନ ନେବାପାଇଁ ହୁଏତ କୌତୂହଳୀ ହୋଇ ଉଠିଛନ୍ତି । ପୁରୀ ଜିଲ୍ଲା ସ୍କୁଲର ଛାତ୍ରମାନଙ୍କୁ, ଇନ୍ଦ୍ରଧନୁ-ବିଜୁଳି ବିବାଦ ସହିତ ସେମାନଙ୍କର କିଛି ସମ୍ପର୍କ ଅଛି କି ନାହିଁ, ପଚାରି ବୁଝିବାରେ ଏଇ କବି-ସୁଲଭ କୌତୂହଳ ହିଁ କବିଙ୍କୁ ତତ୍ପର କରିଛି । ଏଥିରେ କାହାପ୍ରତି ଆକ୍ରୋଶ ବା ବିଦ୍ୱେଷ ଭାବନା ସେ ପୂର୍ବରୁ ପୋଷଣ କରି, କିଛି କାର୍ଯ୍ୟ କରି ନାହାନ୍ତି । ଗୋପବନ୍ଧୁଙ୍କ ପ୍ରତି ଯେଉଁ ପଦକ୍ଷେପ ନିଆଗଲା, ସେଥିରେ ରାଧାନାଥଙ୍କ ଅପେକ୍ଷା ହେଡମାଷ୍ଟର ମହାଶୟ ବିଶେଷ ଭାବେ ଜଡ଼ିତ । ରାଧାନାଥଙ୍କୁ ସନ୍ତୁଷ୍ଟ କରିବାଲାଗି ଜଣେ ଅଧଃସ୍ତନ କର୍ମଚାରୀର ତୋଷାମୋଦୀ ଆଚରଣ ହିଁ

ଗୋପବନ୍ଧୁଙ୍କର ଗ୍ରନ୍ଥ ବୃତ୍ତି ଛେଦନ ପାଇଁ ଦାୟୀ । ରାଧାନାଥଙ୍କର ବ୍ୟକ୍ତିତ୍ୱ ନୁହେଁ ବରଂ ରାଧାନାଥଙ୍କର ବ୍ୟକ୍ତିତ୍ୱକୁ ଉପହସିତ କରିବା ଲାଗି ବିପକ୍ଷ-ବାଦୀମାନେ,ଏଇ ଘଟଣାକୁ ଆଳକରି ରାଧାନାଥଙ୍କ ଉପରେ ଅଭିଯୋଗ ଲଦି ଦେଇଛନ୍ତି ।

ସୁତରାଂ କବି-କଳି ସଂପର୍କରେ ମିଳୁଥିବା ଘଟଣାପଞ୍ଜିକୁ ଯଦି ନିରପେକ୍ଷ ଦୃଷ୍ଟିକୋଣରୁ ତର୍ଜମା କରାଯାଏ, ତାହାହେଲେ ରାଧାନାଥଙ୍କର ବ୍ୟକ୍ତିଗତ ଭୂମିକା ଏଥିରେ ଅଂଶୀଦାର ହୋଇଥିବା ଯେତେ ଜଣା ପଡ଼େ ତାଠାରୁ ଅଧିକ ଜଣାପଡ଼େ 'ରୁଚି-ସଂଘର୍ଷର' ଧାବ-ଭାବ ।

ସାହିତ୍ୟ-ଭୂମିରେ ପ୍ରାଚୀନ ଓ ନବୀନ ରୁଚି ସଂଘର୍ଷ ହେଉଛି ଏଇ କବି-କଳିର ମୁଖ୍ୟ କାରଣ । ସେ କାଳର ଶିକ୍ଷିତ ଯୁବକମାନେ ପ୍ରାଚୀନ କାବ୍ୟ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିଥିଲେ । ପ୍ରାଚୀନକାବ୍ୟ ଅଶ୍ଳୀଳ ବୋଲି ବିବେଚନା କରି ପାଠ୍ୟ ଜଗତରୁ ତାହାକୁ ବାଦ ଦେବାପାଇଁ ସେମାନେ ଉଦ୍ୟମ କରିବା ଫଳରେ ପ୍ରାଚୀନ ସାହିତ୍ୟ ପ୍ରେମୀମାନଂକ ମନରେ ବିକ୍ଷୋଭ ଦେଖାଦେଲା । ସଭାସମିତିମାନଙ୍କରେ ଏହି ବିଷୟରେ ଆଲୋଚନା-ପ୍ରତି ଆଲୋଚନା ଆରମ୍ଭ ହୋଇଗଲା । ସେଠାରୁ ଉତ୍ତେଜିତ ହୋଇ ଫେରୁଥିବା ସାହିତ୍ୟ-ପ୍ରେମୀମାନେ ସେମାନଙ୍କର ଉତ୍ତେଜନାର ଉଦ୍‌ଗୀରଣ ପାଇଁ ଲେଖନୀ ପ୍ରସ୍ତୁତ କରିବସିଲେ । ପତ୍ରପତ୍ରିକା ଓ ଅନୁଷ୍ଠାନମାନଙ୍କରେ ଏଇ ରୁଚି-ସଂଘର୍ଷର ପ୍ରତିଫଳନ ଦେଖାଦେଲା ।

ଉତ୍କଳ ସଭା ( ୧୮୬୭ )ର ଏକ ଆସରରେ ୧୮୭୮ ମସିହାର ଏକ ଅଧିବେଶନ ) ପ୍ରାଚୀନ ଓ ନବୀନ ସାହିତ୍ୟ ସଂପର୍କରେ ଆଲୋଚନା ହେଉଥାଏ । ଏଥିରେ ସଭାପତି ଥାନ୍ତି କବି ରାଧାନାଥ ଏବଂ ବକ୍ତା ଥାନ୍ତି ପ୍ୟାରୀମୋହନ ଆଚାର୍ଯ୍ୟ । ବକ୍ତା ମହାଶୟ ଆଲୋଚନା ପ୍ରସଙ୍ଗରେ ପ୍ରାଚୀନ ଓଡ଼ିଆ ସାହିତ୍ୟ ଅଶ୍ଳୀଳତା ପୂର୍ଣ୍ଣ ବୋଲି ପ୍ରତିପାଦନ କରିବାରୁ ସଭାରୁ ପ୍ରତିବାଦର ସ୍ୱର ଉତ୍ତୋଳିତ ହେଲା । ଚତୁର୍ଭୁଜ ପଟ୍ଟନାୟକ, ବକ୍ତାଙ୍କର ଯୁକ୍ତି ବିରୁଦ୍ଧରେ ଆଲୋଚନା କରିଥିଲେ । ଏଇ ସଭାର ଆଲୋଚନା ସମ୍ପର୍କରେ ଟିପ୍‌ପଣୀ ଦେଇ ଉତ୍କଳ ଦୀପିକାର ସଂପାଦକ ଉଲ୍ଲେଖ କରିଥିଲେ ଯେ, "ଆମ୍ଭମାନଙ୍କର ବିବେଚନାରେ ପଟ୍ଟନାୟକ ମହାଶୟ ନିରପେକ୍ଷ ରୂପେ ପ୍ରାଚୀନ କବିତାର ବିଚାର କରିଅଛନ୍ତି ଏବଂ ଆମ୍ଭେମାନେ ସଭ୍ୟ ଓ ଶିକ୍ଷିତ ସଂପ୍ରଦାୟଙ୍କୁ ଅନୁରୋଧ କରୁଅଛୁଁ

ଯେ ସେମାନେ ଶ୍ରମ ସ୍ୱୀକାର ପୂର୍ବକ ପ୍ରାଚୀନ ଭାବ୍ୟମାନ ପାଠକରି ତହିଁର ଦୋଷଭାଗ ପରିତ୍ୟାଗ ପୂର୍ବକ ଗୁଣଭାଗକୁ ଗ୍ରହଣ କରନ୍ତୁ ।" *

ଏଥିରୁ ମନେ ହେଉଛି 'ଅଶ୍ଳୀଳତା'ର ବିବେଚନା ଯେଉଁ ଦ୍ୱନ୍ଦ୍ୱ ଏଇ ଯୁଗ ସଙ୍ଘର୍ଷର ସୃଷ୍ଟିମୂଳରେ ଏକ ପ୍ରଧାନ କାରଣହୋଇ ଠିଆ ହୋଇଥିଲା । ତାହାକୁ ନିସ୍ତ୍ୟମକ କରି ପ୍ରାଚୀନ ଓ ନବୀନ ସାହିତ୍ୟର ମୂଲ୍ୟାୟନ ପାଇଁ ସମସ୍ତେ ଅଣ୍ଟାଭିଡ଼ି ପ୍ରସ୍ତୁତ ହୋଇ ଯାଉଥିଲେ । ତହିଁରୁ କବି-କଳିର ସମର ଝଙ୍କା ଅପ୍ରୋଜନ ଖେଳିଲା, ବିଭିନ୍ନ ସ୍ତରରେ ଏହାର ଗୁଞ୍ଜରଣ ଶୁଣାଗଲା । ସମ୍ବାଦ ବାହିକାର ଏକ ବିବରଣୀ କହେ ଯେ, "ଯେଉଁ ବିବାଦର ଫଳ ଆଜ ଚୂଡ଼ାନ୍ତ ସୀମାରେ ଦଣ୍ଡାୟମାନ ସେହି ବିବାଦର ବୀଜ (ପାଠକମାନେ ବୋଧ ହୁଏଇ ବିଶ୍ୱାସ କରିବେ ନାହିଁ) ଅଶ୍ଳୀଳତା ଶବ୍ଦ । ପାଠକମାନଙ୍କର ସ୍ମରଣ ଥାଇପାରେ ଯେ, ଯେତେବେଳେ ବାବୁ ପ୍ୟାରୀମୋହନ ସେନ, ଏ ଜିଲ୍ଲାରେ (ବାଲେଶ୍ୱର ଜିଲ୍ଲାରେ) ଡେପୁଟି ଇନ୍‌ସପେକ୍ଟର ଥିଲେ, ସେହି ସମୟରେ ପ୍ୟାରୀବାବୁ, ବାବୁ ବେଣୁରାମ ନନ୍ଦୀ ହେଡ଼ମାଷ୍ଟର ଓ ବାବୁ ଗୋବିନ୍ଦଚନ୍ଦ୍ର, ପଟ୍ଟନାୟକ ପାଠଶାଳାର ପିଲମାନଙ୍କୁ ପାରିତୋଷିକ ବିତରଣ କରିବାରେ କେତେଖଣ୍ଡ ବିଚିତ୍ର ରାମାୟଣ ପୁସ୍ତକ ପୁରସ୍କାର ଦେଇଥିଲେ । ସେହି ବିଚିତ୍ର ରାମାୟଣ ପୁରସ୍କାରଦାତା ମହୋଦୟମାନଙ୍କୁ ଜବତ କରିବା କାରଣ ଉକ୍ତ ବହି ଅଶ୍ଳୀଳ, ଅତଏବ ବାଳକ-ମାନଙ୍କର ଅପାଠ୍ୟ ବୋଲି ପ୍ରମାଣ କରିବା କାରଣ ତାହାର କେତେକ ଅଂଶ ଇଂରାଜିରେ ଅନୁବାଦିତ ହୋଇ ଶିକ୍ଷା ବିଭାଗର ଡ଼ାଇରେକ୍ଟର ଓ ବଙ୍ଗଳା ଗଭର୍ଣ୍ଣମେଣ୍ଟଙ୍କ ଠାକୁ ପଠାଗଲା । ତାହାର ଫଳ ସ୍ୱରୂପ ଉପରୋକ୍ତ ମହୋଦୟମାନେ ବିଭାଗୀୟ ଦଣ୍ଡ ପାଇବାରୁ ସେମାନେ ଏଠାକାର କେତେକ ଭଦ୍ରଲୋକ ଏବଂ ପଣ୍ଡିତମାନଙ୍କ ମତନେଇ ଗଭର୍ଣ୍ଣମେଣ୍ଟଙ୍କ ନିକଟକୁ ପଠାଇବାରେ ଏବଂ ମହାମତି ବୀମସ୍ ସାହେବ ସେମାନଙ୍କ ସପକ୍ଷରେ ଅର୍ଥାତ୍ ବିଚିତ୍ର ରାମାୟଣ ଅଶ୍ଳୀଳ ପୁସ୍ତକ ନଥିବାର ମତ ଦେବାରେ ରକ୍ଷା ପାଇଲେ ଏବଂ ସେମାନଙ୍କ ବିରୁଦ୍ଧରେ ଯେଉଁ ବିଭାଗୀୟ ହୁକୁମ ହୋଇଥିଲା ତାହା ରହିତ କରାଗଲା । ଅତଏବ ଏହି ଚିରସ୍ମରଣୀୟ 'ଅଶ୍ଳୀଳତା' ଶବ୍ଦ ଏହି ଚିରସ୍ଥାୟୀ ବିବାଦର ସୂତ୍ରପାତ କରିଗଲେ । †

---

* ସୁଧାକର ପଟ୍ଟନାୟକ—ସମ୍ବାଦ ପତ୍ରରୁ ଓଡ଼ିଶାର କଥା (୧୯୭୨) ପୃଷ୍ଠା ୩୬୪, କଟକ

† ଡକ୍ଟର ବଂଶୀଧର ମହାନ୍ତି—ସାହିତ୍ୟ ଓ ସଂସ୍କୃତି (୧୯୬୫) ପୃଷ୍ଠା ୧୩୮-୧୩୯, କଟକ ।

ବାସ୍ତବକ ଟିକିଏ ପ୍ରଶସ୍ତ ଦୃଷ୍ଟିରୁ ଦେଖିଲେ ବୁଝିହେବ ଯେ ଏଇ କବି-କଳି କ୍ରମେ ଚରିଷ୍ଣୁସ୍ଥାୟୀ ବିବାଦରେ ପରିଣତ ହୋଇଗଲା । ଫକୀରମୋହନ ତାଙ୍କର 'ଛମାଣ ଆଠଗୁଣ୍ଠ' ଉପନ୍ୟାସ ଲେଖିଲାବେଳେ (୧୮୯୮ ରଚନା କାଳ—(୧୯୦୨ ପ୍ରକାଶ କାଳ ) ମଧ୍ୟ ବାୟୁମଣ୍ଡଳରୁ 'ଅଶ୍ଳୀଳତା'ର ତର୍କ ବିତର୍କର ଗୁଞ୍ଜରଣ ଶୁଣି ପାଉଥିଲେ । ଏହାର ପ୍ରଭାବ ତାଙ୍କର ଚିନ୍ତାଭୂମିକୁ ଏପରି ସ୍ପର୍ଶ କରିଥିଲା ଯେ, ସେ ଚମ୍ପାର ରୂପ ବର୍ଣ୍ଣନାର ଧାରା ବିଶ୍ଳେଷଣ କରିବା ପ୍ରସଙ୍ଗରେ କୁରୁଚି ଓ ସୁରୁଚି-ମୂଳକ ଶୈଳୀରି କବିତା ରଚନା ଯୋଗେ ଅପଣାର ଅଭିମତ ପ୍ରକାଶ କରିପକାଇଥିଲେ । କୁରୁଚିପୂର୍ଣ୍ଣ ନାୟିକାରୂପ ବିନ୍ୟାସ ଶୈଳୀର ହେତୁ-ମୂଳ ବା ହେତୁହୀନ ଉଦ୍ଭାବିତ ପରିଣତି ତାଙ୍କୁ ଆତଙ୍କିତ କରି ଦେଇଥିଲା । ତାଙ୍କ ଭିତରେ ଏପରି ଆଲୋଡ଼ନ ସୃଷ୍ଟି ହୋଇଥିଲା ଯେ ସେ ନିରପେକ୍ଷ ରହି ଏହାର ମୂଲ୍ୟାମୂଲ୍ୟ ବିଗ୍ଭରିପାଇଁ ଇଚ୍ଛା କରିଥିଲେ; ଯେପରି ଚାହିଁଥିଲେ ମଧୁସୂଦନ । ତଥାପି କବି-କଳିର ପ୍ରଭାବରୁ ଆପଣାକୁ ସେ ମୁକ୍ତ କରିପାରି ନଥିଲେ । ପ୍ରସଙ୍ଗ କ୍ରମେ ଫକୀରମୋହନ ବ୍ୟଙ୍ଗରେ ଭଞ୍ଜ-ରାଧାନାଥ କାବ୍ୟ-ବିବାଦ ସଂକ୍ରାନ୍ତରେ କିଂଚିତ ସୂଚନା ଦେଇଥିବା ତାଙ୍କ ରଚିତ ଛମାଣ ଆଠଗୁଣ୍ଠ ଉପନ୍ୟାସରୁ ଜଣାଯାଏ । ※

---

※ ସେ ଦିନ ଉପେନ୍ଦ୍ର ଭଞ୍ଜଙ୍କ ଦୁର୍ଦ୍ଦଶା ଦେଖି ଆମ୍ଭେମାନେ ଏହି ଶିକ୍ଷା ପାଇଅଛୁଁ । ବାପା ମା ପୁଣ୍ୟବଳରୁ ସେ ବିଚରା ଖସି ଯାଇଅଛୁ; ନୋହିଲେ ଇସ୍ତକ ମହାପାତ୍ର ଠାରୁ ମହାରାଜ ଯାଏ ଯେପରି ପିଣ୍ଡି ଧରିଥିଲେ ତାହା କପାଳରେ ଯେ କଣ ଘଟିଥାନ୍ତା, ଠାକୁରଙ୍କୁ ଜଣା । ଏପରି ମହାରଥୀର ତ ଏହି ଦଶା, ଆମ୍ଭେମାନେ ବା କେତେ କଡ଼ାରେ ଗଣ୍ଡାଏ ! 'ଗୁରୁ ବିପ୍ର ପ୍ରସାଦନେ' ଅମ୍ଭେମାନେ ସୁରୁଚି କବିତା କିଛି-କିଛି ରଚନା କରିବାକୁ କ୍ଷମ । ଆପଣ ମନେ କରିବେ, ଏଇଟା ମିଛୁଆ, କିଛି ଜାଣେ ନାହିଁ । ଅଚ୍ଛା ନମୁନା ଦେଖନ୍ତୁ :—

ଅର୍ଦ୍ଧବକ୍ଷ ଉଲଙ୍ଗିନୀ, ମୃଦୁକ ହାସିନୀ,
ବସ୍ତ୍ରଶୂନ୍ୟା, ଚକ୍ରହସ୍ତା, ତୁରଙ୍ଗ ଗାମିନୀ,
ମାର୍ଜାର ନୟନା, ତାମ୍ରକେଶା, ଅଣ୍ଡାଭିତ୍ତା,
ସ୍ୱାଧୀନ ଭର୍ତ୍ତୃକା, ପାଞ୍ଚଜଣ ଆଗେ ଛିଡ଼ା,
ପଚ୍ଛପୁଚ୍ଛକୁ ଧରି ନଚିଛି ସୁନ୍ଦରୀ,
ଆହା ଆହା ଅପରୂପ ସ୍ୱର୍ଗ ବିଦ୍ୟାଧରୀ ।
ଆଉ କୁରୁଚିପୂର୍ଣ୍ଣ ଉପେନ୍ଦ୍ର ଭଞ୍ଜ ଶୁଣିବେ ?

ଓଲଟ କଦଳୀ ପ୍ରାୟ ଜାନୁ / କଟମ୍ବ ଯୁଗଳ କରି ସାନୁ ।

ଆଉ ଲେଖିବାକୁ ସାହାସ ଅଣ୍ଟିଲା ନାହିଁ । କେଜାଣି ବିଜୁଳି ପୁଣି ଚମକି ଉଠିବେ । (ଫକୀରମୋହନ ସେନାପତି—ଛମାଣଆଠଗୁଣ୍ଠ—ଷଷ୍ଠପରିଚ୍ଛେଦ

ଊନବିଂଶ ଶତାବ୍ଦୀରେ ଭକ୍ତକବିଙ୍କ ଭାବନାରେ ରାଧାନାଥ ଯେପରି ଏକ ବିବଦମାନ କବିଶକ୍ତିରୂପେ ବିବେଚିତ ହୋଇଥିଲେ, ସେହିପରି ବିଂଶଶତାବ୍ଦୀରେ ନୀଳକଣ୍ଠଙ୍କର କାବ୍ୟ-ବୋଧରେ ରାଧାନାଥ ହେଲେ ଏକ ସମାଲୋଚ୍ୟ ବ୍ୟକ୍ତିତ୍ୱ। ନୀଳକଣ୍ଠଙ୍କ କାବ୍ୟର କେତେକ ଛନ୍ଦରେ ରାଧାନାଥଙ୍କ ପ୍ରତି ତାଙ୍କର ବିରାଗ-ଭାବନାର ସ୍ୱର ଉଚ୍ଚାରିତ। †

ଏହି କବି-କଳର ଉଦ୍ଭବ ଓ ପ୍ରସାରଣ ପଛରେ ଭାବପ୍ରବଣତାର ଏକ ପ୍ରଚଣ୍ଡ ବିସ୍ତାର ଯେ ଥିଲା ତାହା ସମସ୍ତଙ୍କୁ ଅଗ୍ନିଶର୍ମା କରି ତୋଳିଥିଲା। କବିଙ୍କର କାବ୍ୟତ୍ୱ ଅନ୍ୱେଷଣ ଏବଂ ତାହାର ମୂଲ୍ୟାମୂଲ୍ୟ ନିରୂପଣ ପ୍ରତି ନିରପେକ୍ଷ ବିଗ୍ଧର ପ୍ରୟୋଗ କରିବାର ଉଦ୍ୟମ ପ୍ରାପ୍ତ ହୋଇ ନଥିଲା। ସମାଲୋଚକମାନେ ବ୍ୟକ୍ତିଗତ ଆକ୍ଷେପ ଭିତରେ ମଜ୍ଜିଯିବା ଫଳରେ ଅଧର୍ମିକାକୁ ବଡ଼କରି ମାନିଲେ ସିନା ନିର୍ମଳ କବି ମନଃଟିକୁ ବୁଝିଲେ ନାହିଁ। ରାଧାନାଥଙ୍କୁ ପ୍ରାଚୀନ ବିରୋଧୀ ବୋଲି ଘନ ଘନ ଅକ୍ଷେପ କରାଗଲା। ରାଧାନାଥ ଯଦି ପ୍ରାଚୀନ ସାହିତ୍ୟର ବିରୋଧୀ ହୋଇଥା'ନ୍ତେ, ସେ କାହିଁକି ଭୂଦେବ ବାବୁଙ୍କୁ ଭକ୍ତଙ୍କର କବିତା ଆବୃତ୍ତିକରି ଶୁଣାଇଥା'ନ୍ତେ କିମ୍ବା କାହିଁକିବା ବଙ୍ଗଳା କବିତାବଳୀରେ କୋଟିବ୍ରହ୍ମାଣ୍ଡ ସୁନ୍ଦରୀ, ଉପେନ୍ଦ୍ର ଭଞ୍ଜ, ଦୀନକୃଷ୍ଣ ଦାସ, କବି ଅଭିମନ୍ୟୁ, ଇତ୍ୟାଦିଙ୍କ ବିଷୟରେ ପ୍ରଶସ୍ତିମୂଳକ କବିତା ଲେଖିଥା'ନ୍ତେ। ପୁଣି ଉତ୍କଳ ସାହିତ୍ୟର ଉନ୍ନତି' ନାମକ ତାଙ୍କର ଏକ ସାହିତ୍ୟିକ ଅଭିଭାଷଣରେ ସେ ପ୍ରାଚୀନ ସାହିତ୍ୟର ଚର୍ଚ୍ଚା ଓ ସଂରକ୍ଷଣ ପାଇଁ କାହିଁକି ଅବା ପ୍ରସ୍ତାବ ଦେଇଥା'ନ୍ତେ! ଏକଥା ବିଗ୍ଧରକୁ ନ ନେଇ ସମାଲୋଚକମାନେ ତାଙ୍କ ପ୍ରତିଭା-ସଂହାର ପାଇଁ ଉଦ୍ୟମ କଲେ। ରାଧାନାଥ ଯେତେବେଳେ ଓଡ଼ିଆ ନବସମ୍ବାଦରେ ପ୍ରକାଶିତ (୧୪-୩-୧୮୯୪) ଗୋଟିଏ ପତ୍ରରେ ଆପଣା ତରଫରୁ, ପ୍ରାଚୀନ ସାହିତ୍ୟ ପ୍ରତି ତାଙ୍କର ଅନୁରାଗ ଥିବା ଜଣାଇଲେ, ଯେତେବେଳେ ଏଇ କବି-କଳି ଶାନ୍ତ ପଡ଼ିଲା; ବିକୁଳି ୧୮୯୪ରେ ବନ୍ଦ ହୋଇଗଲା; କବି-କଳିର ମୁଖ୍ୟ ସଂଯୋଜକ ଲାଲ ରାମନାରାୟଣ ରାୟଙ୍କର ୧୮୯୬ ମସିହାରେ ମଧ୍ୟ ମୃତ୍ୟୁ ଘଟିଲା।

---

† ଘର ଗ୍ରୁଡ଼ କିମ୍ବା ଯିବେ ସେ ଗ୍ରାର ବାଳା ନନ୍ଦିକା'
ସହକାରଦ୍ରୁମ ଗହଳେଭେଦ କ୍ଷୀଣ ଚନ୍ଦ୍ରିକା;
କଉସୁଲ୍ଲ ଗାଙ୍ଗ ଧଉଳ ଏକ ନୟନେ ନାଚେ,
କବିଂକ ସୁମରି ବିରାଗେ ମୁଖ ଫେରାଅ ପଛେ।
(ନୀଳକଣ୍ଠ ଦାସ—କୋଣାର୍କେ—ଶ୍ଳୋକ ୧୫ / ୩୩୯ ପଙ୍କ୍ତି)

ତେବେ ଏଥିରୁ ଏହା ସ୍ପଷ୍ଟ ନୁହେଁ କି କବି-କଳିର ଦୀର୍ଘ ଘଟଣା ଅନ୍ତରାଳରେ ଏକ ସୁସ୍ଥ ସାରସ୍ୱତ ସମାଲୋଚନାର ଆଭିମୁଖ୍ୟ ନଥିଲା; ଥିଲା ସ୍ୱେଚ୍ଛାଚାରର ଓ ଭାବ ପ୍ରବଣତାର ଅଭିନୟ । କବିମନ ବା କାବ୍ୟ-କଳାର ବିଶଦ-ବିଶ୍ଳେଷଣ ପ୍ରତି ଧ୍ୟାନ ଦିଆ ନ ଯାଇ ବ୍ୟକ୍ତିଗତ ଦୋଷଦର୍ଶନର ଉଦ୍ୟମ ହିଁ ଚାଲିଥିଲା । ଏହା ଆମର ସାହିତ୍ୟ ସମାଲୋଚନା କ୍ଷେତ୍ରକୁ ପ୍ରଶସ୍ତ କରିନାହିଁ କିଂବା ଭକ୍ତ ଓ ରାଧାନାଥଙ୍କର କବି ପ୍ରତିଭାକୁ ଯଥୋଚିତ ମୂଲ୍ୟ ଦେଇନାହିଁ । ସ୍ରଷ୍ଟା ହିସାବରେ ଭକ୍ତ ଓ ରାଧାନାଥଙ୍କର ସାରସ୍ୱତ ଭୂମିକାକୁ ନିଷ୍ଠାପରଭାବେ ମୂଲ୍ୟାଂକିତ କରିବାଲାଗି ଯେଉଁ ମନନଶୀଳତାର ପ୍ରୟୋଜନ, ତାହା ଏକାଳର ସମାଲୋଚକମାନଙ୍କର ଲେଖାରେ ପ୍ରତିଫଳିତ ହୋଇନାହିଁ, ଦୁଇ କବିଙ୍କର ଆତ୍ମାର ଉଚ୍ଚାରଣ ଓ ଉଚ୍ଛ୍ୱାସର ସାର-ତରଙ୍ଗକୁ ଏମାନେ ସର୍ଜନଶୀଳ ସମାଲୋଚକର ଜିଜ୍ଞାସା ନେଇ ଉପଲବ୍ଧି କରିନାହାନ୍ତି ରାଧାନାଥ । ସାହିତ୍ୟର ଅନ୍ତର୍ଭୂମି କିମ୍ବା ଭକ୍ତ—ସାହିତ୍ୟର ବିଭବକୁ ଉଭୟ ପକ୍ଷର ଆଲୋଚକମାନେ ପ୍ରାଣଦେଇ ଅନୁଭବ କରିଥିବା ମଧ୍ୟ ଏଥିରୁ ସୂଚିତ ହୋଇନାହିଁ । ତେଣୁ କୁହାଯାଇପାରେ, ଏଇ ଆଲୋଚନା ଓ ପ୍ରତି ଆଲୋଚନା ଯଥାର୍ଥତଃ କବି-କଳିର ସ୍ୱରୂପ ଯେନ ଚିହ୍ନିତ ସାରସ୍ୱତ ସମୀକ୍ଷାର ଗୌରବରେ ଭୂଷିତ ନୁହେଁ ।



# ଶିକ୍ଷକ ଓ ପ୍ରଶାସକ ରାଧାନାଥ

ରାଧାନାଥଙ୍କର ଶିକ୍ଷକ (୧୮୬୪-୧୮୭୨) ଏବଂ ପ୍ରଶାସକ ଜୀବନ (୧୮୭୨-୧୯୦୩)ର ପ୍ରାଣବାନ ଗତିଧାରାରେ ଯେଉଁ ଅମ୍ଲାନ କୀର୍ତ୍ତିରାଜିର ମୁକ୍ତପ୍ରକାଶ ଘଟିଥିଲା, ତାହା ହେଉଛି ତାଙ୍କର ସାହିତ୍ୟ। ଶିକ୍ଷକ ଓ ଶିକ୍ଷା ପ୍ରଶାସକ ରାଧାନାଥଙ୍କର ପ୍ରତିଭାର ସ୍ଫଟିକ ପ୍ରତିଫଳନ ତାଙ୍କ ରଚିତ ପାଠ୍ୟ-ପୁସ୍ତକରେ ଉତ୍କୀର୍ଣ୍ଣ।

ସେଗୁଡ଼ିକର ଭାବ-ଭାଷା ଲକ୍ଷ୍ୟକଲେ ଜଣାଯାଏ ଯେ, ଜଣେ ଅନୁରକ୍ତ ଶିକ୍ଷକର ଚିନ୍ତା ଓ ଲେଖନୀ ଶକ୍ତି ନୁଏତ ସୃଷ୍ଟି କରିପାରେ ଏପରି ବିବିଧ ବିଷୟକ ପାଠ୍ୟ-ଗ୍ରନ୍ଥ। ରାଧାନାଥ, କବି—ସାହିତ୍ୟର ପୂଜାରୀ। ମାତ୍ର ତାଙ୍କର ପ୍ରଜ୍ଞା କେବଳ ସାହିତ୍ୟର ପରିବଳୟ ଭିତରେ ସୀମିତ ହୋଇ ରହିନାହିଁ। ସାହିତ୍ୟ ସହିତ ଗଣିତ, ଭୂଗୋଳ, ପରିମିତି; ବ୍ୟାକରଣ ଇତ୍ୟାଦି ବିଭିନ୍ନ ଜ୍ଞାନଦିଗନ୍ତକୁ ଏହା ସ୍ପର୍ଶ କରିଛି। ଜଣେ ଗ୍ରନ୍ଥ ବିଳାସୀ ଶିକ୍ଷକ ହିସାବରେ ଅଧ୍ୟାପନା କାଳରେ ସେ ଯେଉଁଠି କିଛି ଅଭାବର ଅନୁଭୂତି ଲାଭ କରିଛନ୍ତି, ସେଠି ତାହାର ପୂରଣପାଇଁ ଚେଷ୍ଟା କରିଛନ୍ତି କିମ୍ବା ଅନ୍ୟ କାହାରି ଦ୍ୱାରା ତାହା କରେଇ ନେଇଛନ୍ତି। ଏଇ ଉଦ୍ୟମର ଫଳଶ୍ରୁତି ହେଉଛି ତାଙ୍କର କେତେକଖଣ୍ଡ ପାଠ୍ୟ-ପୁସ୍ତକ (୫୬-୫୭ ପୃଷ୍ଠା ଦ୍ରଷ୍ଟବ୍ୟ)।

ନିଜେ ପଢ଼ିବା ଓ ପଢ଼େଇବା ଥିଲା ରାଧାନାଥଙ୍କ ଶିକ୍ଷକ ଜୀବନର ଆଦର୍ଶ କାରଣ, ସେ ବୁଝିଥିଲେ ଯେ ପୂର୍ବ-ପ୍ରସ୍ତୁତି ହେଉଛି ଜଣେ ସଫଳ ଶିକ୍ଷକର କାଉଁରିକାଠି। ଏହାକୁ ଠିକଣା ସ୍ଥିତିରେ ଛୁଆଁଇ ଦେଲେ ସମସ୍ତଙ୍କ ମନରେ ଯାଦୁକରୀ ମାୟାର ତରଙ୍ଗ ଆପଣାଛାଏଁ ଖେଳିଯାଏ; ସମସ୍ତେ ମନ୍ତ୍ରମୁଗ୍ଧବତ୍ ତାହାର ଚମତ୍କାରିତା ଉପଲବ୍ଧି କରନ୍ତି। ରାଧାନାଥ ଥିଲେ ଏଇ ଶ୍ରେଣୀର ଜଣେ ଯାଦୁକରୀ ଶିକ୍ଷକ। ସ୍କୁଲକୁ ଯିବା ପୂର୍ବରୁ ସେଦିନର ପାଠ୍ୟ-ବସ୍ତୁ

ବାବଦରେ ସେ ବିଶଦ ଭାବେ ପ୍ରସ୍ତୁତ ହୋଇ ଯାଉଥିଲେ । କେଉଁ ଦିଗରୁ ବିଷୟଟିକୁ ଚର୍ଚ୍ଚା କରାଯାଇପାରେ ତାହାର ରୂପରେଖ ସ୍ଥିର କରି ସେ ପାଠ୍ୟ-ବିଷୟରେ ପ୍ରବେଶ କରୁଥିଲେ ।

ସେ କାଳର ଛାତ୍ରମାନଙ୍କ ଭିତରୁ ଅନେକଙ୍କର ଧାରଣା ଥିଲା ଯେ ବଙ୍ଗାଳୀ କିମ୍ବା ଗୋରା ଶିକ୍ଷକମାନେ ଖୁବ୍ ପାରଦର୍ଶୀ; ସେମାନଙ୍କ ତୁଳନାରେ ଅନ୍ୟ ଭୂମିର ଶିକ୍ଷକମାନେ ଖୁବ୍ ଦୁର୍ବଳ । ପୁରୀଜିଲ୍ଲା ସ୍କୁଲରୁ ରାଧାନାଥ ଯେତେବେଳେ ବାଙ୍କୁଡ଼ା ସ୍କୁଲକୁ ବଦଳି ହେଲେ (ଜାନୁଆରୀ—୧୮୭ ) ସେତେବେଳେ ବାଙ୍କୁଡ଼ା ସ୍କୁଲର ଛାତ୍ରମାନେ ତାଙ୍କ ଆସିବା କଥା ଶୁଣି ନାକଟେକିଲେ । ସେମାନଙ୍କର ଆଶଙ୍କା ହେଲା, ଜଣେ ଓଡ଼ିଆ ମାଷ୍ଟରଙ୍କର ପାଠପଢ଼ା ତାଙ୍କ ଲାଗି ସନ୍ତୋଷ ଜନକ ହେବନାହିଁ । ଏପରି ଆଶଙ୍କାର ଇଂଗିତ ପାଇ ସେଇ ସ୍କୁଲର ହେଡମାଷ୍ଟର ଶ୍ରୀ କୃଷ୍ଣବିହାରୀ ମୁଖାର୍ଜୀ ମହାଶୟ; ଛାତ୍ରମାନଙ୍କୁ ରାଧାନାଥଙ୍କର ପାଣ୍ଡିତ୍ୟ, ବୋଧଶକ୍ତି ସଂକ୍ରାନ୍ତରେ କେତେକ ପ୍ରଶଂସାପୂର୍ଣ୍ଣ ମନ୍ତବ୍ୟ ଶୁଣାଇଲା ପରେ ସେମାନେ ଆଶ୍ୱସ୍ତ ହେଲେ ସିନା; ମାତ୍ର ସେମାନଙ୍କର ମନ ପୂର୍ଣ୍ଣଭାବେ ସନ୍ଦେହ ମୁକ୍ତ ହୋଇ ନ ଥିଲା । କୃଷ୍ଣବିହାରୀ ବାବୁ ପୁରୀଜିଲ୍ଲା ସ୍କୁଲର ହେଡମାଷ୍ଟର ଥିଲାବେଳେ, ରାଧାନାଥ ତାଙ୍କ ଅଧୀନରେ ଶିକ୍ଷକତା କରୁଥିଲେ । ସେଇ ସୂତ୍ରରୁ ସେ, ରାଧାନାଥଙ୍କୁ ଜାଣିବାର ସୁଯୋଗ ପାଇଥିଲେ । ସେଠାରେ ଯେତେବେଳେ ରାଧାନାଥଙ୍କ ଲାଗି ସାମାନ୍ୟ ଗୁଞ୍ଜରଣ ଛାତ୍ରମହଲରୁ ସେ ଶୁଣିବାକୁ ପାଇଲେ ସେତେବେଳେ ସେ ରାଧାନାଥଙ୍କର ଯଥୋଚିତ ପରିଚୟ ଦେବାକୁ ଇଚ୍ଛା କରିଥିଲେ ।

ରାଧାନାଥ ମାତ୍ର ଛଅମାସ ଲାଗି ବାଙ୍କୁଡ଼ା ସ୍କୁଲରେ ଶିକ୍ଷକତା କରନ୍ତି । ଏଇ ଅଳ୍ପକାଳର ରହଣି ଭିତରେ ରାଧାନାଥଙ୍କର ପଣ୍ଡିତ ମନ ଓ ସରଳ ସ୍ୱଭାବ ଛାତ୍ରମାନଙ୍କୁ ଏପରି ଆପଣାର କରିପାରିଥିଲା ଯେ ସେମାନେ ରାଧାନାଥଙ୍କର ବଦଳି ବନ୍ଦ କରିଦେବା ପାଇଁ ହେଡ଼ମାଷ୍ଟରଙ୍କୁ ଅନୁରୋଧ କରିଥିଲେ । ରାଧାନାଥ, ସେତେବେଳେ ଡେପୁଟି ସ୍କୁଲ ଇନ୍ସପେକ୍ଟର ହୋଇ ବାଲେଶ୍ୱର ଆସୁଥାନ୍ତି । ପଦୋନ୍ନତିର କଥା—ବାଧାଦେଲେ ଶିକ୍ଷକଙ୍କ ପକ୍ଷରେ କ୍ଷତିକାରକ ହେବ । ତେଣୁ ଛାତ୍ରମାନେ ଏଇ ଉଦ୍ୟମରୁ କ୍ଷାନ୍ତ ରହିଲେ । ମାତ୍ର ବିଦାୟ-ଲଗ୍ନରେ ସେମାନେ ଯେଉଁ ଅଭିନନ୍ଦନ ପତ୍ର ରାଧାନାଥଙ୍କୁ ଉପହାର ଦେଇଥିଲେ ତାହା ରାଧାନାଥୀ ପ୍ରତିଭାର ପ୍ରଶସ୍ତିରେ ମୁଖର ହୋଇ ଉଠିଥିଲା । ଏହା

ତରୁଣ ରାଧାନାଥଙ୍କର ଜ୍ଞାନଗରିମା, ବିଦ୍ୟା-ବିନୟର ସପ୍ରଶଂସ ଅଭ୍ରାସ ଉଲ୍ଲେଖ କରିଥିଲା । *

ପରିଦର୍ଶକ ରାଧାନାଥଙ୍କର ସହଯାତ୍ରୀ ଥିଲା ତାଙ୍କର ଟିପାଖାତା । ଏହି ଟିପା-ଖାତାରେ ସ୍କୁଲ ପରିଦର୍ଶନର ମନ୍ତବ୍ୟ ଲେଖା ହୋଇ ରହୁଥିଲା । କେଉଁ ସ୍କୁଲର ଛାତ୍ରମାନେ ଅଙ୍କ, ଇତିହାସ ଭୂଗୋଳ, ସାହିତ୍ୟ, ଗଣିତ ଇତ୍ୟାଦିରେ ପାରଙ୍ଗମ ସେମାନଙ୍କ ଟିପ୍ପଣୀ ଏଥିରେ ଲେଖାଯାଉଥିଲା, ପରିଦର୍ଶନରୁ ସେ ନିର୍ଦ୍ଦିଷ୍ଟ ସ୍କୁଲ ବାବଦରେ ଯେଉଁ ରିପୋର୍ଟ ପାଉଥିଲେ କିମ୍ବା ଅଭାବ ଅସୁବିଧା ବିଷୟରେ ଯେଉଁ ମନ୍ତବ୍ୟ ଶୁଣୁଥିଲେ, ତାହାକୁ ସାଇତି ରଖୁଥିଲେ ଏହି ଟିପା ଖାତାରେ । ଶିକ୍ଷାପ୍ରଣାଳୀରେ ଉନ୍ନତି କିପରି କରାଯାଇ ପାରିବ, ତାର ସଂକେତ ମଧ୍ୟ ପରିଦର୍ଶନରୁ ଲାଭ କରୁଥିବା ଅନୁଭୂତ କ ଭିତ୍ତିକରି ଏଥିରେ ପ୍ରସ୍ତୁତ ହୋଇ ରହୁଥିଲା ।

ରାଧାନାଥଙ୍କର ପରିଦର୍ଶନ ବିଚକ୍ଷଣତାରୁ ବାଲେଶ୍ୱରର ଶିକ୍ଷା ଉନ୍ନତି ଘଟିଥିଲା । ୧୮୭୫/୭୬ ମସିହାର ଜଏଣ୍ଟ ଇନ୍‌ସପେକ୍ଟରଙ୍କର ଏଡୁକେସନାଲ ରିପୋର୍ଟରୁ ଜଣାଯାଏ ଯେ ସରକାରୀ କର୍ମଚାରୀ ଭାବରେ ରାଧାନାଥ ଜିଲ୍ଲା ଶିକ୍ଷାଦାନ କ୍ଷେତ୍ରରେ ଯେତିକି ତତ୍ତ୍ୱ ନେବା କଥା ତାହା ଅପେକ୍ଷା ଅଧିକ ଯତ୍ନ ନେଉଥିଲେ । ବାଲେଶ୍ୱର ଜିଲ୍ଲା ମାଜିଷ୍ଟ୍ରେଟ ଜନ ବୀମସ୍, ଟି ନର୍ମାନ ଏବଂ ଆର. ଜେ ମାର୍ଟିନ ପ୍ରଭୃତି ଡେପୁଟି ଇନସପେକ୍ଟର ହିସାବରେ ରାଧାନାଥଙ୍କର ବୁଦ୍ଧିବତ୍ତା, କର୍ତ୍ତବ୍ୟନିଷ୍ଠା ଅଧ୍ୟବସାୟ, ଓ ଦକ୍ଷତା ସେନି ଉଚ୍ଚ ମନ୍ତବ୍ୟ

---

* ତରୁଣ ହେ ଏତ ବିଦ୍ୟା କେମନ ଶିଖେଛ
ଅମୂଲ୍ୟ ଏ ଧନ ତୁମେ କୋଥାୟ ପେୟେଛ ?
ଏକ ବିଦ୍ୟା ହେତୁ ନର କରେ କତ ଆଶ,
ରସନା ତୋମାର ବହୁ ବିଦ୍ୟାର ଆବାସ ।
ତଥାପିଓ ଗର୍ବଲେଶ ନାହିଁ ହେ ତୋମାର
ଆଛେ କି ଆଶ୍ଚର୍ଯ୍ୟ କିଛୁ ଇହା ହତେ ଆର ?
କିମ୍ବା ଜ୍ଞାନ ଲେକେ ଯାର ହୃଦୟ ପ୍ରକାଶେ
ଏରୂପ ସାଧୁତା ସଦା ତ ତେଇ ପ୍ରକାଶେ ।
ତୁ ମେଇ ଯଥାର୍ଥ ଜ୍ଞାନୀ, ପ୍ରକୃତ ବିଦ୍ୱାନ,
ପାବ କି ହେ ଗୁରୁ ଆର ତୋମାର ସମାନ ?
( ଶ୍ରୀ ଦୁର୍ଗାଚରଣ ରାୟ—ରାଧାନାଥ ଜୀବନୀ ( ୧୯୪୧ ) ପୃଷ୍ଠା ୫୯, କଟକ )

ସେମାନଙ୍କର ବାର୍ଷିକ ରିପୋର୍ଟ ମାନଙ୍କରେ (୧୮୭୨-୧୮୭୭) ପ୍ରଦାନ କରିଥିଲେ । *

ଶିକ୍ଷା ବିଭାଗର ପ୍ରଧାନ ପରିଦର୍ଶକ ଆସନରେ ଥିଲେ ସୁଦ୍ଧା ତାଙ୍କ ମନରେ ଅହଙ୍କାର ନଥିଲା । ବିଦ୍ୟାଳୟ ଶିକ୍ଷକମାନଙ୍କୁ ସେ 'ଆପଣ' ବୋଲି ସମ୍ବୋଧନ କରୁଥିଲେ । ଏକା ଆସନରେ ବସାଉଥିଲେ । ସେମାନଙ୍କ ସହିତ ମଧୁର ଆଳାପ ମଧ୍ୟ କରୁଥିଲେ । କେହି ନମସ୍କାର ହେବା ପୂର୍ବରୁ ସେ ନମସ୍କାର ହୋଇ ପଡୁଥିଲେ ।

ରାଧାନାଥ ଗୁପ୍ତଭାବରେ ଗାଁ ପାଠଶାଳାମାନ ପରିଦର୍ଶନ କରୁଥିଲେ, ସେଠାରେ ଥିବା ଅପାରଗ ଶିକ୍ଷକମାନଙ୍କୁ ଚାକିରିରୁ ବିଦାୟ ଦେଇ ପାରଙ୍ଗମ ଶିକ୍ଷକ ନିଯୁକ୍ତ କରୁଥିଲେ । ବେଳେ ବେଳେ ଅତି ସାଧାରଣ ପୋଷାକରେ ସେ ପରିଦର୍ଶନ ପାଇଁ ବାହାରି ପଡୁଥିଲେ । ଏମିତି ହେଉଥିଲା ଯେ ତାଙ୍କ ପୋଷାକ ପରିଚ୍ଛଦ ଦେଖି ଅବଧାନମାନେ ତାଙ୍କୁ ଚିହ୍ନି ପାରୁ ନଥିଲେ । ଏହି ଆଚରଣ ମୂଳରେ ଥିଲା ରାଧାନାଥଙ୍କର ପରିଦର୍ଶନ-ପଟୁତାର ସୂଚନା ଏବଂ ବିଳାସହୀନ ପ୍ରବୃତ୍ତିର ନମୁନା ।

ରାଧାନାଥ ଥରେ ଢେଙ୍କାନାଳର ବାଙ୍ଗୁର ସିଂହା ପାଠଶାଳା ପରିଦର୍ଶନରେ ଯାଇଥାନ୍ତି, ସାଥିରେ ଥା'ନ୍ତି ସବଇନ୍‌ସପେକ୍ଟର ବାବୁ ଶିବଶାସ୍ତ୍ର ବିଶ୍ୱାଳ ଓ ଜଣେ ଇନ୍‌ସପେକ୍ଟିଂ ପଣ୍ଡିତ । ଏମାନେ ଇନ୍‌ସପେକ୍ଟରଙ୍କର ପରିଦର୍ଶନ ବିଷୟ ସ୍କୁଲ ମାଷ୍ଟରମାନଙ୍କୁ ଜଣାଇ ପରିଦର୍ଶନ ପୂର୍ବରୁ ସ୍କୁଲଗୃହ ପରିଷ୍କାର ପରିଚ୍ଛନ୍ନ ରଖିବାପାଇଁ ଜଣାଇଦେଇଥିଲେ । ମାତ୍ର ସବଇନ୍‌ସପେକ୍ଟର ବାବୁ ଓ

---

* Among other causes, Balasore Schools owe their success to intelligent supervision by the Deputy Inspector, Babu Radhanath Rai, who takes more than an official interest in his work.
(Extract from the Orissa Joint Inspector's Educational Report 1875/76.
(ଶ୍ରୀ ଦୁର୍ଗାଚରଣ ରାୟଙ୍କ ରାଧାନାଥ ଜୀବନୀ, ପୃ—୭୬-୮୨ରୁ ସଂଗୃହୀତ)

ଅନ୍ୟମାନେ ସ୍କୁଲରେ ପହଞ୍ଚିବା ପୂର୍ବରୁ ରାଧାନାଥ, ସାଧାରଣ ପୋଷାକରେ ସ୍କୁଲରେ ପହଞ୍ଚିଯାଇ ବାରଣ୍ଡା ଉପରେ ବସିଥାନ୍ତି । ଚଉକିଦାର ସ୍କୁଲଗୃହଝାଡ଼ୁ କରୁଥାଏ । ଅଳିଆତକ ଓଲେଇଆଣି ସେ ରାଧାନାଥ ବସିଥିବା ଜାଗାଆଡ଼େ ଝାଡ଼ିଦେଲା । ସେ ତ ଆଉ ରାଧାନାଥଙ୍କୁ ଶିକ୍ଷା ବିଭାଗର କର୍ତ୍ତା ବୋଲି ଜାଣେନାହିଁ, କାରଣ ରାଧାନାଥଙ୍କର ରୂପ-ଭେକ ମଧ୍ୟ ସେପରି ହାକିମୀ ଢଙ୍ଗ ପ୍ରକାଶ କରୁନାହିଁ ରାଧାନାଥ ନୀରବରେ ବସି ସମ୍ମୁଖସ୍ଥ ଶୈଳଶ୍ରୀ ଉପଭୋଗ କରୁଥାନ୍ତି । ଇତ୍ୟବସରରେ ସବଇନ୍‌ସପେକ୍ଟର ଓ ପଣ୍ଡିତ ମହାଶୟ ଆସି ଉପସ୍ଥିତ ହେଲେ; ତାଙ୍କୁ ଦେଖି ରାଧାନାଥ କହି ପକାଇଲେ; 'ମୁଁ ଏଠି ଶୈଳଶ୍ରୀ ଉପଭୋଗ କରୁଥିଲି । ପାଠଶାଳାର ଚାକର ମୋ ଉପରକୁ ଅଳିଆ ଗଦା ଫୋପାଡ଼ି ଦେଇଗଲା । ତାର କିଛି ଦୋଷ ନାହିଁ; ସେ ଜାଣେ ନାହିଁ । ମୋର ସ୍ୱପ୍ନଭଙ୍ଗ ଘଟିଲା ମାତ୍ର ।'

ଏହା ଜଣେ ଉଦାରଚେତା ପ୍ରଶାସକର ମନ ହେବା ଅପେକ୍ଷା ଜଣେ ଅହଂକାର-ଶୂନ୍ୟ ମଣିଷର ଭାବନାର ସ୍ୱରୂପ ହୋଇପାରେ । ରାଧାନାଥ, କେବଳ କ୍ଷମତାକୁ ଦେଖୁ ନଥିଲେ, କ୍ଷମତାର ଅଙ୍ଗଣ ଆକାଶରେ ଥାଇ ସେ ମଣିଷକୁ ହିଁ ଦେଖୁଥିଲେ, ମଣିଷ ସହିତ ସମ୍ପର୍କ ବାନ୍ଧୁଥିଲେ । ଏଇ ସଂପର୍କର ପରିଧିରେ ଉଚ୍ଚାସନ ବା ନୀଚାସନର ଧାରଣା ନଥିଲା ।

ହାକିମୀ ଭାବନା ତାଙ୍କୁ ଗ୍ରାସ କରିନାହିଁ; କିମ୍ବା କୃତ୍ରିମତାର ମାସ୍କାପୋଷାକ ପିନ୍ଧି କର୍ମଭୂଇଁରେ ସେ ଅଭିନୟ କରିନାହାନ୍ତି । କବି ସିଏ, ମୁକ୍ତ ତାର ହୃଦୟ । ଝରଣାପରି ଅବାଧ ତାର ମନ । ଚେତନାର ଆକାଶରେ ସେ ସ୍ୱେଚ୍ଛାବିହାରୀ । ଜୀବନ ଓ ଜଗତ ସହିତ ତାର ପ୍ରାଣଦିଆ ସଂପର୍କ । କାରଣ, ସେ ବିଶ୍ୱାସକରେ, ଜୀବନକୁ ନିଠେଇ ବୁଝିଲେ ଜଗତକୁ ବୁଝିହୁଏ । ଜଗତ ତା'ପାଇଁ ଅନୁଭୂତିର ଉପବନ । ତେଣୁ ସେ ଜୀବନ ବା ଜଗତକୁ ହେୟ ନଜରରେ ଦେଖିବ କେମିତି ? ରାଧାନାଥ, ଏଇ ବିଶ୍ୱାସର ପଥିକ; ପ୍ରତ୍ୟେକ ମଣିଷ ତାଙ୍କ ନିକଟରେ ଜଣେ ଜଣେ ଭାବଦାୟୀ ସଖା !

ସହଜ ଆଖି ଥିଲେ ଏମିତି ଭାବନାର ଗୁରୁଣଭୂଇଁରେ ପ୍ରବେଶ କରିହୁଏ । ଆଦର୍ଶର ମର୍ମ ବୁଝିହୁଏ । ରାଧାନାଥ ବୁଝିଥିଲେ ଆଦର୍ଶର ଅଭିଜାତ ବଳ କେତେ ! ଏଇ ଆଦର୍ଶବୋଧର ସ୍ପର୍ଶ-ଶକ୍ତି ତାଙ୍କୁ କର୍ମଜୀବନରେ ପ୍ରଣାଳୀବଦ୍ଧ କରିଥିଲା । ଶିକ୍ଷା ଓ ପ୍ରଶାସନ କ୍ଷେତ୍ରରେ କୌଣସି କାର୍ଯ୍ୟ କଲାପୂର୍ବରୁ, ଯାହା କରାଯିବ ତାର ଏକ ସୁଚିନ୍ତିତ ଟିପ୍ପଣୀ ସେ ପ୍ରଥମେ ପ୍ରସ୍ତୁତ କରି ନେଉଥିଲେ ।

ରାଧାନାଥ ସ୍ଥିର କରିଥିଲେ, ପ୍ରତିମାସର ପ୍ରଥମ ସପ୍ତାହ ସଦର ଅଫିସରେ କଟାଇ ଅବଶିଷ୍ଟ ସମସ୍ତ ମଫସଲ ସ୍କୁଲ ପରିଦର୍ଶନରେ ବ୍ୟସ୍ତ କରିବେ । ସରକାରୀ କାମ କରନ୍ତୁ ବା ନ କରନ୍ତୁ ପ୍ରତ୍ୟେକ ଦିନର ଡ଼ାଇରି ଲେଖି ରଖିବା-ପାଇଁ ସେ ସତର୍କ କରୁଥିଲେ । କୌଣସି ସ୍କୁଲକୁ ପ୍ରଥମଥର ପାଇଁ ପରିଦର୍ଶନରେ ଯାଉଥିଲେ, ସେ ଦେଇ ସ୍କୁଲର ବିଭିନ୍ନ ଶ୍ରେଣୀରେ ପଢ଼ା ଯାଉଥିବା ପୁସ୍ତକ, ପଢ଼ାଉଥିବା ଶିକ୍ଷକଙ୍କର ନାମ, ଯୋଗ୍ୟତା ଓ ଶିକ୍ଷାଦାନ-ରୀତି ସ୍କୁଲର ଛୁଟି ଦିନମାନଙ୍କର ହିସାବ, ପିଲମାନଙ୍କ ବେତନର ପରିମାଣ—ଇତ୍ୟାଦି ବିଷୟରେ ଠିକନଖି ବିବରଣୀ ସଂଗ୍ରହକରି ଗୋଟିଏ ଖାତାରେ ସାଇତି ରଖିବା ଲାଗି ସ୍ଥିର କରିଥିଲେ । ସ୍କୁଲ ପରିଦର୍ଶନ ବ୍ୟତୀତ ସେଇ ଅଞ୍ଚଳର ବିଶିଷ୍ଟ ଭଦ୍ରବ୍ୟକ୍ତିଙ୍କ ଘରକୁ ଯାଇ ସେମାନଙ୍କ ସହିତ ଅନ୍ତରଙ୍ଗ ସମ୍ବନ୍ଧ ସ୍ଥାପନ କରିବାପାଇଁ ସେ ଲାଳାୟିତ ଥିଲେ ଏବଂ ତଦନୁଯାୟୀ ଆପଣାର କର୍ତ୍ତବ୍ୟ ପଞ୍ଜି ପୂର୍ବରୁ ତିଆରି କରି ନେଉଥିଲେ ।

ରାଧାନାଥଙ୍କର ମନୀଷା, ଆଭିଜାତ୍ୟୋପମ ଆଚରଣର ପୋଷକତା କରିଛି । ଆଭିଜାତ୍ୟର ହୃଦୟସ୍ଥ ପ୍ରଶସ୍ତ ଓ ବିସ୍ତାରଶୀଳ ହେଲାପରି ରାଧାନାଥ ତାଙ୍କ ଶିକ୍ଷକ-ମନଟିକୁ ଗଢ଼ି ତୋଳିଥିଲେ । କର୍ମପ୍ରତି ତାଙ୍କର ଆନ୍ତରିକତା ଥିଲା । ଅଧସ୍ତନ ମାନଙ୍କ ପ୍ରତି ଆନ୍ତରିକତା ନେଇ ସେ ସମସ୍ତଙ୍କୁ ବ୍ୟବହାର କରିନାହାଁନ୍ତି । ପ୍ରତ୍ୟେକଙ୍କର ପଦ-ପଦବୀକୁ ସମ୍ମାନ ଜଣାଇ ନିଜେ ସମ୍ମାନିତ ହୋଇଛନ୍ତି ।

ଜଣେ ସଚ୍ଚୋଟ ଶିକ୍ଷକ ଆପଣା କର୍ମର ଗୌରବ ରକ୍ଷାପ୍ରତି ଖୁବ୍ ସଚେତନ ଥାଏ । କର୍ମରେ ନିଷ୍ଠା ଥିଲେ, ଗୌରବ ମିଳେ । ରାଧାନାଥ ଥିଲେ ସେଇ ଗୌରବର ବିଳାସୀ । ବ୍ୟକ୍ତି ଅପେକ୍ଷା ବୃତ୍ତିର ସମ୍ମାନ ବଡ଼; ବୃତ୍ତିର ସମ୍ମାନ ବଢ଼ିଲେ ବ୍ୟକ୍ତି ମଧ୍ୟ ବଡ଼ ହୋଇଯିବ—ଏହା ହିଁ ଥିଲା ରାଧାନାଥଙ୍କର ଶିକ୍ଷକ ଜୀବନର ଦର୍ଶନ । ପ୍ରଶାସକ ଜୀବନରେ ମଧ୍ୟ ସେ ଏଇ ଦର୍ଶନର ଚିର ପୋଷକତା କରିଛନ୍ତି । ଜୀବନର ଶେଷାଂଶରେ ଯେତେବେଳେ ତାଙ୍କର ନୈତିକ ବଳ ଭାଙ୍ଗିଗଲା, ପାପପ୍ରଣୟର କଳଙ୍କ ତାଙ୍କୁ କଳୁଷିତ କଲା, ସେତେବେଳେ ସେ ଅବସର ଭୋଗୀ ଜୀବନଯାପନ କରୁଥିଲେ ମଧ୍ୟ ତାଙ୍କର ଏଇ ବ୍ୟକ୍ତିଗତ କଳଙ୍କ ଲାଗି କ୍ଷମା ପ୍ରାର୍ଥନା କରି ଏକ ପତ୍ର ବଙ୍ଗ-ଓଡ଼ିଶା ଲେଫ୍‌ଟେନେଣ୍ଟ ଗଭର୍ଣ୍ଣରଙ୍କ ଛାମୁକୁ ଲେଖି ପଠାଇଲେ । ଏହା ମୂଳରେ ଥିଲା ବୃତ୍ତି ପ୍ରତି ସମ୍ମାନ ପ୍ରଦର୍ଶନର ଅଭିପ୍ସା ଏବଂ ଜଣେ ସଚ୍ଚୋଟ ଓ ନିଷ୍ଠାପର ଶିକ୍ଷକ ପ୍ରାଣର ନିଷ୍କପଟ ଉଚ୍ଚାରଣ । ତେବେ ରାଧାନାଥଙ୍କର ଶିକ୍ଷକ ଓ ପ୍ରଶାସକ ଜୀବନ ଉନ୍ନତମାନସିକତାର ପରିଚାୟକ ନୁହେଁ କି ?

## ଅଶ୍ରୁ ତର୍ପଣ ଓ ପ୍ରଶସ୍ତି-ଅର୍ଚ୍ଚନା

କିଛି ନିଷ୍ଠୁର ମୁହୂର୍ତ୍ତ ମିଳୁଥିଲେ ରାଧାନାଥ, ଅନନ୍ତ ଆକାଶରେ ଧ୍ରୁବ ତାରା ଆଡ଼କୁ ଚାହିଁ ରହୁଥିଲେ । ସତେ ଯେମିତି ଏଇ ଆଖି ଖୋଜୁଥିଲା ଆକାଶର ଆଖିସହ ଏକ ହୋଇଯାନ୍ତା ପରି ! ସମସ୍ତଙ୍କୁ ଟାକି ରହୁଥିଲା ସିଏ । ରାତିର ଆକାଶ ଅତି ମନୋରମ, ସେଇ ରାତିର ଜ୍ୟୋତ୍ସ୍ନାସ୍ନାତ ଆକାଶରେ ମିଳେଇଗଲା — (୧୯୦୮ ଏପ୍ରିଲ ୧୬, ରାତି ୨ଘଣ୍ଟା, ଗୁରୁବାର ଚୈତ୍ର ପୂର୍ଣ୍ଣିମା) ରାଧାନାଥଙ୍କର ଆଖିର ଅକ୍ଷୌହିଣୀ; ଲିଭିଗଲା ଆଖିର ସେଇ ତେଜସ୍ୱୀ ଜ୍ୟୋତି, ହଜିଗଲା ପ୍ରତିଭାର ଅସ୍ତ୍ର ଆଶା ଏବଂ ଫେରିଗଲା କବିଙ୍କର ଉଚ୍ଚାରଣ, 'ବଡ଼ ନିଠୁର କାଳ ବଡ଼ ଅବଶ୍ୟାସୀ / ହାବୋଡ଼ି ନିବଟି ଆଚମ୍ବିତେ ଆସି ।'

ସଂବାଦ ବ୍ୟାପିଗଲା । ସେ ସମସ୍ତଙ୍କୁ ପୂର୍ବରେ ଉତ୍କଳ ସମ୍ମିଳନୀର ପଞ୍ଚମ ଅଧିବେଶନ ଅନୁଷ୍ଠିତ ହେଉଥାଏ (୧୯୦୮, ଏପ୍ରିଲ ୧୭—ଶୁକ୍ରବାର) । ଓଡ଼ିଶାର ବହୁ ନେତୃସ୍ଥାନୀୟ ବ୍ୟକ୍ତି, ଅଧିବେଶନରେ ଉପସ୍ଥିତ ଥାନ୍ତି । ରାଧାନାଥଙ୍କର ଶେଷ-ସମ୍ବାଦ ପହଞ୍ଚିବା କ୍ଷଣି ସମ୍ମିଳନୀ ମଣ୍ଡପ ଶୋକଗୀତିକାରେ ଅଶ୍ରୁ ଉଚ୍ଛଳ ହୋଇ ପଡ଼ିଲା । ଭକ୍ତକବି ମଧୁସୂଦନଙ୍କୁ ଏଇ ସମ୍ବାଦ ନିର୍ବେଦ-ନିଷ୍ପ୍ରାଣ କରିଦେଲା । ସେ ଦିନ ସକାଳୁ ମଧୁସୂଦନ ଗୋଟିଏ କୋଠରୀରେ କବାଟ ବନ୍ଦକରି ପଡ଼ି ରହିଲେ ଯେ ଆଉ ଉଠିଲେ ନାହିଁ । ଆପଣାକୁ ସ୍ଥିର ଓ ନିର୍ବିଚଳ ରଖିପାରିଲେ ନାହିଁ ମଧୁସୂଦନଙ୍କ ପରି ଧୈର୍ଯ୍ୟବାନ ଗମ୍ଭୀର ପୁରୁଷ ! ରାଧାନାଥଙ୍କର ବିୟୋଗ ତାଙ୍କ ଲାଗି ଏକ ବ୍ୟକ୍ତିଗତ କ୍ଷତି । କାରଣ, ସେ କାଳ କାଳକୁ ହରେଇଲେ ତାଙ୍କ କୈଶୋରର ଶିକ୍ଷାଗୁରୁ, ଯୌବନର ପ୍ରାଣବନ୍ଧୁ ଏବଂ ସାରସ୍ୱତ ଶିକ୍ଷାଦାତା, ମହୋତ୍ତମ ହୃତକାଶ ପ୍ରାଣବତ୍ସଳ ସୁପୁରୁଷ କବିବରଙ୍କୁ । ଏଣେ ରାଜକବି ସଚ୍ଚିଦାନନ୍ଦ ତ୍ରିଭୁବନ ଦେବଙ୍କର ଧାରଣା ହେଲା ଯେ, ଓଡ଼ିଶାରୁ କବିଶକ୍ତି ଲୋପ ହେଲା ।' ତଥାପି 'ଓଡ଼ିଆ ଭାଷାର ସତ୍ତା ଯେତେ ଦିନ ଓଡ଼ିଶାରେ ଥିବ, ସ୍ୱର୍ଗତ ରାୟ ରାଧାନାଥ ରାୟ ବାହାଦୂର ମୃତ ହୋଇଥିଲେ ସୁଦ୍ଧା ଅମରତ୍ୱ ଲାଭ କରିଥିବେ; ସନ୍ଦେହ ନାହିଁ'—ବୋଲି ସେ ଅନୁଭବ କଲେ । ଗଙ୍ଗାଧରଙ୍କର ମନ ଏଇ ଜାତୀୟ ଶୋକର ଦାରୁଣ ପୀଡ଼ା ବୋଧରେ ଅସ୍ଥିର ହୋଇ ଉଠିଲା । ସେ ନିଜେ ଶୋକ ଦଗ୍ଧ, ଶୋକସନ୍ତପ୍ତ ବ୍ୟକ୍ତିଙ୍କୁ ବା କି ସାନ୍ତ୍ୱନା ଦେବେ—ଏପରି ଦୁର୍ବଳତା ତାଙ୍କୁ ଗ୍ରାସ କଲା । ରାଧାନାଥ ବିହୁନେ ଆପଣାର ଚଉ ବୃତ୍ତିରେ ଦେଖା ଦେଉଥିବା ଶୂନ୍ୟତାର ସଂକ୍ରମଣକୁ ସୁଯୋଗ ଦେଇ ଶଶିଭୂଷଣଙ୍କ ଶୂନ୍ୟଜୀବନ ପ୍ରତି ସମ୍ବେଦନଶୀଳ ହୋଇ ଉଠିଥିଲେ କବି ଗଙ୍ଗାଧର । ନୀଳମଣି

ବିଦ୍ୟାରତ୍ନଙ୍କର ଦୃଢ଼ବୋଧ ହେଲା, ଶତ ଶତାବ୍ଦୀରେ ମଧ୍ୟ ରାଧାନାଥଙ୍କର ସ୍ଥାନ ଅପୂରଣୀୟ ରହିବ ।

କେହି କେହି ରାଧାନାଥୀ ପ୍ରତିଭାର ଗୌରବ ସ୍ମରଣ କରି ବୁଝିଥିଲେ ଯେ, ରାଧାନାଥଙ୍କ ପାଇଁ ଉତ୍କଳବାସୀ ଉପେନ୍ଦ୍ର ଭଞ୍ଜଙ୍କୁ ଭୁଲିଯାଇଥିଲେ । କିନ୍ତୁ ଏବେ ରାଧାନାଥଙ୍କର ବିୟୋଗ ଯେଉଁ ସାରସ୍ୱତ ଶୂନ୍ୟତା ସୃଷ୍ଟି କଲା ସେଠି ତାହାକୁ ଆଖି ଆଗରେ ଥୋଇ ରାଧାନାଥଙ୍କୁ ଭୁଲିହେବ ?

ବିଶ୍ୱନାଥ କର ରାଧାନାଥଙ୍କର ପ୍ରାଣର ଅକୁଳ ଧ୍ୱନି ଶୁଣିପାରିଲେ । ସେ ବୁଝିଲେ ଯେ 'ରାଧାନାଥ ବାବୁ ଉତ୍କଳର ଧୂଳିକଣାକୁ ସ୍ୱର୍ଗର ଧୂଳିକଣା ବୋଲି ମନେ କରନ୍ତି । ସାହିତ୍ୟ ଲାଗି ତାଙ୍କର ଉନ୍ମାଦନା, ଜୀବନ ପ୍ରତି ସତ୍ୟନିଷ୍ଠା, ଜ୍ଞାନପାଇଁ ପିପାସା ଏବଂ ଗୁଣ ଗ୍ରାହକତାର ପରିଚୟ ସେ, ରାଧାନାଥଙ୍କର ଚରିତ୍ରରୁ ଉପଲବ୍ଧି କରିଥିଲେ । କବି ପଦ୍ମଚରଣ ପଟ୍ଟନାୟକଙ୍କର ବିଶ୍ୱାସରେ ରାଧାନାଥଙ୍କର ସାରସ୍ୱତ ଅବଦାନ, ଜାତୀୟ ସଂପତ୍ତିର ମର୍ଯ୍ୟାଦା ପାଇପାରିଥିଲା । ସେ ବୁଝିଥିଲେ ଯେ "ରାଜାର ଧନମାନ ଓ ଶୌର୍ଯ୍ୟଶକ୍ତି ସମସ୍ତ ସ୍ରୋତରେ ହୁଏତ ଭାସିଯାଇପାରେ, ମାତ୍ର କବିର ସାରସ୍ୱତ କୀର୍ତ୍ତିର କ୍ଷୟ ନାହିଁ । ତାହା କଳ୍ପବଟ ତୁଲ୍ୟ ପ୍ରଳୟକାଳରେ ଏକାହିଁ ମୂର୍ତ୍ତିମନ୍ତ ହୋଇ ରହିଥାଏ । ଜାତୀୟ ଜୀବନର ଗଠନ ଲାଗି କିମ୍ବା ଜାତୀୟ ସଂସ୍କୃତିର ଅଗ୍ରଗତି ଲାଗି ଏଇ ଅକ୍ଷର କୀର୍ତ୍ତିହିଁ ଯଥୋପଯୁକ୍ତ ପ୍ରେରଣା ଯୋଗାଇ ଥାଏ ।" କବି, ସେଇ ମାନଦଣ୍ଡରେ ରାଧାନାଥଙ୍କର ପ୍ରତିଭାକୁ ଚହ୍ନିଛନ୍ତି । ପ୍ରତିଭାର ଅର୍ଚ୍ଚନା କରିବାବେଳେ ଏଇ ଅନୁଭବର ବାର୍ତ୍ତାବହ ହୋଇଛନ୍ତି କବି ପଦ୍ମଚରଣ ପଟ୍ଟନାୟକ । * ସକଳ

---

* କେତେ ରାଜା ପ୍ରଜା କେତେ ଧନରାଶି
କାଳସିନ୍ଧୁ ନୀରେ ଯିବେ ଦିନେ ଭାସି;
କେ ବହିବ ମନେ ତାଙ୍କ ନାମ ଭାର
ସେ ନାମେ କି ଯାଏ ଆସେ ଦୁନିଆର !
କିନ୍ତୁ ଅଟେ କବି ତୁମ୍ଭ ଦତ୍ତ ଧନ
ଜାତୀୟ ସଂପତ୍ତି ଜାତୀୟ ଜୀବନ ।
ଯେବେ ଗଢ଼ା ହେବ ଜାତୀୟ ପ୍ରାସାଦ
ଘୁଞ୍ଚାଇବା ଲାଗି ଜାତି ଅବସାଦ
ତୁମ୍ଭ ଧନ ଲୋଡ଼ା ହେବ କଡ଼ା କାନ୍ତି
ଏଥିରେ ଟଳେହେଁ ନାହିଁ ଭ୍ରମ ଭ୍ରାନ୍ତି ।
( କବି ପଦ୍ମଚରଣ ପଟ୍ଟନାୟକ—ସ୍ୱର୍ଗାରୋହଣ—ମୁକୁର ୧୧ଶ / ୧୨ଶ ସଂଖ୍ୟା ୨ୟ ଭାଗ )

ବିବାଦ ଓ ବିଚ୍ଛେଦର ତାତ୍‌କାଳିକ ଅବସ୍ଥା ସତ୍ତ୍ୱେ ରାଧାନାଥଙ୍କର ଜୀବନ ଥିଲା ଏକ ଅପୂର୍ବ ସୃଷ୍ଟି; ଯେତେ ଯେପରି ଗୋଟିଏ ମଧୁଭାଣ୍ଡ । କଠୋରତାର ସୀମା ଯେ ଜୀବନରେ ସ୍ପର୍ଶ କରିନେ ଥିଲେ; କୋମଳତା ଓ ମଧୁରତା ହିଁ ବସ୍ତୁତଃ ତାଙ୍କ ଆଚରଣର ଗତିଧାରାକୁ ନିୟନ୍ତ୍ରିତ କରିଥିଲା । ଏଇ ସରଳତା କବି-ଜୀବନ ବେଦୀରେ ହୋଇଛି ଦୁର୍ବଳତାର ପୃଷ୍ଠଭୂମି ।

ରାଧାନାଥ ହେଉଛନ୍ତି ବିଧାତାଙ୍କ ସୃଷ୍ଟିର ଏକ କଳା ପିଣ୍ଡ । ତାଙ୍କ ଚରିତ୍ର କମ୍ବା ପ୍ରତିଭାରେ ଅପବାଦୀର କଳଙ୍କ ଲେପିବା ଏକ ଅପପ୍ରୟାସ ମାତ୍ର । ଫକୀରମୋହନ ତାଙ୍କ ପ୍ରତିଭାକୁ ଯେମିତି ଚିହ୍ନିଛନ୍ତି, ତାଙ୍କ ଚରିତ୍ରରୁ ଯେଉଁ ପରିଚୟ ପାଇଛନ୍ତି ସେଥିରୁ ଜଣାଯାଏ, ରାଧାନାଥଙ୍କର ଆତ୍ମା ଥିଲା ନିର୍ଦ୍ଦୋଷ, ପବିତ୍ର । ମାନବ ସମାଜରେ ତାଙ୍କର ଅବସ୍ଥିତି ଓ କର୍ମଧାରାର ଅନ୍ତରାଳରେ ଦେବବଳର ପ୍ରଚ୍ଛନ୍ନ ସ୍ପର୍ଶ ଥିଲା । †

ରାଧାନାଥଙ୍କ ବିୟୋଗ ଲାଗି କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ର ଯେଉଁ ଅଶ୍ରୁତର୍ପଣ କରିଛନ୍ତି, ତାହାର ଅନ୍ତଭୂମିରେ ମୃତ୍ୟୁର ସ୍ୱୀକୃତି ନାହିଁ, ଅଛି ଅମରତ୍ୱର ବିଶ୍ୱସ୍ତ ଘୋଷଣା । ରାଧାନାଥଙ୍କର କବି-କୀର୍ତ୍ତିକୁ ସେ ଯେପରି ଚିହ୍ନିଛନ୍ତି, ସେଥିରୁ ସେ ଏହା ବୁଝିଛନ୍ତି ଯେ, "କବିର ମରଣ ନାହିଁ—କବି ଯାଏ ଦେଇ/ ଯିବାବେଳେ ପ୍ରତିମାୟ ସ୍ୱର୍ଗଦ୍ୱାର ଫେଇ / ତୃଷିତ ବିଶ୍ୱର କଣ୍ଠେ ଅମୃତ ଜୀବନ" । ❊

ରାଧାନାଥଙ୍କ ଜୀବନ ପକ୍ଷରେ ଏହା ଏକ ସତ୍ୟଘୋଷଣା । କାନ୍ତ କବି ବୁଝିଥିଲେ ଯେ, ରାଧାନାଥଙ୍କର ପ୍ରାଣ ବିଶ୍ୱର ମରମୀ ଭାବ-ସାଗର ଦର୍ପଣ । ମାନବ ଜାତିର ସ୍ୱଭାବ ପ୍ରବୃତ୍ତି ସହ ରାଧାନାଥୀ କବି-ଆତ୍ମାର ଦେଣ-ନେଣରେ

---

† ସ୍ୱଭାବରେ କଳୁଷିତ ମାନବ ଚରିତ୍ର
ରାଧାନାଥ ଆତ୍ମା ଥିଲା ନିର୍ଦ୍ଦୋଷ ପବିତ୍ର ।
ମାନବ ସମାଜେ ଥିଲା ଧରି ଦେବବଳ
ପଙ୍କରେ ପଙ୍କଜ ଯଥା ସ୍ୱଭାବ ନିର୍ମଳ ।
( ଫକୀରମୋହନ ସେନାପତି—ରାଧାନାଥରାୟ ବାହାଦୁର—ମୁକୁର ୮ମ ଭାଗ / ୬ଷ୍ଠ ସଂଖ୍ୟା, ଆଷାଢ଼ ୧୩୧୬ )

❊ କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ର—ଅମର କବି

କେବେହେଲେ ସୃଷ୍ଟି ଘଟି ନାହିଁ । କବି ପୁରୁଷ ବିଶ୍ୱର ଭାବସମୁଦ୍ରରେ ବୁଡ଼ିଛନ୍ତି, ଆପଣା ପ୍ରାଣକୁ ତଳ ତଳ ଖଣ୍ଡକରି ବିଶ୍ୱର ଅନୁଭୂତି ଉପଭୋଗ କରନ୍ତି; ଆପଣା ଭିତରେ ବିଶ୍ୱକୁ ଦେଖିଛନ୍ତି, ହସିଛନ୍ତି କିବା କାନ୍ଦିଛନ୍ତି ପୂର୍ଣ୍ଣ ଭାବନାର ବିଳାସ ଭୂମିରେ । ଭାବପ୍ରିୟା ସହ ରମଣରତ କବିପୁରୁଷ ଭାବର ସମ୍ଭୋଗ ସ୍ୱାଦ ଲଭିକରି ଆତ୍ମହରା ହୋଇ ପଡ଼ିଛନ୍ତି କିମ୍ବା ରାଜହଂସ ସମ ଆପଣାକୁ ନିଃଶେଷ କରିଦେଇଛନ୍ତି ଭାବ-ରମଣର ରତି ରାଗରେ †। ଏଇତ ଅମର ସାଧନାର୍ଥୀ କବି ଆତ୍ମା ! ସଦା ଜୀବିତ ସିଏ ଆମର ଭାବଲୋକରେ ।

କବି ନନ୍ଦକିଶୋର ସାଧନାର୍ଥରେ ଏବଂ ସ୍ୱ ସାହିତ୍ୟ-ତାପସ ରୂପ ବରେ ଚଳିଥିଲେ । ସାହିତ୍ୟସେବା ଥିଲା ତାଙ୍କ ଜୀବନର ମହାନବ୍ରତ । କବିତା ପ୍ରେମରେ ପଡ଼ି ସେ ସଂସାରକୁ ଭୁଲିଥିଲେ,- ଉଦାସୀନତା ତାଙ୍କୁ ମାଡ଼ି ବସିଥିଲା । ଉଦ୍‌ଭ୍ରାନ୍ତ ପ୍ରେମିକ ଭଳି କାବ୍ୟ-ସୌନ୍ଦର୍ଯ୍ୟ ଭୋଗ ପାଇଁ ସେ ଭାରତୀ-କୁଞ୍ଜରେ ଆଶ୍ରୟ ନେଉଥିଲେ * । ଆର୍ଯ୍ୟର ତପୋଧନ ପରି ସାହିତ୍ୟ ଥିଲା ତାଙ୍କ ଜୀବନର ଧନ । ଏଥିପାଇଁ କେତେ ପୂର୍ଣ୍ଣ ମାଦକ-ଉନ୍ମାଦନା !

---

† ଆପଣା ଅନ୍ତରେ ଥାପି ବିଶ୍ୱର ମର୍ମ / ହସିଛନ୍ତି, କାନ୍ଦିଛନ୍ତି, ଗୀତ ଗାଇଛନ୍ତି ଅବିରା / ରମିଛନ୍ତି ଆପଣା ପ୍ରାଣେ କବି ଆତ୍ମହରା / ନିଜକୁ ନିଃଶେଷ କରି ରାଜହଂସସମ ।

( କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ର—ଅମର କବି )

* (କ) ଆର୍ଯ୍ୟ ତପୋଧନ ସମ ଧରି ଅଟଳ ସଂଯମ
ପବିତ୍ର ସାହିତ୍ୟ ବ୍ରତ କଲି ପାଳନ
ମାଦକ ଉନ୍ମାଦେ ଯେତେ ହୁଏ ନର ଭ୍ରମେ ତେତେ
ସାହିତ୍ୟେ ଆସକ୍ତ ଥିଲି ସାରାଜୀବନ
ଏକ ତାନ ମନ ହେ ଜ୍ଞାନ !
କବିତାକୁ ପ୍ରିୟ ପଣେ ଥିଲି ତ ମାନ ।
( କବି ନନ୍ଦକିଶୋର ବଳ—ଗ୍ରନ୍ଥାବଳୀ (୧୯୫୬) —ପୃଷ୍ଠା ୬୭୮, କଟକ)
(ଖ) କବିତା ବିମୋହିନୀ ମୂରତି ଦେଖି
ସଂସାର ସୁଖ ଚିରଦିନ ଉପେକ୍ଷି
କାବ୍ୟ ସୌନ୍ଦର୍ଯ୍ୟେ ହୋଇ ଉଦ୍‌ଭ୍ରାନ୍ତ ବିତ୍ତ
ବୁଲୁଥିଲି ଭାରତୀ କୁଞ୍ଜେ ସତତ ।
( କବି ନନ୍ଦକିଶୋର ବଳ—ଗ୍ରନ୍ଥାବଳୀ (୧୯୫୬) ପୃଷ୍ଠା ୬୧୭, କଟକ )

ରାଧାନାଥୀ ପ୍ରତିଭାର ରୂପଟିକୁ ଚିହ୍ନିବା ପ୍ରସଙ୍ଗରେ ନନ୍ଦକିଶୋରଙ୍କର ହୃଦବୋଧ ହୋଇଥିଲା ଯେ, ରାଧାନାଥ ଦୁଇଟି ଜାଗତିକ ସ୍ୱବସ୍ତୁର ଅନ୍ତରଙ୍ଗ ଉପକାର ଥିଲେ । ତାହା ହେଉଛି—ସୌନ୍ଦର୍ଯ୍ୟ ଓ ପ୍ରୀତି । 'ପୃଥିବୀରେ ଯେବେ କିଛି ସାର ଥାଏ, ତେବେ ତାହା ସୌନ୍ଦର୍ଯ୍ୟ ଏବଂ ପ୍ରୀତି; ଏହାହିଁ ରାଧାନାଥଙ୍କ ଅନ୍ତନିଷ୍ଠ ବିଶ୍ୱାସ'—ଏପରି ଅଭିଜ୍ଞାନ ନନ୍ଦକିଶୋର ଲାଭ କରିଥିଲେ । †

ସୁତରାଂ ଯେଉଁମାନେ ରାଧାନାଥଙ୍କର ସାଧନା କାଳ ଓ ପରିଚୟ-ପରିଧି ଭିତରେ ଥିଲେ; ସେମାନଙ୍କର ମନଖୋଲା ମନ୍ତବ୍ୟ ଯେମିତି ରାଧାନାଥୀ ପ୍ରତିଭାର ଅର୍ଚ୍ଚନା କରିଛି କିମ୍ବା ବିୟୋଗର ଦୁଃସମ୍ବାଦରେ ଯେପରି ମର୍ମଜ୍ୱାଳା ପ୍ରକାଶ କରିଛି; ତାହା ସେହି କବି-ଶକ୍ତି ପ୍ରତି ନିର୍ମଳ ନୈବେଦ୍ୟ ଭିନ୍ନ ଆଉ କିଛି ନୁହେଁ ।

ଏହା ସାଧାରଣ ଶୋକ-ପ୍ରକାଶ ନୁହେଁ କିମ୍ବା ପ୍ରତିଭା ଅର୍ଚ୍ଚନାର ଏକ ସାମାନ୍ୟ ଉଦ୍ୟମ ନୁହେଁ । ବ୍ୟକ୍ତିଗତ ଦୃଷ୍ଟିକୋଣରୁ କବିଙ୍କୁ ସିଏ ଯେମିତି ଚିହ୍ନିଥିଲେ, ଜାତୀୟ ସ୍ତରରେ କବିଙ୍କର ଭୂମିକାକୁ ସିଏ ଯେପରି କଳନା କରିଥିଲେ—ତାହାର ଏକ ଆନ୍ତରିକ ଅଭିବ୍ୟକ୍ତି ହିଁ ଏଠି ଅଶ୍ରୁତର୍ପଣ ଓ ପ୍ରତିଭା ଅର୍ଚ୍ଚନାରେ ନିହିତ । ଏଠି ମୃତ୍ୟୁର ଭୟଙ୍କରତା ଲାଗି ଅସହାୟ ଉଦ୍‌ବେଗ ନାହିଁ, ଅଛି ଏକ ଶୂନ୍ୟତାବୋଧ । ଏହା ବ୍ୟକ୍ତିଗତ ପୁଣି ଏକ ଜାତୀୟ ଶୂନ୍ୟତା ।

ଏଠି ଯେଉଁ ମହାଯାତ୍ରାର ପର୍ବ ପାଳିତ ହେଲା, ତାହା ତ ଠିକ ଅନ୍ତିମ-ଯାତ୍ରା ନୁହେଁ, ବରଂ ଗୌରବରେ ମୃତ୍ୟୁ ପଥକୁ ଅତିକ୍ରମ କରିଯିବାର ଏକ ସଫଳ ଉଦ୍ୟମ ମାତ୍ର । ଏଠି ଅଶ୍ରୁ ଅଭିଷେକର ଯେଉଁ ପୂରବୀ ରଚିତ ହେଲା ତାହା ତ କିଛି ଇଚ୍ଛାକୃତ ଅଭିବ୍ୟକ୍ତି ନୁହେଁ; ବ୍ୟଥା ଓ ବ୍ୟର୍ଥତାର ଚିରନ୍ତନ ଗୀତି ଗାନରେ ଯାହାଙ୍କର ସାରସ୍ୱତ-କୁଞ୍ଜ ଉଦ୍‌ବେଳିତ, ତାଙ୍କରି ଆଖିର ଲୁହ ଓ ମନର କୋହର ପ୍ରେରଣାରୁ ଆମର ଏ ଅଶ୍ରୁର ତର୍ପଣ ! ଯାହାଙ୍କର କୋଟି କୋଟି ଆଖିର ଅକ୍ଷର କାବ୍ୟର ଯେଉଁ କୋଣାର୍କ ଗଢ଼ିଲା, ତାଙ୍କର ଜୀବନ-ପେତ ଅଶ୍ରୁର ସମୁଦ୍ରରେ ପହଁରି ପହଁରି ଜୀବନ ଓ ଜାତି ଲାଗି ଦେଇଗଲା ମୁକ୍ତା ଓ ମାଣିକ୍ୟର ଫୁଲମାଳା, ତାଙ୍କ ପାଇଁ ଆମେ ଦେଲୁ ଅଶ୍ରୁ ଓ ଅର୍ଚ୍ଚନାର ନୈବେଦ୍ୟ ।

---

† ନନ୍ଦକିଶୋର ବଳ—ଗ୍ରନ୍ଥାବଳୀ (୧୯୫୫)—କବି ରାଧାନାଥ ଓ ତଦୀୟ କବିତା—ପୃଷ୍ଠା ୯୫୪, କଟକ

## ରାଧାନାଥଙ୍କ କାବ୍ୟ-ଦର୍ଶନ

ଦୃଷ୍ଟି ହେଉଛି ସୃଷ୍ଟିର ମୂଳ ଉପାଦାନ । ଏଇ ଦୃଷ୍ଟି ବୋଇଲେ ଖାଲି ଦୁଇଟି ଆଖିର ସାଧାରଣ ଉପଲବ୍ଧିକୁ ବୁଝାଏ ନାହିଁ । ଏଥି ସହିତ ଆଉ ଗୋଟିଏ ଆଖିର ଅନୁଭବକୁ ଏକାନ୍ତ ଅପରିହାର୍ଯ୍ୟ ଉପକରଣ ବୋଲି ବିଚାର କରାଯାଇ-ଥାଏ । ତାହା ହେଉଛି, ତୃତୀୟ ନୟନ । ଏଇ ତୃତୀୟ ନୟନ (vision) ବା ଅନ୍ତର୍ଦୃଷ୍ଟିର ଝଙ୍କାରରୁ କବି ବା କବିତାର ଭାବ-ମୂର୍ତ୍ତି ଗଢ଼ାହୁଏ । ଅନ୍ତର୍ଦୃଷ୍ଟି ଯଦି ତୀକ୍ଷ୍ଣ ଓ ସୂକ୍ଷ୍ମ, କବିର କବିତା ହେବ ଶକ୍ତି-ସମ୍ପନ୍ନ ଓ ଭାବ-ଉଚ୍ଛଳ ।

କବି-ପୁରୁଷର ଜୀବନ ଓ କାବ୍ୟ ମନୀଷାର ଉପଲବ୍ଧି ଏହି ତୃତୀୟ ନୟନର ଅନୁଶୀଳନରୁ ହିଁ ଜନ୍ମିଥାଏ । ତୃତୀୟ ନୟନ ମଧ୍ୟ କବିର ବୋଧ-ଦୃଷ୍ଟି ଓ ରସ-ଦୃଷ୍ଟିର ପରିଚୟ ଦିଏ ଏବଂ ଏହି ଦୁଇଟି ଦୃଷ୍ଟିର ମିଶ୍ର ଫଳରୁ ସମଗ୍ର କବି-ସତ୍ତାର ପ୍ରମୂର୍ତ୍ତିନ ଓ ପରିପୁଷ୍ଟି ସାଧିତ ହୁଏ ।

ସୁତରାଂ କବିର କାବ୍ୟ-ସତ୍ତା ଓ ବ୍ୟକ୍ତିସତ୍ତା—ଉଭୟ ମିଶି କବିଙ୍କ କାବ୍ୟ-ଦର୍ଶନର ସ୍ୱରୂପ ଚିହ୍ନେଇଥାନ୍ତି । ସେଥିଯୋଗୁଁ ରାଧାନାଥଙ୍କର କାବ୍ୟ-ଦର୍ଶନର ଯଥାର୍ଥ ଅଧ୍ୟୟନ ଲାଗି ଏହି ଦୁଇଟିର ସ୍ୱଭାବ-ଶକ୍ତି ପ୍ରଣିଧାନ କରିବା ନିହାତି ଆବଶ୍ୟକ ।

### ମୁଁ ଭବଭୂତିଙ୍କର ଚେଲା, ଜୟଦେବଙ୍କର ଚେଲା ନୁହେଁ

୧. ରାଧାନାଥଙ୍କ ମନର ମୁକ୍ତ ସ୍ୱୀକୃତି କହେ ଯେ, ସେ ହେଉଛନ୍ତି ଭବଭୂତିଙ୍କର ଶିଷ୍ୟ, ଜୟଦେବଙ୍କର ନୁହଁ । * ସାରସ୍ୱତ ସଂସାରରେ ଭବଭୂତି ଥିଲେ ଏକ ନିଃସଙ୍ଗ କାକଳି (A Solitary Soul) । ସେ ରୀତାଶ୍ରୟ-ଶୂନ୍ୟ ଜୀବନ ଯାପନ କରୁଥିଲେ । ଶୁଣାଯାଏ, ବାଲ୍ୟକାଳରୁ ସେ ଖୁବ୍ ଦୁଃଖ

---

* ରାଧାନାଥ ଗ୍ରନ୍ଥାବଳୀ—ନୂତନ ସଂସ୍କରଣ (୧୯୬୫) ବ୍ରହ୍ମପୁର, ଆତ୍ମକଥାର କିୟଦଂଶ ଦ୍ରଷ୍ଟବ୍ୟ ।

ଦୁର୍ଦ୍ଦଶା ମଧ୍ୟ ଦେଇ ଜୀବନ କାଟିଥିଲେ । କାଳିଦାସଙ୍କ ପରି ତାଙ୍କ ଜୀବନ ଅଭ୍ୟୁଦୟର ସ୍ୱର୍ଣ୍ଣ କ୍ଷେତ୍ର ନଥିଲା । ବେଦନା ଓ କରୁଣତାର ଉଚ୍ଛଳ ଭଲପାରେ ସଦାବହମାନ ଭବଭୂତି, ଜୀବନକୁ କରୁଣତାର ରହସ୍ୟମୂର୍ତ୍ତି ରୂପେ ଦେଖିଥିଲେ । ନାଟକ ରଚନା ବ୍ୟାପାରରେ କରୁଣ ରସକୁ ଏକମାତ୍ର ରସରୂପେ ସେ ଗ୍ରହଣ କରିଥିଲେ । †

ଭବଭୂତିଙ୍କ ଭଳି ରାଧାନାଥଙ୍କର ଜୀବନ-ଜିଜ୍ଞାସା । ରାଧାନାଥ ଜଗତକୁ 'ଦୁଃଖଦଗ୍ଧ-ଜ୍ଞାନଚକ୍ଷୁ'ରେ ଦେଖୁଥିଲେ । ସୁଖପ୍ରତି ସେ ଥିଲେ ନିଃସ୍ପୃହ । ତାଙ୍କ ଧାରଣାରେ ଜୀବନରେ ସୁଖ ହେଉଛି, ଆକାଶ କୁସୁମ ଭଳି ଏକ ଅଳଭ୍ୟ ବସ୍ତୁ । ସାଧାରଣରେ ସୁଖ ବୋଲି ଯାହା ପ୍ରତିଭାତ ହୁଏ, ତାହା ସୁଖ ନୁହେଁ, କୁହୁକ ମାତ୍ର † । ଏହି ଦୃଷ୍ଟିରୁ ବିଚାରିଲେ, ଦୁଃଖବୋଧ ଥିଲା ରାଧାନାଥଙ୍କ ଜୀବନର ଏକ ସହଜପ୍ରଭବ ଚେତନା । ସେହିପରି ନିଃସଙ୍ଗତା ବୋଧ । ଉଦାସୀନତା ଏହାର ଏକ ପ୍ରତିଧ୍ୱନି ମାତ୍ର । ରାଧାନାଥ ଥିଲେ ସଂସାରରେ ସଦା ଉଦାସୀନ । ସଂସାରଙ୍କ ସାଥୀରେ ସମ୍ପର୍କ ବାନ୍ଧିବା ଲାଗି ତାଙ୍କର ମନ ବଳୁ ନଥିଲା । କାରଣ ତାଙ୍କ ଜୀବନ

---

† ଏକୋ ରସଃ କରୁଣ ଏବ ନିମିତ୍ତ ଭେଦାନ୍
ଭିନ୍ନଃ ପୃଥକ୍ ପୃଥ ଗିବା ଶ୍ରୟତେ ବିବର୍ତ୍ତାନ୍
ଆବର୍ତ୍ତ ବୁଦ୍ ବୁଦ ତରଙ୍ଗ ମୟାନ୍ ବିକାରାନ୍ ମ୍ଭୋ
ଯଥା ସଲିଳ ମେବ ହିତତ୍ ସମସ୍ତମ୍ — ।
( ଭବଭୂତି — ଉତ୍ତର ରାମ ଚରିତ )

† ଦୁଃଖ ଦଗ୍ଧ ଜ୍ଞାନ ଚକ୍ଷୁରେ ଜଗତ
ଦେଖିବାରେ ମୁହିଁ ଅଭ୍ୟସ୍ତ ସତତ,
ସୁଖ ବୋଲି ଯାକୁ ବୋଲଇ ସଂସାର
କହୁଥାଇ ତାକୁ ଦୂରୁ ମୁଁ କୁହୁକ
ସୁଖରୂପେ ଯାହା ଜନ ନେତ୍ରେ ଦଶେ
ହାତେ ଆସେ, ହାତୁଁ ପଡ଼ିବା ପାଇଁ ସେ
ବସ୍ତୁ ନୁହଇ ସେ ଅଟଇଟି ଧୂମ
ଅନ୍ୟ ନାମ ତା'ର ଆକାଶ କୁସୁମ ।
( ରାଧାନାଥ ଗ୍ରନ୍ଥାବଳୀ,—ଚିଲିକା, ପୃଷ୍ଠା ୧୪୯ —ନୂତନ ସଂସ୍କରଣ (୧୯୭୫) ବ୍ରହ୍ମପୁର ।

ଥିଲି ଭିନ୍ନ ଉପାଦାନରେ ଗଢ଼ା * । ହାହାକାରମୟ ଯାହାର ଜୀବନ ସେ ବା କେମିତି ବୁଝିବ ଜୀବନର ସୁଖସ୍ମୃତି ? ଜୀବନ୍ତ ମରଣର ଦାରୁଣ ଆଘାତ ହିଁ ତାହାର ନିତ୍ୟସମ୍ବଳ । ରାଧାନାଥ ହେଉଛନ୍ତି ଏହି ଜିଜ୍ଞାସାର ଏକ ପ୍ରତିମୂର୍ତ୍ତି; ତାଙ୍କର କାବ୍ୟ ହେଉଛି, ଜୀବନ-ଯନ୍ତ୍ରଣାର ଏକ କଳାତ୍ମକ ମାନଚିତ୍ର ।

୨. ଜୀବନରେ ଭବଭୂତିଙ୍କର ସାରସ୍ୱତକୀର୍ତ୍ତି ବହୁ ପ୍ରତିକୂଳ ସମାଲୋଚନାର ଶିକାର ହୋଇଥିଲା । ନିନ୍ଦୁକଙ୍କର ଆଘାତରେ ଶେଳବିଦ୍ଧ ହୋଇ ପଡ଼ିଥିଲେ ଭବଭୂତି । ତଥାପି ନିଜର ସୃଷ୍ଟି ଓ ଶକ୍ତି ଉପରେ ତାଙ୍କର ଏତେ ଆସ୍ଥା ଥିଲା ଯେ ସେ ନିନ୍ଦୁକମାନଙ୍କ ପ୍ରତି ଅବଜ୍ଞା ପ୍ରକାଶ କରିଥିଲେ । ବିଶ୍ୱାସ ଥିଲା, ନିରବଧି କାଳ ଓ ବିପୁଳା ପୃଥ୍ୱୀ କୋଳରେ ଦିନେ ନା ଦିନେ କେହି ଜନ୍ମ ଗ୍ରହଣ କରିବେ ଯିଏ କି ସମଧର୍ମୀ ଓ ସମରୁଚି ସଂପନ୍ନ ହୋଇ କବିଙ୍କର ସୃଷ୍ଟି ଯନ୍ତ୍ରଣା ଉପଲବ୍ଧି କରିବେ † । ତତ୍ତୁଲ୍ୟ ନିନ୍ଦା ଓ ଅପବାଦର ଦଂଶନ ଭୋଗି ଥିଲେ କବି ରାଧାନାଥ; କିନ୍ତୁ ସାହିତ୍ୟ ପ୍ରତି ଥିଲା ତାଙ୍କର ଗଭୀର ଆସ୍ଥା ଓ ଭବିଷ୍ୟତ ପାଠକମାନଙ୍କର ସହୃଦୟତାରେ ଅଖଣ୍ଡ ବିଶ୍ୱାସ ।

---

* ସଂସାରେ ଥାଇ ମୁଁ ସଦା ଉଦାସୀନ
ଉଦାସୀନ ପ୍ରାୟେ କଟାଇଲି ଦିନ
ସଂସାରୀ ସଙ୍ଗତେ ସଙ୍ଗହେବା ପାଇଁ
କେବେହେଁ ମୋହର ମନବଳେ ନାହିଁ ।
...ସ୍ଥିର ଧୈର୍ଯ୍ୟ ମୋର ଚିହ୍ନିତ ପାଷାଣେ
ମୋ ଜୀବନ ଗଢ଼ା ଅନ୍ୟ ଉପାଦାନେ
ଚିର ହାହାମୟ ଏ ସ୍ଥିର ଜୀବନ
ଜୀବନ ନୁହଇ, ଜୀବନ୍ତ ମରଣ ।
ଚିରଦିନ ଦୁଃଖ ପ୍ରହାରେ ଜର୍ଜର
ପଟ୍ଟଶିଷ୍ୟ ମୁହିଁ ଦୁଃଖ ଗୁରୁଙ୍କର ।
( ଚିଲିକା—ରାଧାନାଥ ଗ୍ରନ୍ଥାବଳୀ, ପୃଷ୍ଠା ୧୪୮—ନୂତନ ସଂସ୍କରଣ
( ୧୯୭୫ ) ବ୍ରହ୍ମପୁର )

† ଯେ ନାମ କେଚିଦିହ ନ ପ୍ରଥୟନ୍ତ୍ୟ ବଜ୍ଞାଂ
ଜାନନ୍ତୁ ତେ କିମପି ତାନ ପ୍ରତି ନୈଷ ଯତ୍ନଃ ।
ଉତ୍ପତ୍ସ୍ୟତେଽସ୍ତି ମମ କୋଽପି ସମାନଧର୍ମା
କାଲୋହ୍ୟୟଂ ନିରବଧି ବିପୁଳାଚ ପୃଥ୍ୱୀ ।
( ଭବଭୂତି—ଉତ୍ତର ରାମ ଚରିତ )

୩. ଭବଭୂତଙ୍କର ଧାରଣା ଥିଲା ଯେ, କାବ୍ୟ ଓ ନାରୀ—ଏ ଦୁହିଁଙ୍କର ସାଧୁତା ସମ୍ବନ୍ଧରେ ଦୁର୍ଜନମାନେ ସତତ ସନ୍ଦିହାନ *। ଏଦ୍ୱାରା ସ୍ପଷ୍ଟ ପ୍ରତୀୟମାନ ରାଧାନାଥଙ୍କ ଠାରୁ ଶୁଣା ଯାଇ ନଥିଲେ ବି ତାଙ୍କ ଜୀବନରେ ଏଇ କାବ୍ୟ-କୀର୍ତ୍ତି ଓ ନାରୀ-ସଂସର୍ଗ ଯୋଗୁଁ ସେ ବହୁ ସନ୍ଦେହ ଓ ସମାଲୋଚନାର ବୃଦ୍ଧ ଭିତରକୁ ଟାଣି ହୋଇ ଯାଉଥିଲେ ।

୪. ରାଧାନାଥ, ଭବଭୂତଙ୍କ ପରି ଖୁବ୍ ଅନ୍ତର୍ମୁଖୀ । ମଣିଷ ମନର ଗହନ ସ୍ତରକୁ ପ୍ରବେଶ କରି କୋମଳ ବୃତ୍ତିଚୟର ସୂକ୍ଷ୍ମାତିସୂକ୍ଷ୍ମ ରୂପାୟନରେ ଦୁଇକବି ବେଶ ଅନୁରାଗୀ । ଏମାନେ ଗମ୍ଭୀରତାର ପୋଷକ, ଲଘୁତା କିମ୍ବା ହାସ୍ୟ-କୌତୁକର ବାତାବରଣ ସୃଷ୍ଟି କରି ପାଠକ ମନକୁ ହାଲୁକା ରସ-ବୈଚିତ୍ର୍ୟର ସ୍ୱାଦ ଯୋଗାଇବାକୁ କେବେ ଇଚ୍ଛାକରି ନାହାନ୍ତି । କେଦାରଗୌରୀ ଠାରୁ ପାର୍ବତୀ ପର୍ଯ୍ୟନ୍ତ ସମସ୍ତ କଥାକାବ୍ୟର ଅନ୍ତଃସ୍ୱର ଯେହେତୁ କରୁଣ ରସରେ ପରିପୂର୍ଣ୍ଣ ସେଠି ହାସ୍ୟରସର ଲଘୁତା ଅବା ଆସିବ କାହୁଁ ! ଏତଦ୍‌ଭିନ୍ନ ଦରବାର, ଚଲିକା ଓ ମହାଯାତ୍ରା ପ୍ରଭୃତି କୃତିରେ ଭାବ-ଗମ୍ଭୀର ମନସ୍ୱିତାର ପ୍ରାଣାବେଗ ଜଡ଼ିତ, କିମ୍ବା ଦୁର୍ଯ୍ୟୋଧନଙ୍କ ରକ୍ତନଦୀ ସନ୍ତରଣ ଓ ଦଶରଥ ବିୟୋଗ ଆଦିରେ କରୁଣ ଉଚ୍ଛ୍ୱାସର ଅଭିବ୍ୟକ୍ତି ସ୍ପଷ୍ଟ ।

୫. ଭବଭୂତଙ୍କର ପ୍ରକୃତିଚର୍ଯ୍ୟାରେ ରୌଦ୍ର ଓ କମନୀୟ ରୂପାଲେଖ୍ୟର ପ୍ରାଧାନ୍ୟ ଥିଲାପରି ରାଧାନାଥଙ୍କର ପ୍ରକୃତିରେ ଶୌର୍ଯ୍ୟ ଓ ଶ୍ରୀର ସମନ୍ୱୟ ଉପଲବ୍ଧ ହୋଇଥାଏ । ଭବଭୂତଙ୍କ ପ୍ରକୃତି ବର୍ଣ୍ଣନାରେ ଠାଏ ଠାଏ ଗିରିବନ ନଦୀ ଇତ୍ୟାଦିର ବହିଃରଙ୍ଗ ବର୍ଣ୍ଣନା ପରିଦୃଷ୍ଟ ହୁଏ । ସେହିପରି ରାଧାନାଥଙ୍କର ପ୍ରକୃତି ଚିତ୍ରଣରେ ଭୌଗୋଳିକ ସ୍ଥିତି-ଅବସ୍ଥିତିର ବିପୁଳ ବର୍ଣ୍ଣନା ଦେଖାଯାଏ ।

୬. ଭବଭୂତଙ୍କର ଉପମା ବସ୍ତୁ ଓ ଭାବନିଷ୍ଠ; ଅର୍ଥାତ୍ ଉପମା ପ୍ରୟୋଗରେ ସେ ଗୋଟିଏ ବସ୍ତୁ ସହିତ ଆଉ ଗୋଟିଏ ଭାବର ତୁଳନା କରିଥାନ୍ତି ।

---

* ଯଥା ସ୍ତ୍ରୀଣାଂ ତଥା ବାଚ୍ୟଂ ସାଧୁତ୍ୱେ ଦୁର୍ଜ୍ଜନୋ ଜନଃ—
(ଭବଭୂତି—ଉତ୍ତର ରାମଚରିତ)
କିମ୍ବା—
ନାରୀ ଆଉ ବାଣୀ ଦୁହିଁଙ୍କର ସାଧୁପଣ
ନ ମାନ୍ତି ଜହନ୍ତି ସଦା ସକଳ ଦୁର୍ଜନ ।
(ଭକ୍ତକବି ମଧୁସୂଦନଙ୍କ ଦ୍ୱାରା ଅନୂଦିତ—ଭବଭୂତଙ୍କର ଉତ୍ତର ରାମଚରିତରୁ ସଂଗୃହୀତ)

ସେହିପରି ରାଧାନାଥଙ୍କର ଉପମା ପ୍ରୟୋଗ ପ୍ରଣାଳୀରେ ଅନେକସ୍ଥ ଏପରି ସ୍ୱତନ୍ତ୍ର ଅବଲମ୍ବନ ଦେଖାଯାଏ †

---

† ୧. ଦୁଇ ପାତ୍ର ମଧ୍ୟେ ଯଥା ଦ୍ରବ୍ୟର ବାହନ
ରାମଙ୍କ ବିରହ ଶୋକ ଅଟଇ ତେସନ ।

୨. ହୃଦ-କୁସୁମ-ଶୋଷୀ ଦୀର୍ଘ ଦାରୁଣ
ଶୋକ ଦହୁଛି ଦେହ କ୍ଷଣକୁ କ୍ଷଣ ।
ଶରଦର ପ୍ରଖର ରୌଦ୍ର ଯେସନ
କେତକୀ-ଗର୍ଭ-ପତ୍ରେ କରେ ଶୋଷଣ ।

୩. ପ୍ରବଳ ଜଳ ସ୍ରୋତ ବନ୍ଧ ପ୍ରଖରେ
ଭାଙ୍ଗି ବାଲୁକା ସେତୁ ତରେ ସାଗରେ,
ତେସନେ ଧୃତି ଚେଷ୍ଟା ବିଫଳ କରି
ଘୋର ଶୋକ ହୃଦୟେ ଯାଏ ପ୍ରସରି ।
(ଏହି ଉଦ୍ଧୃତି ଗୁଡ଼ିକ ଭକ୍ତକବି ମଧୁସୂଦନ ରାଓଙ୍କ ଦ୍ୱାରା ଅନୁବାଦିତ ଭବଭୂତିଙ୍କର ଉତ୍ତର ରାମଚରିତର ଅଂଶ ବିଶେଷ—ଦ୍ରଷ୍ଟବ୍ୟ ମଧୁସୂଦନ ଗ୍ରନ୍ଥାବଳୀ ( ଗ୍ରନ୍ଥମନ୍ଦିର ସଂସ୍କରଣ ୧୯୬୫ ) ପୃଷ୍ଠା ୩୪୯, ୩୫୦, ୩୬୨ । )

୪. ପାପ ଠାରୁ ଆହା ପାଷାଣ୍ଡର ପୁଣ୍ୟ ଶତଗୁଣେ ଭୟଙ୍କର
ତିକ୍ତ ଠାରୁ ଯେସନେ କଣ୍ଟୁ ଶତଗୁଣେ ମାଧୁରୀ ନମ୍ର ଫଳର

୫. କି ଅଛି ଜଗତେ ସ୍ନେହମୟ ପିତା ସ୍ନେହ ସଙ୍ଗେ ହେବ ଲକ୍ଷ୍ୟ ?
ପିତୃ ସ୍ନେହ ସଙ୍ଗେ ତୁଳା ଲଭିବାକୁ କେବଳ ସିନ୍ଧୁ ସେ ଶକ୍ୟ
ଅଗାଧ ଗମ୍ଭୀର ପିତୃ ସ୍ନେହ ଦେବ, ଅଗାଧ ଯେସନ ସିନ୍ଧୁ,
ସନ୍ତାନ-ବୃଦ୍ଧିରେ ପିତୃ ସ୍ନେହ ବଢ଼େ ସିନ୍ଧୁ ଦେଖି ପୂର୍ଣ୍ଣ ଇନ୍ଦୁ
( ଏହି ଉଦ୍ଧୃତି ଗୁଡ଼ିକ ବସ୍ତୁ ଓ ଭାବନିଷ୍ଠା ଉପମାର ଗୋଟିଏ ଗୋଟିଏ ନମୁନା —

ରାଧାନାଥ ଗ୍ରନ୍ଥାବଳୀ ( ୧୯୬୫ ) ଅନ୍ତର୍ଗତ ପାର୍ବତୀ କାବ୍ୟରୁ ସଂଗୃହୀତ ପୃଷ୍ଠା ୧୧୩, ୧୨୩—ପୁସ୍ତକ ଭଣ୍ଡାର-ବ୍ରହ୍ମପୁର-ପ୍ରକାଶିତ )

ପାଞ୍ଚ ରାଧାନାଥ, ଭବଭୂତିଙ୍କ ଠାରେ ଆପଣା ଦୃଷ୍ଟିକୋଣର ପ୍ରତିବିମ୍ବ ଦେଖିଛନ୍ତି । ପ୍ରଥମରୁ ଯେ ଯେ, ଭବଭୂତିଙ୍କ ଜୀବନଧର୍ମ ଅନୁଯାୟୀ ଆପଣାର ଜୀବନ-ଜିଜ୍ଞାସାକୁ ରୂପ ଦେଇଛନ୍ତି ତାହା ନୁହେଁ; ଜୀବନର ଦୃଷ୍ଟିକୋଣ ବ୍ୟକ୍ତିର ନିଜସ୍ୱ; ସ୍ୱଭାବ ଓ ସ୍ୱଧର୍ମ ପରି, ତାହା ଆପଣାଛାଏଁ ଗଢ଼ି ହୋଇଯାଏ, ରାଧାନାଥଙ୍କ ଠାରେ ତାହାହିଁ ହୋଇଛି । ରାଧାନାଥଙ୍କର ପ୍ରବୀଣ ମନୀଷା, ଜୀବନର ଅପରାହ୍ନରେ ଯେତେବେଳେ ଆପଣାକୁ ବିଶ୍ଳେଷଣ କରିଛି ସେତେବେଳେ ଅଭିଜ୍ଞାନରୁ ବୁଝିଛି ଯେ, ଭବଭୂତିଙ୍କର ମନ ସହିତ ତାଙ୍କର ମେଳ ଯଥେଷ୍ଟ । ଜ୍ଞାନର ଚରିଭୂଇଁରେ ବୁଲି ବୁଲି ପୂର୍ବସୂରି ଭବଭୂତିଙ୍କର ଜୀବନ-ଦର୍ଶନ ସହିତ ରାଧାନାଥଙ୍କର ସାକ୍ଷାତ ହୋଇଛି । ସେ ଆତ୍ମ ବିଶ୍ଳେଷଣ କାଳ ଅବସରରେ ଭବଭୂତିଙ୍କ ଜୀବନ-ଦର୍ଶନର ସାଦୃଶ୍ୟ ଆପଣା ଠାରେ ଦେଖି ପାରିଛନ୍ତି । ପ୍ରଭାବିତ ହୋଇ ଯେ ଭବଭୂତିଙ୍କର ଦୃଷ୍ଟିଭଙ୍ଗୀ, ରାଧାନାଥ ଜୀବନରେ ପୋଷଣ କରିଛନ୍ତି ତାହା ନୁହେଁ ।

ଭବଭୂତି, ତାଙ୍କର ନିକଟବର୍ତ୍ତୀ ବୋଧ ହୋଇଛନ୍ତି ଜୟଦେବ ହୋଇ-ନାହାନ୍ତି । କାରଣ ମାଧୁର୍ଯ୍ୟ ଓ ଆନନ୍ଦ ଦର୍ଶନ ତ ଜୟଦେବଙ୍କର ସ୍ୱ-ଧର୍ମ । କିନ୍ତୁ ରାଧାନାଥୀ ଦର୍ଶନରେ କାରୁଣ୍ୟ ଯେ ଏକ ସର୍ବବ୍ୟାପୀ ଚେତନା; ତେଣୁ ବ୍ୟବଧାନ କେତେ !

୬. ରାଧାନାଥଙ୍କର କବିତା ହେଉଛି, ମାନବ ଜୀବନର ଭାଷ୍ୟ । ଖୁବ୍ ତନ୍ମୟ ଓ ନିର୍ବିକାର ଦୃଷ୍ଟି ଦେଇ ସେ ମଣିଷକୁ ଦେଖିଛନ୍ତି । ଜୀବନର ଆଲୁଅ ଓ ଅନ୍ଧାର ପକ୍ଷକୁ ସ୍ୱୀକାର କରିଛନ୍ତି । ପୃଥିବୀର ସବୁଜ ପ୍ରାନ୍ତର ତାଙ୍କୁ ସ୍ୱପ୍ନାଚ୍ଛନ୍ନ କରିଛି । ପୁଣି ମାଟିର ଧୂସର ଦିଗନ୍ତ ତାଙ୍କୁ କରିଛି ଆବେଗ ଅଧୀର ଓ ଭାବମଗ୍ନ । ଆକାଶର ଅନନ୍ତ ବ୍ୟାପ୍ତି ଓ ଅଖଣ୍ଡ ଶୂନ୍ୟତାକୁ ସେ ସମ୍ଭୋଗ କରିଛନ୍ତି, ନୀଳିମାରେ ଆପଣାର ଅଙ୍ଗରାଗକୁ ମଧ୍ୟ ଧୋଇ ଦେଇଛନ୍ତି । ତେଣୁ କୁହାଯାଇ ପାରେ ଯେ ରାଧାନାଥ ତାଙ୍କ କବିତାରେ ପ୍ରକୃତିର ଫୁଲ ତୋଳିଛନ୍ତି ଜୀବନର ଫୁଲ କଳିଛନ୍ତି । ତାଙ୍କ କବିତା ହେଉଛି ମାଟିରେ ଖୋଲା ଏକ ନିର୍ମଳ ଆକାଶ । ଏହାର ପୁଣି ଦୁଇଟି ଦିଗ, ଗୋଟିଏ ହେଉଛି ଜୀବନର ବାସ୍ତବତା ଅନ୍ୟଟି ହେଉଛି ପ୍ରକୃତିର ରମଣୀୟତା । କବିଙ୍କର କାବ୍ୟ-ଦର୍ଶନ, ଜୀବନ ଓ ପ୍ରକୃତିର ବିବିଧ ଭାବପକ୍ଷକୁ ନେଇ ପରିଗଠିତ । ଜୀବନର ଦୁଃଖ, ପାପ, ନୀତି-ବିଚ୍ୟୁତି ଓ ଅପରାଧର କାବ୍ୟ-ଲିପି ସେ ଅଙ୍କନ କରିଛନ୍ତି । ଜୀବନରେ ଯାହା

ସତ୍ୟ ଏବଂ ଯାହା ଜୀବ-ଧର୍ମୀ-ସମ୍ଭାବନା କିମ୍ବା ଅପ୍ରିୟ ବାସ୍ତବତା ରୂପେ ପ୍ରତିଭାତ ତାର ସେ ହେଉଛନ୍ତି କାବ୍ୟକାର ।

୮. ବାସ୍ତବତାର ଆକର୍ଷଣରୁ ତାଙ୍କ କାବ୍ୟ-ଦର୍ଶନର ଉଦ୍‌ଭବ, ସେଇଥିରେ ତାର ପରିପୂର୍ଣ୍ଣ ସଂସ୍କାର କିନ୍ତୁ ଏକ ନୈତିକ ଆଦର୍ଶର ଇଂଗିତରେ ତାହାର ପରିସମାପ୍ତି । କବି ବୃନ୍ଦାବନର ଜୀବନର ନଗ୍ନବାସ୍ତବତାକୁ ଉପଲବ୍ଧି କରିଛନ୍ତି; ଅନ୍ଧାରରେ ବୁଡ଼ି ରହିଥିବା ଜୀବନକୁ ଉଠାଇ ଆଲୋକର ଝଲକା ଆଡ଼କୁ ଘେନିଯାଇଛନ୍ତି । ଏଇ ଆଲୋକର ଜଗତ ହେଉଛି, ନୀତିର ଜଗତ । ନଗ୍ନ ମାନବିକ ସତ୍ୟର କାବ୍ୟିକ ଅଭିବ୍ୟକ୍ତିରେ କବି ଖୁବ୍ ନିର୍ଭୀକ ମାତ୍ର ଏହାର ଅନ୍ତରାଳରେ ଅଛି ଜଣେ ନୀତିମନା ସମାଜଚେତା କବି ମନ । ଗଙ୍ଗେଶ୍ୱରଙ୍କର ଅପକର୍ମ ଅସାମାଜିକ ହେଲେ ବି ଏହା ଏକ ନଗ୍ନ ବାସ୍ତବତା କିନ୍ତୁ ଗଙ୍ଗେଶ୍ୱରଙ୍କ ମରଣ-ଦଣ୍ଡ ରୂପକ କରୁଣ ପରିଣତିରେ ନିହିତ ଏକ ନୈତିକ ଇଂଗିତ—ପାପୀର ପ୍ରାୟଶ୍ଚିତ୍ତ ତା'ର ଅପମୃତ୍ୟୁରେ । ନନ୍ଦିକା ପାଇଛି ଉପଯୁକ୍ତ ଶାସ୍ତି—ତାର ଉଚ୍ଛୃଙ୍ଖଳ ପ୍ରେମବାସନା ପାଇଁ । ସାମାଜିକ ନ୍ୟାୟ ବିଚାରରେ ସେ ଭୋଗୀ କି ନ ଭୋଗୀ, ନୈତିକ ନ୍ୟାୟର ନିର୍ଦ୍ଦେଶ ତାକୁ ଲାଗୁ ହୋଇଛି—ସେ ଆତ୍ମ-ମୃତ୍ୟୁର ପରିଣାମ ଭୋଗ କରିଛି । ଏହା କଣ ସୂଚନା ଦିଏ ନାହିଁ କି ଯେ ରାଧାନାଥଙ୍କ କାବ୍ୟସାହିତ୍ୟରେ ଯେତେ ପାପ ବା କଳଙ୍କର କଳା-ଛବି ଥିଲେ ବି ସେମାନଙ୍କର ଅନ୍ତରାଳରେ ଏକନିଷ୍ଠ ନୈତିକ ଆଦର୍ଶ ବିଦ୍ୟମାନ ? ଏଇଥିଲାଗି ରାଧାନାଥଙ୍କର କାବ୍ୟ-ଦର୍ଶନ, ବାହ୍ୟତଃ ରୋମାଣ୍ଟିକ ଉଚ୍ଛ୍ୱାସର ନିର୍ବାଧ ଉଚ୍ଚାରଣ ପରି ଜଣା ପଡୁଥିଲେ ମଧ୍ୟ ଏହାର ଅନ୍ତରାଳରେ କ୍ଲାସିକ-ମନସ୍କତାର ସମାବେଶ ବେଶ୍ ଲକ୍ଷଣୀୟ । ତେଣୁ ରାଧାନାଥଙ୍କର କବିତା ରୋମାଣ୍ଟିକ ହୋଇ ମଧ୍ୟ କ୍ଲାସିକ-ସୌନ୍ଦର୍ଯ୍ୟରେ ସିକ୍ତ—ଏହା ହିଁ ତାଙ୍କ କାବ୍ୟ-ଦର୍ଶନର ଅସାଧାରଣତ୍ୱର ଏକ ନମୁନା ।

୯. ଜୀବନପରି ରାଧାନାଥଙ୍କର ପ୍ରକୃତି ଚର୍ଚ୍ଚା ମଧ୍ୟ ବାସ୍ତବ । ପ୍ରକୃତି ଭିତରେ ସେ ଜୀବନକୁ ଦେଖିଛନ୍ତି । ଜୀବନର ବୈଚିତ୍ର୍ୟ ବୋଧ ମଧ୍ୟ ସେ ପ୍ରକୃତି-ଠାରେ ଲକ୍ଷ୍ୟ କରିଛନ୍ତି । ପ୍ରକୃତି ଓ ଜୀବନ ଏକାକାର ହୋଇ ଯାଇଛନ୍ତି ତାଙ୍କ ଲେଖନୀରେ । ରାଧାନାଥଙ୍କର କବିଦୃଷ୍ଟି ଯେଉଁ ମାଟି ବା ପଥର ଉପରେ ପଡ଼ିଛି, ସେଠି ଖେଳିଯାଇଛି ଏକ ଅପୂର୍ବ ସ୍ନାୟୁବିକ ଶିହରଣ । ସେମାନେ ମୂକ, ତଥାପି ତାଙ୍କଠାରେ ଯେଉଁ ବାକ୍-ଶକ୍ତିର ସ୍ଫୁରଣ ଘଟିଛି, ତାହାରି ବଳରେ ସେମାନେ

ଜୀବନର ଶାଶ୍ୱତ ଦର୍ଶନର କିଛି ସଂଦେଶ ବିତରଣ କରିଛନ୍ତି । * ଭଗ୍ନ ଦୁର୍ଗ, ଜରାଜର୍ଜର ଦେଉଳ, ଶୈବାଳ ଅରଣ୍ୟ—ଏମାନେ ଭଙ୍ଗୁରତାର ଦର୍ଶନ ବାଣ୍ଟିଛନ୍ତି । ତାଙ୍କଠାରେ କେଉଁ ଶକ୍ତିର ସଂଗ୍ଯ଼ର ଘଟିଛି ? ଭାବିଲେ ମନେହୁଏ ନାହିଁକି—ରାଧାନାଥଙ୍କର କାବ୍ୟ-ଦର୍ଶନରେ ଜୀବନ ଓ ପ୍ରକୃତିର ସତ୍ତା ଅଭିନ୍ନ !

୧୦. ରାଧାନାଥଙ୍କ ଆଖିର ପରିଧି, ଆମ ସାହିତ୍ୟର ଚଳପଥର ସୀମିତ ଚୌହଦୀକୁ ଡେଇଁ ଅପହୁଞ୍ଚ ଦିଗନ୍ତ ଆଡ଼କୁ ମାଡ଼ି ଯାଇଛି । ବିଶ୍ୱର ଆକାଶକୁ ଆଣି ସେ ଉତ୍କଳର ସୀମା ସରହଦ ଭିତରେ ମିଶେଇ ଦେଇଛନ୍ତି । ଗ୍ରୀସ୍, ରୋମ ଇତ୍ୟାଦି କାହିଁ କେତେ ପାଶ୍ଚାତ୍ୟ ଭୂଖଣ୍ଡ ଓଡ଼ିଶାର ଗ୍ରାମ ଗ୍ରାମ ପଲ୍ଲୀ ପରି ଆମର ଆଖି ଆଗରେ ନାଚି ଉଠିଛନ୍ତି, । ସେହି କେନ୍ଦ୍ର ନହିଁନ୍ତି, ଏହା ହୋଇଛି ବିସ୍ତୃତ ଅଧ୍ୟୟନର ଫଳ । କିନ୍ତୁ ଅଧ୍ୟୟନ ଥିଲେ ସମସ୍ତେ କବି ହୋଇ ଯାଆନ୍ତି ନାହିଁ । କାରଣ, 'ବିଦ୍ୟାଭ୍ୟାସରେ କବିତା ଆସେ ନାହିଁ, ପାଣ୍ଡିତ୍ୟରୁ ତାହାର ଉତ୍ପତ୍ତି ନୁହେ । ତାହା ହୃଦୟର ଏକ ସ୍ୱତନ୍ତ୍ର ବୃତ୍ତି ।' †

ହୋଇପାରେ, ରାଧାନାଥୀ ସାହିତ୍ୟ, ଅନୁକୃତି ଓ ଆହରଣରେ ବିପୁଳ ସଂପଦ । ତା'ବୋଲି ରାଧାନାଥଙ୍କ ପ୍ରତିଭା ଯେ ଗୌଣ, ଏପରି କହିବା ସଙ୍ଗତ ନୁହେଁ । ଏହି ମତବାଦର ଉତ୍ତରରେ ପଣ୍ଡିତ ନୀଳକଂଠଙ୍କର ଯୁକ୍ତି ହେଲା, 'କେତେ ଟୁକୁଡ଼ାଏ ମୃତ ଜୀବଙ୍କ କଙ୍କାଳର ଅସ୍ଥି ସଂଗ୍ରହ କରି ଗୋଟିଏ ଅଭିନବ ଜୀବ ସୃଷ୍ଟି କରିବା ଯେରୂପ କଠିନ, ଅନ୍ୟାନ୍ୟ କାବ୍ୟରୁ ଭାବ ସଂଗ୍ରହ କରି ଗୋଟିଏ ନବୀନ କାବ୍ୟ ପ୍ରଣୟନ କରିବା ମଧ୍ୟ ତଦ୍ରୂପ ଅତ୍ୟନ୍ତ ଦୁରୂହ । ଏପରି ଅନୁକରଣରେ ଟେଣ୍ଡେ ବିସ୍ତର କରି ବସିଲେ ପୃଥିବୀ ବିଖ୍ୟାତ ମିଲ୍‌ଟନ କିମ୍ବା

---

* ଭଗ୍ନ ଦୁର୍ଗ, ଜରାଜର୍ଜର ଦେଉଳ
ଶୈବାଳ ଅରଣ୍ୟ ଲତା-ଗୁଳ୍ମକୁଳ
ମୂର୍ତ୍ତିମନ୍ତ ହୋଇ ଭବ ଭଙ୍ଗୁରତା
ପ୍ରତିଧ୍ୱନି ଛଳେ କହେ ଯହିଁ କଥା ।
( ଚିଲିକା—ରାଧାନାଥ ଗ୍ରନ୍ଥାବଳୀ (୧୯୭୫) ନୂତନ ସଂସ୍କରଣ, ବ୍ରହ୍ମପୁର
ପୃଷ୍ଠା—୧୩୭ )

† ନୀଳକଂଠ ଦାସ—ଓଡ଼ିଆ ଭାଷା ଓ ସାହିତ୍ୟ (୧୯୫୪) ପୃଷ୍ଠା—୨୬୧, କଟକ ।

ସେକ୍ସପିଅର ମଧ୍ୟ ଗୌରବ ଚ୍ୟୁତ ହେବେ ।' * ଏହାହିଁ ହେଉଛି ପ୍ରତିଭା ବିଚାରର ଯଥାର୍ଥ ଦୃଷ୍ଟିକୋଣ; ରାଧାନାଥଙ୍କର ପ୍ରତିଭାର ମୌଳିକତାକୁ ଚିହ୍ନିବାର ଏକ ନିରପେକ୍ଷ ଅବଲମ୍ବନ ।

ତେଣୁ କୁହାଯାଇପାରେ ଯେ ଆପଣା କବିଶକ୍ତି ବଳରେ ଆହୃତ ଉପାଦାନକୁ ମୌଳିକ କରି ଗଢ଼ି ତୋଳିବା ହେଉଛି ରାଧାନାଥୀ କାବ୍ୟ-ଦର୍ଶନର ବୈଶିଷ୍ଟ୍ୟ । ଏଇ ଲକ୍ଷଣର ସୁରକ୍ଷାଲାଗି ରାଧାନାଥ, ସତତ ଯତ୍ନଶୀଳ; ଏବଂ ଏହାର ସଫଳ ବିନ୍ୟାସ ପାଇଁ ଓଡ଼ିଆ କାବ୍ୟ-ସାହିତ୍ୟରେ ସେ ଅଧିନାୟକ ।

୧୧. ରାଧାନାଥଙ୍କ ଅବଦାନରୁ ଆମର ସାହିତ୍ୟ ହେଲା ଅମର ମୁଖର । କାବ୍ୟରେ ନୂତନ ବିଷୟ-ବସ୍ତୁର ବିନିଯୋଗ ଘଟିଲା । ଆମର କାବ୍ୟ-ପରମ୍ପରାରେ ପ୍ରେମଭିତ୍ତିକ କଥା-ବସ୍ତୁର ପ୍ରାଧାନ୍ୟ ଥିଲା । ସ୍ୱକୀୟା କିମ୍ବା ପରକୀୟା ପ୍ରେମଚର୍ଯ୍ୟା ପ୍ରତି କବିମାନଙ୍କର ନଜର ଥିଲା ବେଶୀ । ବୈଷ୍ଣବ କବିତାମାନଙ୍କରେ ପରକୀୟା ପ୍ରେମକଥାକୁ ଧର୍ମ ବା ଇଷ୍ଟ ଭାବନାର ପ୍ରଲେପରେ ଶୁଚିମନ୍ତ କରି ଦିଆଯାଇଥିଲା । ପୂର୍ବରାଗ, ପ୍ରଣୟ, ସମ୍ଭୋଗ, ବିରହ-ମିଳନ ଇତ୍ୟାଦିର ସୋପାନ ଦେଇଁ ପ୍ରେମକଥାର ଧାରାବାହିକ ଗତି ପ୍ରାଚୀନ କାବ୍ୟ-କବିତାମାନଙ୍କରେ ପରିଲକ୍ଷିତ ହେଉଥିଲା । ପ୍ରେମ ଯେ ମଣିଷର ଏକ ସ୍ୱାଭାବିକ ଭାବ ବିଳାସ; ବୈଚିତ୍ର୍ୟରେ ଏହାର ସୌନ୍ଦର୍ଯ୍ୟ ନିହିତ—ପ୍ରାଚୀନ କବି ଏଇ ଦର୍ଶନର ସୌନ୍ଦର୍ଯ୍ୟମୟ ଦିଗଟିକୁ ଭୁଲି ନଥିଲା ।

ପ୍ରାଚୀନ କବି ଥିଲେ ରତିବିଳାସୀ । ଉପେନ୍ଦ୍ରଭଞ୍ଜଙ୍କ ପରି ଶୃଙ୍ଗାରୀ କବିଗଣଙ୍କର ରତି-ଜିଜ୍ଞାସାରେ ଦେହଜ ସମ୍ଭୋଗର ପରିଚର୍ଯ୍ୟାକୁ ସ୍ୱୀକୃତି ଦିଆଯାଇ-ଥିଲା । ବୈଷ୍ଣବ କବିଗଣଙ୍କର ଜିଜ୍ଞାସାରେ ରତିର ଦର୍ଶନ; ଆତ୍ମାସହ ଆତ୍ମାର ରମଣକୁ ବୁଝାଉଥିଲା । ଏଠି ଦେହ ଥିଲା ଆତ୍ମାର ଆଧାର । କିନ୍ତୁ ଦେହକୁ ମୁଖ୍ୟ ସ୍ଥାନ ମିଳିନଥିଲା । ଭୋଗର ଯେଉଁ ପ୍ରାପ୍ତି ଏଠି ଘଟିଥିଲା ତାହା ହେଉଛି ସଂପୂର୍ଣ୍ଣତଃ ଭାବଗତ, ଇନ୍ଦ୍ରିୟ-ସୁଖଗତ ନୁହେ । ଭଞ୍ଜୀୟ କାବ୍ୟ ଭାବନାରେ ଯେଉଁ ରତିର ଉଲ୍ଲେଖ ହୋଇଥିଲା, ତାହା ପ୍ରେମ ସଂପର୍କୀୟ ମାନବିକ ଲାଳସାର ବିଭିନ୍ନ ଦିଗ ମଧ୍ୟରୁ କେବଳ ଦେହଜକ୍ଷୁଧା ତୃପ୍ତିର ଆବଶ୍ୟକତାଟିକୁ ଦୃଷ୍ଟି ଦେଇଥିଲା ।

---

* ନୀଳକଂଠ ଦାସ— ଓଡ଼ିଆ ଭାଷା ଓ ସାହିତ୍ୟ (୧୯୫୪) ପୃଷ୍ଠା ୧୫୭, କଟକ ।

ଏଥିରୁ ମାନବିକ ପ୍ରେମ ଜିଜ୍ଞାସାର ବାସ୍ତବତାର ଅଗ୍ରଗ ମିଳୁଥିଲେ ବି ତାହା ଥିଲା ଅଗିଂକ । ବୈଷ୍ଣବ କବି ପ୍ରେମର ଅତୀନ୍ଦ୍ରିୟ ଦିଗଟିକୁ ଚାହିଁଲେ; ତାହାର ସ୍ୱରୂପ ତ ବାସ୍ତବୋତ୍ତର ।

୧୨. ରାଧାନାଥଙ୍କର କାବ୍ୟ-ଦର୍ଶନରେ ମାନବୀୟ ପ୍ରୀତିର ଗୌରବ କୀର୍ତ୍ତିତ ହେଲା । ରତି ଅପେକ୍ଷା ପ୍ରୀତି ପାଇଲା ଏଠି କାବ୍ୟର ଅଧିକାର । ବାସ୍ତବ ଜୀବନରେ ଯାହା ସବୁ ଦିଗରୁ ସତ୍ୟ ଓ ସମ୍ଭାବ୍ୟ, ତାହାର ରୂପ ଲେଖିଲେ କବି ରାଧାନାଥ । ତାଙ୍କ କାବ୍ୟ ହେଲା ବାସ୍ତବଜୀବନର ପୂର୍ଣ୍ଣାଙ୍ଗ ପ୍ରଣୟ କାହାଣୀ । ଆମର ପାରମ୍ପରିକ ପ୍ରେମ ଜିଜ୍ଞାସାର ବ୍ୟତିକ୍ରମ ସ୍ୱରୂପ ରାଧାନାଥଙ୍କର କାବ୍ୟ-କୃତିରେ କେଦାର-ଗୌରୀଙ୍କ ପ୍ରଣୟ ଓ ତାର ପରିଣତି, ସୂର୍ଯ୍ୟଦେବଙ୍କର ଲାଳସାଳିପ୍ତ ପ୍ରେମ-ପ୍ରାର୍ଥନା, ନନ୍ଦକେଶ୍ୱରର ଗୁପ୍ତ ପ୍ରଣୟାଭିସାର ଓ ତାର ଦେଶ-ଦ୍ରୋହ, ଜାତିଦ୍ରୋହ, ପିତୃଦ୍ରୋହ ଆଚରଣ ଏବଂ ଉଷାର ସ୍ନେହଶୋଭିତ କଠୋରତା କିମ୍ବା ଗଙ୍ଗେଶ୍ୱରଙ୍କର କନ୍ୟା-ସମ୍ଭୋଗ ଲାଳସା, ଯଯାତି-ବିମଳା-ଲଳିତାଙ୍କର ଲୁବ୍ଧଛପା ସମ୍ଭୋଗ ବୈଷ୍ଣର, ଇତ୍ୟାଦି ନିଷ୍ଠିତ ଭାବେ, ପ୍ରେମ ସଂପର୍କରେ କିଛି ନୂତନତା ଓ ବୈଶିଷ୍ଟ୍ୟର ସନ୍ଧାନ ଦେଲା । ତନ୍ମଧ୍ୟରୁ ମଧ୍ୟ ବାସ୍ତବତାର ଆଲୁଅ ଓ ଅନ୍ଧାର ଉଭୟ ପକ୍ଷର ପରିଚୟ ମିଳୁଥିଲା । ତେଣୁ ରାଧାନାଥଙ୍କ କାବ୍ୟ ହେଲା ବାସ୍ତବତାଶ୍ରୟୀ; ବାସ୍ତବତାର ପ୍ରବାହରେ ପହଁରି ପହଁରି ଏହା ପରିଣତିରେ ବାସ୍ତବୋତ୍ତର ଚେତନାର ସଂକେତ ଦେଇଛି ସିନା, ମୂଳରୁ ଆଦର୍ଶ ଶିଖରରେ ଆଶ୍ରୟ ନେଇ ନାହିଁ । ଏହାହିଁ ହେଉଛି ରାଧାନାଥଙ୍କର କାବ୍ୟ-ଦର୍ଶନର ଅନ୍ୟ ଏକ ନିଦର୍ଶନ ।

୧୩. ଜୀବନରେ ପ୍ରୀତିର ଫୁଲ ତୋଳିତୋଳି କବି ଏଇ ପ୍ରୀତିଭରା ମନଟିକୁ ଦେଶ ଓ ଜାତି ଆଡକୁ ଖୋଲି ଦେଇଛନ୍ତି । ରାଧାନାଥ ତାଙ୍କ କବିତାରେ ଜାତିର ବିଭବକୁ ଆବିଷ୍କାର କରିଛନ୍ତି; ମାଟିର ପ୍ରତ୍ୟେକ ସଂପଦ ସ୍ୱମହିମାରେ ମୂର୍ତ୍ତିମାନ ହୋଇ ଉଠିଛନ୍ତି । ଓଡ଼ିଶାର ଭୌଗୋଳିକ ଅବସ୍ଥିତି ଭିତରେ ଥିବା ପ୍ରତିଟି ଅଜଣାଅଶୁଣା ବସ୍ତୁଖଣ୍ଡକୁ ସେ ତାର ମହିମା ସଚେତନ କରାଇ ଦେଇଛନ୍ତି । ମାଟିକୁ ମର୍ଯ୍ୟାଦା ଦେଇଛନ୍ତି—କିମ୍ବଦନ୍ତୀ ଓ ପୁରାଣ ପେଡ଼ି ଭିତରେ ଲୁଚି ରହିଥିବା ଗୌରବର ସ୍ମୃତି-ଚିହ୍ନକୁ ସେ ଖୋଜି ଆଣିଛନ୍ତି । ଯେଉଁଠି ମାଟିର ଗୌରବ ଅକଥିତ ହୋଇ ରହିଯାଇଛି ବୋଲି କବିଙ୍କର ହୃଦବୋଧ ହୋଇଛି, ସେଠି

ସେ ଖେଦ ପ୍ରକାଶ କରିଛନ୍ତି । † ଭାରତୀୟ ଆତ୍ମାର ବିଚ୍ୟୁତିକୁ କବି ସହ୍ୟପାରି ନାହାଁନ୍ତି । ଲୋକ ଜୀବନ କିମ୍ବା ଦେଶ ଜୀବନରେ ଯେଉଁଠି ସ୍ଖଳନ ବା ଗ୍ଳାନିର ନିଦର୍ଶନ ପାଇଛନ୍ତି, ସେଠି ସେ ସଚେତନତାର ଜାଗରଣ ପାଇଁ ଯତ୍ନ କରିଛନ୍ତି । ଜାତୀୟ ଭାବନାର ପ୍ରତିପୋଷଣ କ୍ଷମରେ କବିଙ୍କ ଚିତ୍ତରେ ଯେତେବେଳେ ମହାଭାରତୀୟ ଚେତନାର ସ୍ୱର ସ୍ଫୁରିତ ହୋଇଛି ତାହା ସେତେ ଉଗ୍ର ନ ହୋଇ କ୍ଷୀଣ ବା ପ୍ରଚ୍ଛନ୍ନ ହୋଇଯାଇଛି—ଯେପରି 'ଶିବାଜୀଙ୍କ ଉତ୍ସାହ ବାକ୍ୟ'ରେ ଜାତୀୟ-ଉଦ୍‌ବୋଧନର ଉଚ୍ଚାରଣ । ତେଣୁ ଏହା ସ୍ପଷ୍ଟ ଯେ ରାଧାନାଥଙ୍କର କାବ୍ୟ-ଦର୍ଶନରେ ଜାତୀୟ ପ୍ରେମର ଯେଉଁ ଉଚ୍ଛ୍ୱାସ ଉଚ୍ଛଳି ଉଠିଛି, ତାହା ଉତ୍କଳୀୟତା ଓ ଭାରତୀୟତାର ସମନ୍ୱବୋଧରେ ଢ଼ଣା ଅଧିକେ ମଣ୍ଡିତ ।

୨୪. ରାଧାନାଥ ତାଙ୍କ କାବ୍ୟ ଚେତନାକରେ ସାଟାୟାର ଓ ଅମିତ୍ରାକ୍ଷର ଛନ୍ଦକୁ ଅନ୍ତର୍ଭୁକ୍ତ କରିଛନ୍ତି । ତାଙ୍କ କାବ୍ୟ-କଳା ଭିତରକୁ 'ସାଟାୟାର' ଆସିପାରିଛି, ଏବଂ ଏହା ଫଳରେ କବି ଆପଣା ମନର ଜିଜ୍ଞାସାକୁ ମୁକ୍ତ ଭାବେ ବ୍ୟକ୍ତ କରିବା ଲାଗି ସୁଯୋଗ ପାଇଛନ୍ତି ଏବଂ ସମାଜର ଗଠନ-ବ୍ୟବସ୍ଥା ଉପରେ ମତ-ଅମତର ପ୍ରଶ୍ନ ତୋଳି, ଆପଣା ଅଭିରୁଚିର ସଂଦେଶ ବାଢ଼ିଛନ୍ତି । ଅନୀତ ଓ ଅମାନବୀୟ ଅଭରଣର ଦୃଷ୍ଟାନ୍ତ ତାଙ୍କ ଦୃଷ୍ଟିକୁ ତୀକ୍ଷଣ ଓ ଶାଣିତ ପ୍ରଖର କରିଛି, ଭାଷାକୁ କରିଛି ବକ୍ରୋକ୍ତିପୂର୍ଣ୍ଣ । କବିଙ୍କର ଦାର୍ଶନିକ ବ୍ୟକ୍ତି-ସତ୍ତ୍ୱା ମଧ୍ୟ ଦର୍ପଣରେ ପ୍ରତିବିମ୍ବିତ ସମସାମୟିକ ସମାଜର ଚିତ୍ର ଏବଂ ସାମାଜିକ ଜୀବନର ବ୍ୟଙ୍ଗାତ୍ମକ ସମୀକ୍ଷା କବିତାରେ ଫୁଟି ଉଠିଛି । ଅତଏବ କବିଙ୍କର କାବ୍ୟ-ଦର୍ଶନରେ ଲୋକ-ଚରିତ୍ର ଲାଗି ନିର୍ଦ୍ଦିଷ୍ଟ ଅଭିମୁଖ୍ୟ ପୋଷିତ ହୋଇଛି ।

୨୫. କବି, ଜୀବନ ଓ ସମାଜକୁ ଗହନ ସ୍ତରରୁ ଦେଖୁଥିଲାବେଳେ ମଧ୍ୟ ଭାଗ୍ୟ ଓ ଭବିତବ୍ୟର ଅନନ୍ତ ଶକ୍ତିକୁ ବାରମ୍ବାର ସ୍ମରଣ କରିଛନ୍ତି । ରାଧାନାଥଙ୍କର କାବ୍ୟ-ଦର୍ଶନରେ ଭାଗ୍ୟ ପାଇଛି ଏକ ବିଶିଷ୍ଟ ଆସନ । କବି ବିଶ୍ୱାସ କରନ୍ତି,

---

† କ୍ଷୁଦ୍ର ଶିପ୍ରା-ସ୍ରୋତ ବିଖ୍ୟାତ ଜଗତେ
ମହାନଦୀ ନାମ ରହିଲା ଗୁପତେ !
ସୁରୂପା ଅଂଶୁପା ଲୋକେ ଅଗୋଚର
ପ୍ରକାଶିତ ହେଲା ଗୋଷ୍ପଦ-ପୁଷ୍କର !
( ଚିଲିକା—ରାଧାନାଥ ଗ୍ରନ୍ଥାବଳୀ ( ୧୯୬୫ ) ବ୍ରହ୍ମପୁର—ପୃଷ୍ଠା ୧୪୧ )

ବ୍ୟକ୍ତି ନୁହେଁ, ନିୟତି ହେଉଛି ଜୀବନର ଘଟଣାର ନିୟନ୍ତ୍ରା । ବ୍ୟକ୍ତିର ଦମ୍ଭ, ଅହଂକାର—ତାର ଭ୍ରୂକୁଂଚନ ଦୈବର କଟାକ୍ଷ ନିକଟରେ କିଛି ନୁହେଁ । ଜଗତରେ ଏପରି କୌଣସି ଶକ୍ତି ନାହିଁ ଯିଏ କି ଦୈବବିଧାନକୁ ମିଥ୍ୟା ବଳମାନ ହୋଇ ବଦଳେଇ ଦେଇପାରେ । ମଣିଷର ରୂପ ଗୁଣ ଯେତେ ଅକର୍ଷଣୀୟ ହେଉନା କାହିଁକି ତାହାର ପରିଣାମକୁ ଲଲାଟ ଲେଖନ ଓଲଟି ଯାଏ ନାହିଁ ।†

କବି ବୁଝିଛନ୍ତି ଯେ ଏହି ନିୟତିର ଅନ୍ୟ ରୂପ ହେଉଛି କାଳ । ଏହାର ସର୍ବଗ୍ରାସୀ ବଳ ପ୍ରତି କବି ଖୁବ୍ ସଚେତନ । ଏହି କାଳ, କି ଚକ୍ରବର୍ତ୍ତୀ ବୀର, କିବା ଜେତା-ବିଜେତା କିମ୍ବା ବୁଦ୍ଧିମାନ ବଳୀନ ଏବଂ ସାଧାରଣ ମନୁଷ୍ୟ—ସମସ୍ତଙ୍କୁ ସର୍ବଶେଷରେ ନାଶ କରେ । ଏକଥା ଜାଣି ସୁଦ୍ଧା କେଉଁ ଲୋଭର ପ୍ରଲୋଭନରେ କେଜାଣି ଲୋକେ ପରସ୍ପରରେ କଳହ ରଚନ୍ତି । ଏହା ସାଧାରଣରେ ହୃଦ୍‌ବୋଧ ନୁହେଁ, ଜଣେ ଦୃଢ଼ଚେତା ପ୍ରାଜ୍ଞ ବ୍ୟକ୍ତିର ହୃଦ୍‌ବୋଧ । ଏହି ତତ୍ତ୍ୱ ଜୀବନର ଏକ ସତ୍ୟ ଉପରେ କିନ୍ତୁ ଦର୍ଶନର ନିକଟବର୍ତ୍ତୀ । କବି ତାଙ୍କ କବିତାରେ ଦର୍ଶନସୁଲଭ ନାନା ତତ୍ତ୍ୱର ଉଲ୍ଲେଖ କରିଛନ୍ତି । ରାଧାନାଥଙ୍କର କବିତା ଜୀବନର ବାସ୍ତବତା ଓ କଳ୍ପନାର ରମଣୀୟତା ମଧ୍ୟରେ ଗତି କରି କରି ଦର୍ଶନର ସିଂହଦ୍ୱାରରେ ଉପନୀତ ହୋଇଛି । ଦର୍ଶନର ତାତ୍ତ୍ୱିକ ଭାବାବଳୀର ଉନ୍‌ମୋଚନ ମଧ୍ୟ ତାଙ୍କ କାବ୍ୟ-ଦର୍ଶନର ଅନ୍ୟ ଏକ ଦିଗନ୍ତ ।

---

† ୧. ରୂପ ଗୁଣ ବଳେ ନରକୁଳେ ଧନ୍ୟ ଥିଲେ ସକଳେ,
ମାତ୍ର ରୂପ-ଗୁଣ ଫଳେ କି ଲଲାଟ ଲେଖନ ଟଳେ ?
ବଳୀ ହୋଇ ଦୈବ ବିଧାନକୁ କିଏ କରିବ ଆନ ?
ମହାବଳୀ ଠାରୁ ବଳୀଅଟ ପୁଣି ଦୈବ ବିଧାନ ।
(ଉଷା—ରାଧାନାଥ ଗ୍ରନ୍ଥାବଳୀ (୧୯୭୫) ବ୍ରହ୍ମପୁର—ପୃଷ୍ଠା ୭୬)

୨. ଜନ୍ମ ମୃତ୍ୟୁ ଆଦି ଯାବତ ଘଟଣା ଘଟେ ସଂସାରେ
ସମସ୍ତ ଗ୍ରଥିତ କାଳ-ନିୟନ୍ତ୍ରିତ-ନିୟତି-ହାରେ ।
( ଉଷା—ରାଧାନାଥ ଗ୍ରନ୍ଥାବଳୀ—ପୃଷ୍ଠା ୯୦ )

୩. ଦୈବ ନ ଡ଼ରଇ ନର ଭ୍ରୂକୁଟିକି ।
( ଚନ୍ଦ୍ରଭାଗା—ରାଧାନାଥ ଗ୍ରନ୍ଥାବଳୀ—ପୃଷ୍ଠା ୧୪୬ )

୧୭. ରାଧାନାଥଙ୍କର କାବ୍ୟ-ଦର୍ଶନରେ ଧର୍ମ ଓ ଅଧର୍ମର ଜିଜ୍ଞାସା ଯେଉଁ ବସ୍ତୁର ବିବେଚନା ପ୍ରକାଶ ପାଇଥିଲା । କବିଙ୍କର ଦୃଢ଼ ବିଶ୍ୱାସ ଥିଲା ଯେ, ମଣିଷର ହୃଦୟ ଜୟ ଲାଗି ଧର୍ମ ହେଉଛି ଏକମାତ୍ର ଅସ୍ତ୍ର, ଏହା ଶତ୍ରୁକୁ ପ୍ରୀତିରେ ବାନ୍ଧେ, ମଣିଷକୁ ଦିଏ ଅଖଣ୍ଡ ବାହୁବଳ । ଅସ୍ତ୍ରର ବିଜୟ ଠାରୁ ଧର୍ମର ବିଜୟ ହିଁ ବଡ଼ । ଏଇ ଧର୍ମ ଅନାଗତ ସହି ନାହିଁ । ଏହି ଅହଂ ଦେର ହର୍ଶ ଜୀବନରେ ଥାଉ ବା ସମାଜରେ ଥାଉ, ଧର୍ମ ହିଁ ତାକୁ ନାଶ କରେ । ସମାଜରେ ଅହମିକାର ବାହ୍ୟ-ସ୍ଫୋଟରେ ମଣିଷ ଜୀବନ ବ୍ୟସ୍ତ । ସମସ୍ତେ 'ମୁଁ' କାର ଉଚ୍ଚାରଣରେ ମୁଖର । ଏଇ 'ମୁଁ' ଭାବରେ ଯେତେବେଳେ ବ୍ୟକ୍ତିର ଚିନ୍ତାଶକ୍ତି ପରିପୂର୍ଣ୍ଣ, ସେତେବେଳେ ସେ ଧର୍ମର ସର୍ବବ୍ୟାପୀ ଶକ୍ତିକୁ ବା ସ୍ୱୀକାର କରୁଛି କାହିଁ ?

ମଣିଷକୁ ବିପୁଳ ଶକ୍ତିର ଆଧାର ବୋଲି ଭାବି ଲୋକେ ମନୁଷ୍ୟର ଷୋଡଶୋପଚାର ପୂଜାରେ ଆତ୍ମନିୟୋଗ କରୁଛନ୍ତି; ମଣିଷ ପଛରେ ଭକ୍ତହୋଇ ମଣିଷକୁ ତୋଷୁଛନ୍ତି ସିନା; କିମ୍ବା ମନୁଷ୍ୟର ଅର୍ଚ୍ଚନା ଲାଗି କେତେ ଯତ୍ନରେ ପୁଷ୍ପ ଉପବନ ରଚନା କରୁଛନ୍ତି ସିନା—ଆତ୍ମତତ୍ତ୍ୱ-ଜ୍ଞାନ ସେବାରେ ମନ ବଳାଉ ନାହାନ୍ତି । ଏହା ମଣିଷ ସମାଜକୁ ଅସ୍ୱାସ୍ଥ୍ୟ ଓ ଅଜାଡ଼-ବ୍ୟାଧିଗ୍ରସ୍ତ କରୁଛି । ଧର୍ମ ପ୍ରତି ଶ୍ରଦ୍ଧା କମି ଯାଉଛି; ଫଳରେ ମଣିଷ ହେଉଛି କ୍ରମଶଃ ଅମାନବିକ ରକ୍ତୋଦ୍ଘୃଣର ଶରବ୍ୟ ।

ସାନବଡ଼ର ଭେଦ ଏଇ ମଣିଷର ଦୃଷ୍ଟି; ଧର୍ମ ନେତ୍ରରେ ସମସ୍ତେ ଏକ । ଏତେ ତତ୍ତ୍ୱ ଯେଉଁଠି ପ୍ରଚ୍ଛନ୍ନ, ତାହାର ଉପଲବ୍ଧି ପ୍ରତି ଅନୁରାଗୀ ନ ହୋଇ ମଣିଷ ହେଉଛି କ୍ଷଣସ୍ଥାୟୀ ଆକର୍ଷଣରେ ବଶ । ତେଣୁ କବିଙ୍କର ସନ୍ଦେଶ ହୋଇଛି, "ବଡ଼ ପଣେ ସିନା ଯେହୁ ତାକୁ ଗଣି, / ଯେଉଁ ବଡ ଧଣ ଦ୍ୱିଲୋକ ସାଧନୀ, / ସେହୁ ସିନା ବଡ଼ପଣ ଯହିଁ ଲାଗି / ଅନ୍ୟକର ବଳ୍-ଦାନ୍ତ ଯାଏ ଭାଙ୍ଗି. / ସେହୁ ବଡପଣେ ବଳାଅ ମତକି / କାଳ ନ ପାରିବ ପଶି ଯା କଟକି ।" †

ଏଇ ଅନ୍ତର୍ଜ୍ଞାନ ଭିତରେ କବିଙ୍କର ଶେଷ ସୂଚନା ହେଲା—"ଧର୍ମ ଏକ ପୋତ ଗଢ଼ିଛନ୍ତି ବିଧି / ତରିବାକୁ ଏହି ସଂସାର-ବାରିଧି / ଧର୍ମ ଏକା ସିନା ମହତ ପଣିଆ / ଆଉ ବଡ଼ପଣ ଅଢ଼େଇ ଦିନିଆ"– ଏହାହିଁ ହେଉଛି କବିଙ୍କର ଏକ ମୂଲ୍ୟବାନ ଦର୍ଶନ ।

---

† ଦରବାର—ରାଧାନାଥ ଗ୍ରନ୍ଥାବଳୀ ( ୧୯୭୫ ) ବ୍ରହ୍ମପୁର, ପୃ-୨୭୩ ।

୧୭. କବିଙ୍କର ଚେତନାରେ ଜୀବନର ସଙ୍ଗ ହେଉଛି, ମୃତ୍ୟୁର ସଙ୍ଗୀନ ସଚେତନତା । ଜୀବନ ଯଦି ଏକ ଚଳମାନ ସ୍ରୋତ ହୁଏ, ତାହାହେଲେ ଏହାର ଗତି ହେଉଛି ମୃତ୍ୟୁ ଆଡ଼କୁ । ଏହି ମର୍ତ୍ତ୍ୟବାସ; ଶୋକ-ଦୁଃଖ-ମୋହ ସଂକୁଳ । ବ୍ୟକ୍ତି-ଜୀବନ ଏଥିରେ ଅନ୍ଧ ହୋଇ ଦୁର୍ଗତି ଭୋଗ କରେ । ତେଣୁ ଜୀବନକୁ ସ୍ଥିର ବୋଲି ଭାବିବାରେ ଦୁଃଖ-ଅଛି; ଅବସାଦ ଓ ଅବସନ୍ନତା ପ୍ରଶ୍ରୟ ରହିଛି । ଏହା ଏକ ନୈରାଶ୍ୟବାଦୀ ଦର୍ଶନ ହୋଇପାରେ, କିନ୍ତୁ ଏହା ହିଁ ପୁଣି ଜୀବନ ସଂପର୍କରେ ଏକ ସତ୍ୟ ଅଭିବ୍ୟକ୍ତି । ରାଧାନାଥ, ଜୀବନର ଏହି ଅନ୍ଧାର ପ୍ରତି ଚିନ୍ତା କଲାବେଳେ ବାସ୍ତବତା ବିସ୍ମୃତ ହୋଇନାହାନ୍ତି, ବାସ୍ତବ ଜୀବନରେ ଉପଲବ୍ଧ ଆନନ୍ଦ-ନିରାନନ୍ଦର ସକଳ ଭାବ-ଭୂମି ତାଙ୍କ କାବ୍ୟ-କୃତିରେ ଉତ୍କୀର୍ଣ୍ଣ ହୋଇଛି । ତେଣୁ ରାଧାନାଥ ସଂପୂର୍ଣ୍ଣତଃ ନୈରାଶ୍ୟବାଦୀ ନୁହନ୍ତି କି ଆଦର୍ଶବାଦୀ ନୁହନ୍ତି—ସେ ଜଣେ ବାସ୍ତବବାଦୀ । ଏହି ବାସ୍ତବତାର ଦର୍ଶନ ଦେଉଛି ତାଙ୍କ କାବ୍ୟ-ଦର୍ଶନ ।

ଅତଏବ କୁହାଯାଇପାରେ ଯେ, ରାଧାନାଥଙ୍କର କାବ୍ୟ-ଦର୍ଶନରେ ଭୌତିକ ବା ଆଧିଭୌତିକ ଓ ଆଧ୍ୟାତ୍ମିକ ଚିନ୍ତନର ବିବିଧଧାରା ସମନ୍ୱିତ ହୋଇଯାଇଛି । ଉତ୍କୃଷ୍ଟ ସାହିତ୍ୟ ଏହି ଦୁଇଟିର ପରିଚର୍ଯ୍ୟା କରିଥାଏ । ପ୍ରଥମଟିରେ ( ଭୌତିକ ବା ଆଧିଭୌତିକ ) ପ୍ରତିଭାର ଆଧିକ୍ୟ ଏବଂ ଦ୍ୱିତୀୟଟିରେ ପ୍ରଜ୍ଞାର ଆଧିକ୍ୟ ଅନୁଭୂତ ହୁଏ । ଏହା ଦ୍ୱାରା ସାହିତ୍ୟ ବ୍ୟକ୍ତିକୁ ତୁଷ୍ଟ କରେ, ସମାଜକୁ ସନ୍ତୋଷ ଦିଏ ଏବଂ ଆତ୍ମିକ ଚିନ୍ତାକୁ ତୃପ୍ତି ଯୋଗାଏ । ପ୍ରତିଭା ଓ ପ୍ରଜ୍ଞାର ମିଳନ ଘଟିଲେ ସାହିତ୍ୟିକ ବା କବିର କାବ୍ୟ; ଚିରନ୍ତନତାର ଗୌରବ ପାଏ । ରାଧାନାଥ ସେହି ପର୍ଯ୍ୟାୟର କବି; ତାଙ୍କର ସୃଷ୍ଟି ଅଭିନବ ଓ ଚିରନ୍ତନ । 'ଦୃଷ୍ଟ ପୂର୍ବ ହୋଇ ଅଦୃଷ୍ଟ ପ୍ରତୀତି, ସୁନ୍ଦର ପଣର ଚିରନ୍ତନ ସ୍ଥିତି'—ଏହା କେବଳ ରାଧାନାଥଙ୍କର ସୌନ୍ଦର୍ଯ୍ୟ-ଜିଜ୍ଞାସାର ପରିଚାୟକ ନୁହେଁ, ତାଙ୍କର କାବ୍ୟ କୃତିର ମାନ ନିର୍ଦ୍ଧାରକ ମଧ୍ୟ । କାଳ କାଳକୁ ତାଙ୍କର ସୃଷ୍ଟି ହୋଇଛି, ପ୍ରେରଣା ଓ ପ୍ରତ୍ୟୟର ଭଣ୍ଡାର । ତେଣୁ କବି ରାଧାନାଥ ଜଣେ କ୍ଲାସିକ ସ୍ରଷ୍ଟା ନୁହନ୍ତି କି ?



# ସାଧାରଣ ନାମସୂଚୀ

## ଗ୍ରନ୍ଥ, ଗ୍ରନ୍ଥକାର ଓ ପତ୍ର-ପତ୍ରିକା ପ୍ରଭୃତି


ଅଲଂକାର ବୋଧୋଦୟ—୮୩
ଅବଧାନ ବଧୂ—୮୩
ଅବିନାଶ ଚନ୍ଦ୍ର—୪୦
ଅଭିମନ୍ୟୁ ସାମନ୍ତ ସିଂହାର—୫,୧୮
ଅଶ୍ୱିନୀକୁମାର ଘୋଷ—୩୭
ଆଗାମେମନନ୍—୪୧
ଆର୍ତ୍ତତ୍ରାଣ ନନ୍ଦ—୨
ଆଦର୍ଶ ପ୍ରଶ୍ନାବଳୀ (ଗଣିତ)— ୨୬, ୫୨, ୮୩
ଆଦର୍ଶ ପ୍ରଶ୍ନାବଳୀ (ସାହିତ୍ୟ)— ୨୬, ୫୬, ୮୩
ଆତ୍ମ କଥା—୬୦, ୭୧
ଆଟଲାଣ୍ଟାରେସ୍—୪୦
ଆର୍. ଜେ. ମାର୍ଟିନ—୯୯
ଆଲଫ୍ରେଡବଣ୍ଡ—୫୭
ଆସ୍କାଇଲସ—୪୨
ଇନ୍ଦ୍ରବଲ୍ଲଭ ଭଟ୍ଟାଚାର୍ଯ୍ୟ—୧୭
ଇନ୍ଦ୍ରଧନୁ—୬୦, ୮୯, ୯୦
ଉତ୍କଳ ଦୀପିକା—୧୮,୮୬,୮୯,୯୧
ଉତ୍କଳ ଦର୍ପଣ—୧୭, ୨୨
ଉତ୍କଳ ପ୍ରଭା—୬୦,୮୮
ଉତ୍କଳ ପ୍ରେସ୍—୧୨, ୮୪, ୬୭
ଉତ୍କଳ ପାଟୀ ଗଣିତ—୮୩
ଉତ୍କଳ ମଧୁପ—୮୯
ଉତ୍କଳ ରଚନା—୯,୨୬,୮୩
ଉତ୍କଳ ସଭା—୯୬
ଉଇଲସନ ମହାଶୟ—୪୦
ଉପେନ୍ଦ୍ର ଭଂଜ—୫,୧୮,୧୦୪,୧୧୨
ଉର୍ବଶୀ—୭୩
ଉମେଶ ଚନ୍ଦ୍ର ବସୁ—୮୩
ଉଷା—୩୮,୪୦,୫୮,୧୧୭
ଏକାଗ୍ରତା—୨୫
ଓଡ଼ିଆ ଓ ନବ ସମ୍ବାଦ—୩୩,୯୫
ଓଡ଼ିଆ ସ୍ୱତନ୍ତ୍ର ଭାଷା ନୟ—୧୪
ଓଡ଼ିଶା (ଧର୍ମାଳୟ)—୩୬
ଓଡ଼ିଶା ଇତିହାସ—୩୬, ୫୫
ଓଡ଼ିଶା ଇତିହାସ (ବସୁ)—୩୭
ଓଭିଡ୍—୫୦,୩୨,୩୬,୩୯
କନକ ମଂଜରୀ ଦେବୀ—୮୩
କପିଳ ସଂହିତା—୪୯
କପିଳେଶ୍ୱର ବିଦ୍ୟାଭୂଷଣ—୫୭
କବିତାବଳୀ ୧ମ—୧୪,୨୨,୨୪
କବିତାବଳୀ ୨ୟ—୨୩,୨୬,୮୩
କବିତାବଳୀ (ବଙ୍ଗଳା)—୨୧
କବିତା କଳାପ—୮୩
କବିକଳ୍ପ—୪୫
କାନ୍ତିଚନ୍ଦ୍ର ଭଟ୍ଟାଚାର୍ଯ୍ୟ—୧୪, ୧୫
କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ର— ୧୦୫
କାଳିଦାସ—୪୮,୪୯
କାଶୀରାମ ମହାଭାରତ (ବଙ୍ଗଳା)—୮
କାଳିଦାସ ସୂକ୍ତସ୍—୬୫

କେଦାର ଗୌରୀ—୨୯,୩୦,୩୯,୮୫
୧୧୧,୧୧୬
କେଶବଚନ୍ଦ୍ର ସେନ—୧୧
କେଶଙ୍ଗଙ୍ଗ—୩୬
କୃତ୍ତିବାସ ରାମାୟଣ (ବଙ୍ଗଳା)—୮
(ଡକ୍ଟର) କୃଷ୍ଣଚନ୍ଦ୍ର ପାଣିଗ୍ରାହୀ—୪୨
ଗଂଗାଧର ମେହେର—୧୦୩
ଗଂଗାଧର ଅଗ୍ନୃର୍ଫି—୧୧
ଗୌରୀଶଂକରରାୟ— ୨୫,୫୬,୮୨,
୮୯,
ଗୋପାଳ ବଲ୍ଲଭ ଦାସ—୮୯
ଗୋପବନ୍ଧୁ ଦାସ—୯୧
ଗୋବିନ୍ଦଚନ୍ଦ୍ର ପଟ୍ଟନାୟକ—୧୩,୫୬
୮୬,୯୩
ଗୋବିନ୍ଦଚନ୍ଦ୍ର ରଥ—୫୬,୮୩
ଗୋବିନ୍ଦ ବଲ୍ଲଭ ରାୟ—୬୧
ଚତୁର୍ଭୁଜ ପଟ୍ଟନାୟକ— ୫୬,୮୩,
୯୨
ଚନ୍ଦ୍ରନାଥ ରାୟ—୫୬
ଚନ୍ଦ୍ରଭାଗା— ୩୧,୩୩,୩୫,୩୬,୩୭,
୩୯, ୮୫
ଚନ୍ଦ୍ରମୋହନ ମହାରଣା—୬୯,୮୫
୮୯
ଛାତ୍ରପାଠ—୮
ଚିଲିକା—୪୫,୪୬,୧୧୧
ଛମାଣ ଆଠ ଗୁଣ୍ଠ—୯୪
ଛନ୍ଦମାଳା—୮୩
ଜଗବନ୍ଧୁ ବାନାର୍ଜୀ—୧୬
ଜଗନ୍ନାଥ ବଲ୍ଲଭ ପ୍ରେସ— ୪୧,୮୪
ଜଗନ୍ମୋହନ ରାୟ—୧୧,୩୦,୪୧,
୮୩
ଜଗନ୍ନାଥ ରାଓ—୮୪,
ଜଡ଼ବିଜ୍ଞାନ—୪୦
ଜୟକୃଷ୍ଣଚୌଧୁରୀ—୧୩,୨୪
ଜୟନାରାୟଣ ରାୟ—୨
ଜୟଦେବ—୧୦୮,୧୧୩
ଜାହ୍ନବୀବାବୁ—୧୦
ଟି ଜର୍ମାନ—୯୯
ଓନ୍ନବନ୍ଧୁ—୬୫
ତାରିଣୀ ଦେବୀ—୨
ତୁଳସୀ ସ୍ତବକ—୬୨
ଦରବାର—୩୮, ୫୮, ୬୦, ୬୨,
୧୧୧, ୧୧୮
ଦଲିଲ ସଂଗ୍ରହ—୮୩
ଦଶରଥ ବନ୍ଦ୍ୟୋଗ—୬୫, ୭୩
ଦାମୋଦର ଦାସ—୧୨, ୧୩, ୧୪,
୨୪
ଦାମୋଦର ପଟ୍ଟନାୟକ—୮୯
ଦ ସିଜ୍ ଅଫ୍ କୋରିନ୍ଥ—୩୬
ଦାନ୍ତେ—୪୮
ଦ ଆର୍ଥଲି ପାରାଡାଇଜ—୪୦
ଦୀନକୃଷ୍ଣ—୫,୧୮
ଦୁର୍ଯୋଧନର ରକ୍ତ ନଦୀ ସନ୍ତରଣ—
୬୫
(ଡକ୍ଟର) ଦେବୀପ୍ରସନ୍ନ ପଟ୍ଟନାୟକ—
୫୮
ଦ୍ୱାରିକାନାଥ ରାୟ—୫୫,୫୬

ଧବଳେଶ୍ୱର ପ୍ରୋଗ୍ରାମ—୬୫,୭୯
ଧବଳେଶ୍ୱର କାବ୍ୟ (ବଙ୍ଗଳା)—୭୯,
ନଗେନ୍ଦ୍ରବାଳା—୭୭,୭୨, ୭୬,୭୯
(ଡକ୍ଟର) ନଟବର ସାମନ୍ତରାୟ—୫୪
ନବ ସଂବାଦ—୩୩,୮୫
ନବୀନଚନ୍ଦ୍ର ସେନ୍—୧୦, ୧୭
ନନ୍ଦକିଶୋର—୧୦୬,୧୦୭
ନନ୍ଦକେଶ୍ୱରୀ—୩୭, ୩୮, ୩୯, ୫୮
୮୬, ୯୩
ନବ୍ୟଭାରତ—୧୪
ନାରାୟଣ ପ୍ରସାଦ ରାୟ—୨
ନିଭୃତ ନିଳୟ—୭୯
ନୀଳକଣ୍ଠ—୩୨,୯୫,୧୧୫
ନୀଳମଣି ବିଦ୍ୟାରତ୍ନ—୮୨,୮୯,୧୦୨
ପଦ୍ମଚରଣ ପଟ୍ଟନାୟକ—୧୦୪
ପରଶମଣି ଦେବୀ—୨୬,୬୭
ପ୍ରବନ୍ଧମାଳା—୫୫
ପ୍ରବନ୍ଧ ମାନସ—୪୨
ପ୍ରେମତତ୍ତ୍ୱ—୩୦
ପ୍ରେସିଡେନ୍ସି ରିଡର୍—୮
ପାର୍ବତୀ—୪୧,୪୩,୫୬,୬୩,୮୭
ପ୍ୟାରୀମୋହନ ଆଚାର୍ଯ୍ୟ—୩୭,୫୪,
୮୨,୯୨
ପ୍ୟାରୀମୋହନ ସେନ—୮୮,୯୩
ଫକୀରମୋହନ ସେନାପତି—୧୩,
୧୪,୨୪,୭୬,୮୦,୯୪,୧୦୫
ଫାଷ୍ଟ ବୁକ୍—୨
ବଳରାମ ପ୍ରସାଦ ରାୟ—୨
ବତ୍ରିଶସିଂହାସନ—୮
ବଙ୍କିମଚନ୍ଦ୍ର—୧୭
ବାଣହରଣ—୬୫
ବାଇରନ୍—୩୭
ବାଳିକାପାଠ—୬୭
(ସାର୍) ବାସୁଦେବ ସୁଢ଼ଳ ଦେବ—
୪୧,୮୦,୮୩,୯୦
ବିବେକୀ—୧୭, ୨୪
ବିଦ୍ୟାସାଗର—୮
ବିଶ୍ୱନାଥ କର—୮୨,୮୯,୧୦୪
ବିଜୁଳି—୮୯,୯୦,୯୫
ବିଚିତ୍ର ରାମାୟଣ—୯୩
ବିଚ୍ଛନ୍ଦ ପଟ୍ଟନାୟକ—୫୭
ବୀମସ୍ ସାହେବ—୪,୧୬,୨୪,୩୭,
୯୩,୯୯
ବୀରାଙ୍ଗନା—୮
ବୈକୁଣ୍ଠନାଥ ଦେ—୧୧, ୧୩, ୧୪
୧୬, ୨୧, ୨୩,
୫୫, ୬୪, ୮୦
୮୩, ୮୪
ବୋଧଦାୟିନୀ—୧୫, ୨୪
ବ୍ୟାକରଣ—୨୭, ୫୭, ୮୩
ବ୍ୟାବହାରିକ ଭୂଗୋଳ—୨୭,୫୭,
୮୩
ବ୍ରଜମୋହନ ମଲ୍ଲିକ—୮୭
ବ୍ରାହ୍ମସମାଜ—୧୧
ଭଗୀରଥ ମହେନ୍ଦ୍ର ବାହାଦୁର—୮୦
ଭବଭୂତି—୧୦୮,୧୧୦,୧୧୧,୧୧୩
ଭାରତ ଗୀତିକା—୬୫
ଭାରତ ଚନ୍ଦ୍ର—୧୩,୨୦

